# ସାହିତ୍ୟ :
## ଏକ ଆଲୋକ - ଆଲୋକନ


ଡକ୍ଟର କୁଞ୍ଜବିହାରୀ ଦାଶ

ପରିଦର୍ଶୀ ଅଧ୍ୟାପକ,
ବିଶ୍ୱଭାରତୀ, ଶାନ୍ତିନିକେତନ





ଓଡ଼ିଶା ବୁକ୍ ଷ୍ଟୋର

ସାହିତ୍ୟ :
ଏକ ଆଲୋକ—ଆଲୋକନ

ଲେଖକ :
ଡକ୍ଟର କୁଞ୍ଜବିହାରୀ ଦାଶ

ନୂତନ ସଂସ୍କରଣ :
ପହିଲ ରଜ—୧୯୭୮

ପ୍ରକାଶକ :
ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର୍
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦ :
ଅସିତ୍ ମୁଖାର୍ଜୀ

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
କଟକ-୭୫୩୦୦୧

ମୂଲ୍ୟ :
ଏଗାର ଟଙ୍କା

**SAHITYA :**
**EKA ALOKA—ALOKANA**

*Written by :*
**Dr. Kunjabehari Dash**

*Published by :*
**Govindcharan Patra**
Orissa Book Store
Binodbehari, Cuttack-753002

**Price : Rs. 11-00**

# ଭୂମିକା

'ସାହିତ୍ୟିକ'ର ପ୍ରବନ୍ଧଗୁଡ଼ିକ ମଧ୍ୟରୁ କେତୋଟି ରେଡ଼ିଓ ଟକ୍, କେତୋଟି ଅଭିଭାଷଣ; ଅଳ୍ପ କେତୋଟିମାତ୍ର ବିନା ବରାଦରେ ଲିଖିତ । 'ବଙ୍ଗଳା ଓ ଓଡ଼ିଆ ପଲ୍ଲୀ ସାହିତ୍ୟ' ୧୯୫୧ ରେ ଶାନ୍ତିନିକେତନରେ ଅନୁଷ୍ଠିତ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ସାହିତ୍ୟ ସମ୍ମିଳନୀରେ, 'ରବୀନ୍ଦ୍ରନାଥ ଓ ପଲ୍ଲୀସାହିତ୍ୟ' ୧୯୬୧ ରେ ରବୀନ୍ଦ୍ର ଶତବାର୍ଷିକୀ ଉପଲକ୍ଷ୍ୟେ ଶାନ୍ତିନିକେତନରେ ଅନୁଷ୍ଠିତ 'ରବୀନ୍ଦ୍ର ଓ ଭାରତୀୟ ସାହିତ୍ୟ' ଅଧିବେଶନରେ ପଠିତ । 'କାନ୍ତ ସାହିତ୍ୟ ପରିଚୟ' କାନ୍ତକବି ଶ୍ରାଦ୍ଧବାସରରେ ପ୍ରଦତ୍ତ ଏକ ଭାଷଣ । 'ହିନ୍ଦୀ ସାହିତ୍ୟକୁ ଓଡ଼ିଆ ସାହିତ୍ୟିକମାନଙ୍କ ଦାନ,' 'ଜାତୀୟ ସଂହତି ଓ ଲୋକ ଗୀତ' ରେଡ଼ିଓ ଉଦ୍ଦେଶ୍ୟରେ ଲିଖିତ । 'କବିତା ଓ ନୈତିକତା' ଛାତ୍ର ଜୀବନରେ ଲିଖିତ, ଏହା 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । 'ଲୋକସାହିତ୍ୟ ଓ ସାହିତ୍ୟିକ ଲକ୍ଷ୍ମୀନାରାୟଣ' ଲକ୍ଷ୍ମୀନାରାୟଣ ସ୍ମରଣିକାରେ ପ୍ରକାଶ ପାଇଥିଲା । ପ୍ରାୟ ୨୫ ବର୍ଷ ମଧ୍ୟରେ ବ୍ୟାପ୍ତ ଏହିସବୁ ରଚନାଧାରା ମଧ୍ୟରେ ଧାରାବାହିକତା ଖୋଜି ପାଇବା ଦୁଷ୍କର । ତେବେ ଏହି ପ୍ରବନ୍ଧଗୁଡ଼ିକୁ ମୁଖ୍ୟତଃ ଦୁଇଟି ବିଭାବରେ ବ୍ୟକ୍ତ କରାଯାଇପାରେ—ବିଦଗ୍ଧ ସାହିତ୍ୟ ଓ ଲୋକସାହିତ୍ୟ । ଆମ ଜାତୀୟ ଜୀବନରେ 'ଗଣ' ସାହିତ୍ୟର ଯେ ଏକ ବଳିଷ୍ଠ ଭୂମିକା ଥିଲା ଓ ଅଛି, ତାହା ସ୍ୱତନ୍ତ୍ର ଭାବରେ ଚର୍ଚ୍ଚିତ କରାଯାଇଅଛି ।

ତା ୯-୨-୭୬ — କୁଞ୍ଜବିହାରୀ ଦାଶ

## ନୂତନ ସଂସ୍କରଣ ସମ୍ପର୍କରେ ପଦେ

'ସାହିତ୍ୟିକ' ନାମାନ୍ତରିତ ହୋଇଛି—'ସାହିତ୍ୟ ଏକ ଆଲୋକ-ଆଲୋକନ'ରେ । 'ସାରଳା ମହାଭାରତରେ ଉତ୍କଳର ଚିତ୍ର', 'ଓଡ଼ିଆ ଲୋକ ସାହିତ୍ୟରେ ପକ୍ଷୀ,' 'କ୍ଷୁଦ୍ର ଗଳ୍ପ ଓ ଓଡ଼ିଆ ଗଳ୍ପକାର', 'ନନ୍ଦକିଶୋରଙ୍କ କବିମନ : ଏକ ପରିକ୍ରମା' ନୂତନଭାବେ ସଂଯୁକ୍ତ ହୋଇ ପୁସ୍ତକର ଆକୃତି ଓ ବୈଚିତ୍ର୍ୟ ବଢ଼ାଇଅଛି । ଓଡ଼ିଶା ବୁକ୍ ଷ୍ଟୋରର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଗୋବିନ୍ଦଚରଣ ପାଣି ଏହି ପୁସ୍ତକ ପ୍ରକାଶ କରି ସର୍ବତୋଭାବେ ମୋର ସାଧୁବାଦର ପାତ୍ର ହୋଇଛନ୍ତି ।

ତା ୩୧-୬-୭୮

କୁଞ୍ଜବିହାରୀ ଦାଶ
ପରିଦର୍ଶୀ ଅଧ୍ୟାପକ, ବିଶ୍ୱଭାରତୀ
ଶାନ୍ତିନିକେତନ

# ସୂଚୀପତ୍ର

ପ୍ରବନ୍ଧର ନାମ — ପୃଷ୍ଠା

# ଓଡ଼ିଆ ସମର-ସାହିତ୍ୟ

ଓଡ଼ିଆ ବୀର ଯେପରି ଅପମାନ-ଅସହିଷ୍ଣୁ, ସେହିପରି ରଣଚଣ୍ଡ । 'ସବୁ ଯାଉ, ମହତ ଥାଉ, ମହତ ଗଲେ ନ ମିଳେ ଆଉ'—ଏ ସେହିମାନଙ୍କର କଥା । ଏବେ ବି ଗୌରବୋଜ୍ଜ୍ୱଳ ଦିନର ସେ ମହତ୍ତ୍ୱ ଲୋପ ପାଇନାହିଁ । ସେଇ ଦୀର୍ଘ ଦେହି, ଗାଲମୁଚ୍ଛ, ବାଘୁଆନଣ, ସିଂହଠାଣି, ଖ୍ୟମରଢ଼, ଦାମ୍ଭିକକହଣି, ନାଗା ପାହୁଲ, ଓଲଟା ଶୂନ୍ୟମରି ଆଦି ମଧ୍ୟ କଙ୍କାଳମୟ ଗ୍ରାମାଞ୍ଚଳରେ ଦିଶିଯାଏ । ଦଶହରା ପଡ଼ିଆରେ ଖଣ୍ଡାଖେଳ, ପଟାଖେଳ, ମଲ୍ଲଯୁଦ୍ଧ, ଲିଖବନ୍ଧା, ମୁଦ୍‌ଗର ବୁଲା, ଦଣ୍ଡପକା, ଶୂନ୍ୟମରି ଏବେ ବି ଆଖି ଆଗରେ ନାଚଯାଏ, ଧୁମ୍‌ସା, ଯୋଡ଼ନାଗରା, ଡେମ୍ପ ନାଗରା, ତୂରୀ ଭେରୀ ଆଦି ବୀରବାଦ୍ୟର ସିଂହଗର୍ଜ୍ଜନ ମଧ୍ୟରେ । କପାଳରେ ସିନ୍ଦୂରକଲା ଲଗାଇ କୁହାଟ ମାରି ଏବେ ବି ପାଇକ ବୀର ଆମକୁ ଉଜ୍ଜ୍ୱଳ ଅତୀତକୁ ଘେନିଯାଏ ମୁହୂର୍ତ୍ତିକ ଲାଗି । ଘରେ ଘରେ ଦଶହରା ଦିନ ଏବେ ବି ପୂଜା ହୁଏ—ଖଣ୍ଡା, ତରବାରି, ବର୍ଚ୍ଛା, ଭାଲ, ତ୍ରିଶୂଳ । ପାଇକମାନେ ଏବେ ମଧ୍ୟ ଦଲିଲ୍ ଦସ୍ତାବିଜ୍ ପ୍ରଭୃତିରେ ଖଣ୍ଡା ବା କଟାରି ସଙ୍କେତ ବ୍ୟବହାର କରନ୍ତି ! ମହାବୀର ହନୁମାନ ଆଖେଡ଼ା ଘରର ଇଷ୍ଟ ଦେବତା । ଗ୍ରାମର ଏକ ଦିଗରେ ଭାଗବତ ଟୁଙ୍ଗି, ଅନ୍ୟ ଦିଗରେ ଆଖେଡ଼ା ଘର ଥିଲା । ଏକ ଦିଗରେ ଶାନ୍ତି, ଅନ୍ୟ ଦିଗରେ ଶକ୍ତିର ସାଧନା ।

ବଉତରାୟ, ବାଘସିଂହ, ରଣରଙ୍ଗା, ବାହୁବଳେନ୍ଦ୍ର, ବଳୀୟାର ସିଂହ, ଓଲଟା ସିଂହ, ପାଲଟା ସିଂହ, ଝପଟ ସିଂହ, କୋଦମା ସିଂହ, ପାଇକରାୟ, ଭୁଜବଳ, ରଣସିଂହ, ପାହାଡ଼ ସିଂହ, ଉତ୍ତରକବାଟ, ଦକ୍ଷିଣ କବାଟ, ପଶ୍ଚିମ କବାଟ, ମହାରଥୀ, ସେନାପତି, ବାହିନୀପତି, ପଟ୍ଟନାୟକ, ଗଡ଼ନାୟକ, ଚମ୍ପତିରାୟ, ଚମ୍ପତି ସିଂହ, ମାନସିଂହ, କହଲ ସିଂହ, ରାଟ ସିଂହ, ରାୟ ସିଂହ, ଶହଦୂଳ, ମାନଧାତା, ବୀରବର ପ୍ରଭୃତି ସାମରିକ ଉପାଧି ବଂଶପରମ୍ପରା କ୍ରମେ ଚଳି ଆସୁଅଛି ।

ଓଡ଼ିଶା ଦିନେ ଗୋଟିଏ ଦୁର୍ଗରାଜ୍ୟ ଥିଲା । ବଡ଼ାନାସୀ, ଚଉଦ୍ୱାର, ବାରବାଟୀ, ମନ୍ଦାରନ୍ ପ୍ରଭୃତି ପ୍ରସିଦ୍ଧ ଦୁର୍ଗ ଛଡ଼ା ବୃହତ୍ ଗ୍ରାମମାନଙ୍କୁ ଗୋଟିଏ ଗୋଟିଏ ଦୁର୍ଗ ରୂପେ ସଙ୍ଗଠିତ କରାଯାଇଥିଲା । ଏବେ ବି ଗ୍ରାମ ନାମର ଅଗରେ ବା ପଛରେ ସେହି 'ଗଡ଼' ଶବ୍ଦ ପ୍ରଚଳିତ ଅଛି । ଯଥା – ଗଡ଼ ପଦନପୁର, ଭଅଁରି

ଗଡ଼, ଗଡ଼ ଅଣ୍ଡିଆ, ଗଡ଼ ଅମଣାକୁଦ, ଗଡ଼ ମଧୁପୁର, ଗଡ଼ ଝୋରହିଁ, କୁଜଙ୍ଗଗଡ଼, ଗଡ଼ଅଲି, ହଲଦିଆ ଗଡ଼, ଆଠଗଡ଼, ବୋଲଗଡ଼, ନୂଆଗଡ଼ ଇତ୍ୟାଦି । ଯୁଦ୍ଧ କ୍ଷେତ୍ରରେ ବିଶେଷ କୃତିତ୍ୱ ଦର୍ଶାଇଥିବା ବୀର ରାଜାମାନଙ୍କ ନାମାନୁସାରେ ଗ୍ରାମମାନଙ୍କ ଆଗରେ 'ବୀର' ଶବ୍ଦ ଯୁକ୍ତ ହୋଇଥିଲା—ଯଥା—ବୀର ରାମଚନ୍ଦ୍ର-ପୁର, ବୀର ନରସିଂହପୁର, ବୀର ପ୍ରତାପପୁର, ବୀରତୁଙ୍ଗ ଇତ୍ୟାଦି ।

'ଗଡ଼' ଅର୍ଥ ଦୁର୍ଗ । ଏହା ଦୁର୍ଗମ ଅରଣ୍ୟସଙ୍କୁଳ, ପାର୍ବତ୍ୟ ବା ପରିଖାବେଷ୍ଟିତ ସ୍ଥାନ । ଆବୁଲ୍ ଫାଜଲ୍ ଓଡ଼ିଶାରେ ୭୨ ଗୋଟି ଦୁର୍ଗ ଥିବା ଉଲ୍ଲେଖ କରିଛନ୍ତି । ଓଡ଼ିଶାର ସ୍ଥାୟୀ ସୈନ୍ୟ ସଂଖ୍ୟା ଲକ୍ଷାଧିକ ଥିଲା ! ଏହାର ଗଜାରୋହୀ ବାହିନୀ ରଣକ୍ଷେତ୍ରରେ ଦୁର୍ଦ୍ଧର୍ଷ ଥିଲା; ଆହ୍ୱାନ ଆସିଲେ ଶୃଙ୍ଖଳିତ, ଯୁଦ୍ଧବିଶାରଦ ଓଡ଼ମାନେ ରଣକ୍ଷେତ୍ରକୁ ଲମ୍ଫପ୍ରଦାନ କରୁଥିଲେ ।

ବୀରଜାତି ହିସାବରେ ଓଡ଼ିଆର ଭାରତବ୍ୟାପୀ ପ୍ରତିଷ୍ଠା ଥିଲା । ତେଣୁ 'କଳିଙ୍ଗାଃ ସାହସିକାଃ'—ଏ ପ୍ରବାଦବାକ୍ୟ ସର୍ବତ୍ର ଗୃହୀତ ହୋଇଥିଲା ।

---

'ଯସ୍ୟ କ୍ଷରତ୍ ସୈନ୍ୟ ଗଜଚ୍ଛଲେନ ଯାତ୍ରାସୁ ଯାତୀବ ପୁରୋ ମହେନ୍ଦ୍ରଃ
ଜ୍ୟାଘାତରେଖେ ସୁଭୁଜୋ ଭୁଜାଭ୍ୟାଂ ବଭର୍ତ୍ତି ଯଶ୍ଚାପଭୃତାଂ ପୁରୋଗଃ
ରିପୁଶ୍ରୀୟାଂ ସାଞ୍ଜନବାଷ୍ପସେକେ ବନ୍ଦୀକୃତାନାମିବ ପଦ୍ଧତି ଦ୍ୱେ ।'
—କାଳିଦାସ, ଷଷ୍ଠ ସର୍ଗ, ରଘୁବଂଶ

କଳିଙ୍ଗ ରାଜାଙ୍କ ଅଜସ୍ର ଗଜଙ୍କ ଅପ୍ରତିହତ ଗତି ଦେଖିଲେ । ସ୍ୱୟଂ ମହେନ୍ଦ୍ର ପର୍ବତ ଆଗେ ଆଗେ ଯାଉଛି, ମନେହୁଏ । ବଳିଷ୍ଠବାହୁ, ଧନୁର୍ଦ୍ଧରମାନଙ୍କ ଅଗ୍ରଗଣ୍ୟ କଳିଙ୍ଗ ରାଜଙ୍କ ଧନୁଗୁଣର ସତତ ସଞ୍ଚାଳନ ଫଳରେ ବାହୁରେ ଦୁଇଟି କଳା ଚିହ୍ନ ବସି ଯାଇଅଛି । ମନେହୁଏ, ଶତ୍ରୁ ସ୍ତ୍ରୀମାନଙ୍କ କଜ୍ଜଳଯୁକ୍ତ ଦୁଇ ଆଖିର ଅଶ୍ରୁଧାରା ଏଇବାଟେ ବହି ଯାଇ ଏ ଚିହ୍ନ ରଖିଅଛି ।

"ରାଢ଼ ବରେନ୍ଦ୍ର ଯବନୀ ନୟନାଞ୍ଜନାଶ୍ରୁ-
ପୁରେଣ ଦୂର ବିନିବେଶିତ କାଳିମଶ୍ରୀଃ
ତଦ୍ ବିପ୍ରଲମ୍ଭ କରୁଣାଦ୍ଭୁତ ନିସ୍ତରଙ୍ଗାଃ
ଗଙ୍ଗାପି ନୂନମମୁନା ଯମୁନା ଧୂନାଭୂତ୍ ।
—ଗଙ୍ଗବଂଶାନୁ ଚରିତମ୍ ।"

ଯାହାଙ୍କ ଅଲୌକିକ ବୀରତ୍ୱ ଦର୍ଶନରେ ଗଙ୍ଗା ନିସ୍ତରଙ୍ଗା ହୋଇଥିଲେ, ରାଢ଼ ବାରେନ୍ଦ୍ରବାସିନୀ ଯବନୀମାନଙ୍କର ଅଶ୍ରୁଜଳ ଧୌତ କଜ୍ଜଳ ସ୍ରୋତରେ କାଳିମାମୟୀ ଯମୁନା ଅଧୁନା ପ୍ରବାହିତ । ଗୌଡ଼ ଜୟ କରି ଗୌଡ଼ାଧିପ ରାଢ଼ ବାରେନ୍ଦ୍ର ଜୟ କରିଥିଲେ ।

ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ଓଡ଼ିଶାର ସାମ୍ରାଜ୍ୟ ବିସ୍ତୃତ ହୋଇଥିଲା । ତେଣୁ 'ବୀରାଧିବୀରବର ନବକୋଟି କର୍ଣ୍ଣାଟକଲବର୍ଗେଶ୍ୱର' ନିରର୍ଥକ, ରାଜ-ଅଭିମାନସୂଚକ ଉପାଧି ମାତ୍ର ନୁହେଁ । ଏହା ଦିନେ କଠୋର ସତ୍ୟ ଥିଲା । ସିଂହଳ, ଜାଭା, ବାଲି ପ୍ରଭୃତି ଦ୍ୱୀପମାନ ପ୍ରତାପଶାଳୀ ଉତ୍କଳୀୟ ସମ୍ରାଟମାନଙ୍କ କ୍ଷମତା ପରିସରର ଅନ୍ତର୍ଗତ ଥିଲା । ସୁଦୂରପ୍ରସାରୀ ବୀରତ୍ୱ ପ୍ରତିଷ୍ଠା ଯୋଗୁଁ ଖାରବେଳ, ଅନଙ୍ଗଭୀମ, ନରସିଂହ, କପିଳେନ୍ଦ୍ର ଓ ପୁରୁଷୋତ୍ତମଦେବ ଭାରତୀୟ ଇତିହାସ ପୃଷ୍ଠାରେ ଅବିସ୍ମରଣୀୟ ହୋଇ ରହିଛନ୍ତି ।

ମାତୃଭୂମିର ସ୍ୱାଧୀନତା ରକ୍ଷା ଲାଗି ଅକାତରରେ ପ୍ରାଣବଳି ଦେଇ ଓଡ଼ିଆ ସମଗ୍ର ବିଶ୍ୱଇତିହାସରେ ଏକ ମହାନ ଆଦର୍ଶ ପ୍ରତିଷ୍ଠା କରିଥିଲା । କଳିଙ୍ଗ ଯୁଦ୍ଧରେ ଲକ୍ଷ ଲକ୍ଷ ଲୋକ ମୃତ, କ୍ଷତବିକ୍ଷତ ବା ବନ୍ଦୀ ହୋଇଥିଲେ । ବୀରମାନଙ୍କ ଶବ ଉପରେ ଯାତ୍ରାକରି ଅଶୋକ କଳିଙ୍ଗ ଅଧିକାର କରିଥିଲେ, କିନ୍ତୁ ଓଡ଼ିଆ ସେହି ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରି ଦେଇଥିଲା । ନରହନ୍ତା, ରକ୍ତପିପାସୁ ସମ୍ରାଟ ହେଲେ—'ଦେବାନାଂ ପ୍ରିୟଦର୍ଶୀ ।' ପ୍ରଜା ହେଲେ ତାଙ୍କର ପୁତ୍ର ।

ଖାରବେଳ ଅସକ, ମୂଳକ, ଭୋଜକ, ଅନୂପ, ବିଦର୍ଭ, ସାତବାହନ ବଂଶର ସାତକର୍ଣ୍ଣୀଙ୍କ ରାଜ୍ୟ, କୋଶଳ, ମଥୁରା, ପାଣ୍ଡ୍ୟ, ଚୋଳ, ମଗଧ ପ୍ରଭୃତି ରାଜ୍ୟ ଜୟ କରିଥିଲେ । ତାଙ୍କ ସାମ୍ରାଜ୍ୟ ସମୁଦ୍ରଗୁପ୍ତଙ୍କ ସାମ୍ରାଜ୍ୟ ଅପେକ୍ଷା ବିପୁଳତର ଥିଲା । ସେ ଯେପରି ମହାନ୍ ଯୋଦ୍ଧା ସେହିପରି ପରମ ଧାର୍ମିକ ଥିଲେ । କିନ୍ତୁ ସମସାମୟିକ ସାହିତ୍ୟ ତାଙ୍କ ବିଷୟରେ ନୀରବ । ଉଦୟଗିରିର ହାତୀଗୁମ୍ଫା ଶିଳାଲେଖ ନ ଥିଲେ ସେ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଥାନ୍ତେ ।

ଅନଙ୍ଗଭୀମ ଦ୍ୱିତୀୟଙ୍କ ମନ୍ତ୍ରୀ ବିଷ୍ଣୁଶର୍ମାଙ୍କ ବୀରତ୍ୱ ବର୍ଣ୍ଣନା କଟକ ଜିଲ୍ଲା ପଦ୍ମପୁର ପରଗନାର ଗୃଟେଶ୍ୱର ଶିଳାଲେଖରେ ରହିଅଛି—"ଯବନ ଯୁଦ୍ଧରେ ଅସ୍ତ୍ରଚାଳନା ଦ୍ୱାରା ଅସଂଖ୍ୟ ସୈନ୍ୟବିଧ୍ୱଂସକାରୀ ସେନାପତି ବିଷ୍ଣୁଙ୍କ ବିଷୟ ଆଉ କ'ଣ କହିବ ? ତାହାଙ୍କ ବୀରପଣ ସନ୍ଦର୍ଶନାର୍ଥେ ସ୍ୱୟଂ ଦେବଗଣ ଅନିଦ୍ରା ଅବସ୍ଥାରେ ନିର୍ନିମେଷ ଲୋଚନରେ ଶୂନ୍ୟମାର୍ଗରେ ଅବସ୍ଥାନପୂର୍ବକ ମହାଉତ୍ସବ କରୁଥିଲେ ।

ବିନ୍ଧ୍ୟାଚଳର ଅନ୍ତର୍ବର୍ତ୍ତୀ ଭୀମାନଦୀତୀରସ୍ଥ ଉପବନରୁ ସମୁଦ୍ର ଉପକୂଳ ପର୍ଯ୍ୟନ୍ତ ଯବନପତିର ଯାବତୀୟ ସାମ୍ରାଜ୍ୟ ଭୟଚକିତ ଚିତ୍ତରେ ସର୍ବଦା ଏଭଳି ଅନୁଭବ କରୁଥିଲେ ଯେ ସନ୍ନ୍ୟାସୀମାନେ ବହୁ ସାଧନା କରି ବି ଜଗତକୁ ଏପରି ବିଷ୍ଣୁମୟ ଦେଖିନାହାନ୍ତି ।"

ଲଙ୍ଗୁଳା ନରସିଂହଦେବ ମହାନ୍ ଦିଗ୍‌ବିଜୟୀ । ମାଦଳା ପାଞ୍ଜିର ଭାଷାରେ "ଏ ରାଜା ବାରବର୍ଷ ଦକ୍ଷିଣ କଟକାଇ କଲେ. ସେତୁବନ୍ଧ ରାମେଶ୍ୱରଠାରୁ ଗଉଡ଼ ଦେଶ ଜିଣିଲେ ।"

ତାଙ୍କ ନିର୍ମିତ କୋଣାର୍କ ମନ୍ଦିର "ଧନଜନ ଗୋପଲକ୍ଷ୍ମୀର ପ୍ରତୀକ", ଜାତୀୟ ସାହସିକତା ଓ ଶକ୍ତିମତ୍ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଜାତିର ଆତ୍ମାନିବେଦିତର ଗର୍ବରେ ଆଜି କେଉଁଠି ଏପରି ଫୁଟିଛି ? ଦୁର୍ଦ୍ଧର୍ଷ ଗତିର ଆବେଗ ଘେନି ସେହି ରଥମନ୍ଦିର ବା ସୁସଜ୍ଜିତ ସମର—ଅଶ୍ୱ କାହା ଧମନୀରେ ଏବେ ବି ସ୍ପନ୍ଦନ ନ ଆଣେ ?

କପିଳେନ୍ଦ୍ରଦେବ ଦାକ୍ଷିଣାତ୍ୟର ଦେବରକୋଣ୍ଡାଠାରେ ୧୪୫୮ରେ ବାହାମନିର ସୁଲ୍‌ତାନଙ୍କୁ ପରାସ୍ତ କରିଥିଲେ । ଉତ୍ତରରେ ଗଙ୍ଗାନଦୀ, ପୂର୍ବରେ ମହୋଦଧି, ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ଏହାଙ୍କ ସାମ୍ରାଜ୍ୟ ବିସ୍ତୃତ ଥିଲା । କିନ୍ତୁ ଏତେବଡ଼ ସମ୍ରାଟ ହୋଇ ତାଙ୍କ ମନକୁ ଅଭିମାନ ସ୍ପର୍ଶ କରି ନ ଥିଲା । ଧନ, ମାନ, ପ୍ରତିଷ୍ଠା ଯାହା କିଛି ସେ ଅର୍ଜନ କରିଥିଲେ, ତାହା ଜଗନ୍ନାଥଙ୍କ ଚରଣାରବିନ୍ଦରେ ସମର୍ପଣ କରିଥିଲେ ।

"ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟକଳବର୍ଗେଶ୍ୱର ପ୍ରତାପ କପିଳେଶ୍ୱର ଦେବ ମହାରାଜାଙ୍କ···ପୁରୁଷୋତ୍ତମ କଟକେ ମାଜଣା ମଣ୍ଡପେ ବିଜେ ସମୟେ ଅବଧାନ ଆଜ୍ଞା ହୋଇଲା ମୁଦିଲେ ଶ୍ରୀ ଜଗନ୍ନାଥ ମୋହର ବାହ୍ୟଅଭ୍ୟନ୍ତର ଜାଣୁ ମୋହର ଯେତେ ଚଳିପଦାର୍ଥ ଅଛି ସେ ତୋହର ଏହା ଉଁ ଆଉ ଧନ ଯେତେଅଛି ମୁହିଁ ବ୍ରାହ୍ମଣ ହାତରେ ଯେତେ ଦେଇପାରେ ତାହା ଦେବି ଏ ଭୂମିଖଣ୍ଡ ଓ ନାହାକୁ ଅନୁଗ୍ରହ କରି ଥା ମୋହର ସେ କେବେ ନୁହେଁ ।"

ଓଡ଼ିଆ ରାଜାମାନଙ୍କ ଦିଗ୍‌ବିଜୟର ଚିହ୍ନ ଓଡ଼ିଶାର ମନ୍ଦିରଗାତ୍ରରେ ପ୍ରଚୁର ପରିମାଣରେ ଖୋଦିତ ହୋଇଅଛି । ଆମର ଜାତୀୟ ଇତିହାସ ନିହାଣରେ ଯେତେ ଖୋଦିତ ହୋଇଛି, ଲେଖନୀରେ ସେତେ ଲିଖିତ ହୋଇନାହିଁ, ଏହା ସତ୍ୟ । ଗଜାରୋହୀ, ଅଶ୍ୱାରୋହୀ, ବର୍ମଶିରସ୍ତ୍ରାଣ ମଣ୍ଡିତ ବିବିଧ ଅସ୍ତ୍ରଶସ୍ତ୍ର ସଜ୍ଜିତ ଅଗଣିତ ସୈନ୍ୟଙ୍କ ପଟୁଆର ଆମ ହୃଦୟରେ ଏବେ ବି ଶିହରଣ ଆଣେ । କୃଷ୍ଣ ଓ ଶ୍ୱେତ ଅଶ୍ୱରେ ବଳରାମ ଓ ଜଗନ୍ନାଥଙ୍କ କାଞ୍ଚି ଅଭିଯାନ ଯାତ୍ରା ଜନସାଧାରଣଙ୍କୁ ଏବେ ବି ଅଭିଭୂତ କରେ ।

ଆମର ପ୍ରତ୍ୟେକ ମନ୍ଦିରର ଦ୍ୱାରକୁ ସିଂହଦ୍ୱାର କହନ୍ତି, ଗଜସିଂହ ମୂର୍ତ୍ତି ଆମ ଶକ୍ତିମତ୍ତାର ପ୍ରତୀକ । ତେଣୁ ଭୁବନେଶ୍ୱର, ପୁରୀ ବା କୋଣାର୍କର କାରୁକଳା

ଯେତିକି ଭକ୍ତି ବା ପ୍ରୀତିଭାବ ଜାଗ୍ରତ କରେ, ସେତିକି ବୀରରସରେ ଅନ୍ତରକୁ ଆପ୍ଳୁତ କରେ ।

ଏବେ ନାଗାନୃତ୍ୟ ଆମ ଅତୀତ ଯୋଦ୍ଧୃବେଶ ଓ ପାଇକନୃତ୍ୟର ଶେଷ ସଙ୍କେତ ବହନ କରେ, ତାର ପୃଷ୍ଠଦେଶରେ ଗଣ୍ଡାଚର୍ମର ଢାଲ, ବନ୍ଧୁ ଶର ସଂଯୁକ୍ତ ଧନୁ, କଟି ଦେଶରେ ତରବାରି, କୁନ୍ଦି, ବ୍ୟାଘ୍ରଚର୍ମ, ଘଣ୍ଟି, ହସ୍ତରେ ବନ୍ଧୁକ । ଓଡ଼ିଆ ପାଇକ ତାର ଶେଷ ବିଦ୍ରୋହରେ ବି ପ୍ରାଚୀନ ଓ ଆଧୁନିକ ଅସ୍ତ୍ର ବ୍ୟବହାର କରୁଥିଲି । ୟୁରୋପଯୋଗୀ ଅସ୍ତ୍ରରେ ସଜ୍ଜିତ ହୋଇ ନ ପାରିବା ତାର ବିଫଳତାର ଏକ କାରଣ ।

ନାଗା ଗୋଟିଏ ଶିଙ୍ଗା ବ୍ୟବହାର କରେ, ଶତ୍ରୁ ଆଗମନରେ ନିଜ ପକ୍ଷର ଲୋକଙ୍କୁ ସତର୍କ କରିବାପାଇଁ କିମ୍ବା ବିପନ୍ନ ହେଲେ ନିଜ ପକ୍ଷର ଲୋକଙ୍କ ସାହାଯ୍ୟ ଭିକ୍ଷା ପାଇଁ । ପ୍ରାର୍ଥନା ଓ ଜପତପ ପାଇଁ ଗଳାରେ ଗୋଟିଏ ତୁଳସୀ-ମାଳା ଧାରଣ କରିଥାଏ । ଶରୀରରେ ହରିଦ୍ରାବର୍ଣ୍ଣର ଚାମରଜ, ଲଲାଟରେ ସିନ୍ଦୂର ବିନ୍ଦୁ, ହସ୍ତରେ ଏବି ପକ୍ଷୀ ଓ ମସ୍ତକରେ ମୟୂର ଚୂଳ ହୁଏ ତ ମଣ୍ଡନ । ନାଗାର ଦୀର୍ଘନିଶ, ଗାଲମୁଚ୍ଛ, ଆଖିରେ ବୀରତ୍ୱବ୍ୟଞ୍ଜକ ଚାହାଣି, ପାଦର ପାଞ୍ଜୁଲ, ବନ୍ଧୁକର ସାମୟିକ ବିସ୍ଫୋରଣ, ଯୋଡ଼ିନାଗରା, ଧାମ୍ସା ଓ ଢୋଲ ନାଗରାର ତାଳେ ତାଳେ ତାର ଉଦ୍ଦଣ୍ଡ ନୃତ୍ୟ ଦର୍ଶକର ଭୀତି ଉତ୍ପାଦନ କରେ । ସେଭଳି ବଳିଷ୍ଠ ଲୋକ ନ ହେଲେ 'ନାଗାଭିଡ଼ା' ସହିପାରିବ ନାହିଁ; ଏତେ ଭାରି ବେଶ ବହନ କରିପାରିବ ନାହିଁ । ଓଡ଼ିଆ ନୃସିଂହର ପୂଜାହାରି । ନୃସିଂହ ଜନ୍ମଦିନ ନାଗାଯାତ୍ରା ହୋଇଥାଏ ।

ପୃଥିବୀରେ କେଉଁ ଜାତିର ଦିନ ସମାନ ଯାଏ ନାହିଁ । ନଈ ଯେତେ କୁଆଁରିଆ ହୋଇଥାଉ ପଛେ ସେଥିରେ ଭଟ୍ଟା ପଡ଼େ । ସେହି ରୀତିରେ କେତେ କେତେ ସାମ୍ରାଜ୍ୟ ଲୋପ ପାଇ ଯାଇଅଛି । କେତେ କେତେ ମହାବୀରମାନଙ୍କର ନାମ ମଧ୍ୟ କାଳକାନ୍ତାରରେ ହଜି ଯାଇଅଛି । ସାହିତ୍ୟ ସେମାନଙ୍କୁ ଅମର କରି-ପାରିନାହିଁ । ଓଡ଼ିଶା ପକ୍ଷରେ ଏହାର ବ୍ୟତିକ୍ରମ ହୁଅନ୍ତା କାହିଁକି ?

ଧର୍ମଯୁଗ ଥିବାରୁ ବୀର ଚରିତକୁ ଅମର କରିବା ଚେଷ୍ଟା ସେ କାଳର କବିମାନେ କରିନାହାନ୍ତି । ତାହା ହୋଇଥିଲେ ଜାତୀୟ ଅଭିମାନ ହୁଏତ ଅଧିକ ଉଦ୍ଦୀପ୍ତ ହୋଇଥାନ୍ତା, ଆମର ପତନ ମଧ୍ୟ ଏପରି ଅତଳଗାମୀ ହୋଇ ନ ଥାନ୍ତା ।

ତଥାପି ଘୋର ଦୁଃସ୍ଥିତିରେ ଓଡ଼ିଆ ସ୍ୱାଧୀନତା ବିଲୁପ୍ତିଠାରୁ ନବ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ବୀରବିକ୍ରମରେ ସଂଗ୍ରାମ କରିଆସିଛି । ଖୋର୍ଦ୍ଧାର ବକ୍ସି

ଜଗବନ୍ଧୁ, ସମ୍ବଲପୁରର ସୁରେନ୍ଦ୍ର ସାୟ, ଦକ୍ଷିଣ ଓଡ଼ିଶାର ବିଶୋଇ ଓ ଜମିଦାରମାନେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି । କ୍ରୋଧରେ ଜର୍ଜରିତ ହୋଇ ଇଂରେଜ ଓଡ଼ିଆଙ୍କୁ ଛିନ୍ନଭିନ୍ନ କରିଦେଇଛି ।

ଖାରବେଳଙ୍କଠାରୁ ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ ବହୁ ବିପୁଳ ଯୁଦ୍ଧ ହୋଇଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ତାର ସଙ୍କେତ ନାହିଁ । ସେ କାଳର ଶତ ଶତ ବୀରଗାଥାକୁ ଅବଲମ୍ବନ କରି କୌଣସି କବି କବିତା ରଚନା କରି ନାହିଁ । ଟିଉଡ଼ଙ୍କ ପରି ଏହି ବୀରଗାଥାକୁ କେହି ଜୀବନ୍ୟାସ ଦେଇପାରି ନାହିଁ । ତେଣୁ ପ୍ରାୟ ସମସ୍ତ ଲୋପ ପାଇଯାଇଅଛି ।

ରାଜପ୍ରଶସ୍ତି ମଧ୍ୟରେ ତାର ଯତ୍କିଞ୍ଚିତ ସାମାନ୍ୟ ନିଦର୍ଶନ ମିଳେ ମାତ୍ର ।

'ରଣେ ବୀର ନୃସିଂହସ୍ୟ ସିଂହନାଦେନ ତର୍ଜିତା
ମଦଂ ମୁଞ୍ଚତି ମାତଙ୍ଗେଃ ସହୈବ ପରିପନ୍ଥିନଃ ।'
'ସଦ୍ଧଂଶଂ ଭାତି ରାମେଣ ନରସିଂହ ନରେଶ୍ୱରଃ'

ଏହିପରି ଦରବାରର କବି ବିଦ୍ୟାଧର ନରସିଂହଙ୍କୁ ମହାବୀର ପୁରୁଷରୂପେ ଚିତ୍ରଣ କରିଛନ୍ତି ।

ଅନଭ୍ୟାସବଶତଃ ଲୋକଗୀତରୁ ବୀରଗାଥା ପ୍ରାୟ ଅବଲୁପ୍ତ ହୋଇଅଛି । ସେ କାଳ ଆହ୍ୱାନୀ ଗୀତ 'ଶୂନ୍ୟ ଡାକ ବଚନିକା' ଓ ଗଜପତି ରାଜାଙ୍କ ପାଇକପୁଅର ଅଭିନନ୍ଦନ ବଚନିକାରୁ ବୀରତ୍ୱର କୀର୍ତ୍ତି ଆଭାସ ମିଳିଥାଏ ମାତ୍ର ।

"ଶ୍ରୀ ଶ୍ରୀ ଗଜପତି ଗଜ ଈଶ୍ୱର, କର୍ଣ୍ଣାଟୀ କଳେବର, ବୀରାଧି ବୀରବର, ମଧ୍ୟରେ ମଧ୍ୟପତି, ତଳେ ବସୁମତୀ, ଉପରେ ଧର୍ମ ଦେବତା, କଳିଯୁଗ ଷଣ୍ଢା, ଝାଡ଼ପାତଶା ଦଣ୍ଡା, ହସ୍ତମେ ଅମରୀ, ଗୋଡ଼ମେ ସୁଆରୀ, ବାହାରେ ବାଜବନ୍ଧ, ଡାହାଣେ କଟାରୀ, ଆଳଟ ଚାମର, ଢାଲ ତରୁଆରୀ, ଗୃହପାରୁଶରେ ଅନେକ ସେବାକାରୀ, ବୀରମାନଙ୍କ ଶିରୋମଣି, ଦେବଙ୍କ ମସ୍ତକେ ଖୁଣ୍ଟିକ ଦାରପାଗ, ଶନ୍ଦ ନ ରହେ ଆଗ, ଗ୍ରାମ ବୋଲଗଡ଼, ମହାରାଜାଙ୍କ ପାଇକ ଦେଉଛି ନାଗରୀ, ହଜାର ହଜାର ଲକ୍ଷପତି ସିଂହ ମଣିମା ଜୁହାର ।"

ପୋଷକତା ଅଭାବରୁ ଗ୍ରାମୀଣ ଶକ୍ତିସାଧନାର କେନ୍ଦ୍ର ଆଖଡ଼ାଘରସବୁ ଭାଙ୍ଗି ଯାଇଅଛି । ଖୋର୍ଦ୍ଧା ଅଞ୍ଚଳରେ ପ୍ରଚଳିତ ଖେଳମାନଙ୍କରେ ଶୂନ୍ୟମାରୀ ମୁଖ୍ୟ ଥିବାରୁ ଖେଳାଳିର ବଚନକୁ, 'ଶୁନ୍ ଡାକ ବା ଶୂନ୍ୟଡାକ ବଚନିକା' କହନ୍ତି । ଏହା ଏବେ ବିଶୁଦ୍ଧ ହୋଇ ରହିପାରି ନାହିଁ । ଖେଳାଳି ଶୂନ୍ୟ ମାରିବା ଆଗରୁ ଏହିପରି ବଚନିକାର ପ୍ରୟୋଗ ହୋଇଥାଏ ।

"ହେ ହେ ନାଙ୍ଗୁଆ,

ପାଇକ ପୁଅ ଯେତେବେଳେ ଦଶହରା ପଡ଼ିଆକୁ ଯାଇଥାନ୍ତି ସେ କଣ କରିଥାନ୍ତି ?

ଦଶହରା ପଡ଼ିଆରେ ଭୂଇଁ କମାଣ କରିଥାନ୍ତି ।
ପୂରୁବ ପଶ୍ଚିମ ଉତ୍ତର ଦକ୍ଷିଣ ଗୁରିଦିଗକୁ
ଗୁରିଖଣ୍ଡ ଆଗାଡ଼ ମାରିଥାନ୍ତି ।
ଗୁରିଆଡ଼କୁ ଗୁରିଖଣ୍ଡ ପଚ୍ଛଲ ମାରିଥାନ୍ତି ।
ଆରେ ହେ ହେ ନାଟୁଆ,
ଛେଳିଆ ପିଲା ଯେତେବେଳେ ଜଙ୍ଗଲକୁ
ଛେଳି ଚରେଇ ଯାଇଥାଏ,
ଜଙ୍ଗଲରେ ଛେଳି ଗୁଡ଼ ଦେଇ ବସିଥାଏ
କଲରାପତରିଆ ବାଘ କଣ କରିଥାଏ ?
ଛେଳିଆ ପିଲାକୁ ମାରି ଗଛ ଉପରକୁ ଫୋପାଡ଼ିଦିଏ;
ପିଲା ଶାଳଗଛରେ ଲଖି ରହିଥାଏ ।
ଏ ପିଲା ସେମିତି ଖଣ୍ଡେ ଖେଳ ଦେଖାଇବ ।"

ତଳ ଉଦ୍ଧୃତ ସେ କାଳର ଉତ୍କଳୀୟ ରାଜାଙ୍କ ଆଟୋପ ଆଡ଼ମ୍ବର ବୀରତ୍ୱ ଓ ଦମ୍ଭର ମୁଦ୍ରା ବହନ କରେ; ଏହା ବୋଲଗଡ଼ ପାଇକ ନୃତ୍ୟନାଟର ଅନୁରୂପ ।

"କଳି ଯୁଗ ଖଣ୍ଡା, ଝାଡ଼ ପାତଶା ଖଣ୍ଡା
ନବକୋଟି କର୍ଣ୍ଣାଟ, କୁଳବର୍ଗ ଚଣ୍ଡା
ଆଦ୍ୟରେ ଆଦିପତି, ମଧ୍ୟରେ ମଧ୍ୟପତି
ତଳେ ବସୁମତୀ, ଉପରେ ଧର୍ମ ଦେବତା
ଅତୁଳ ବଳ ପରାକ୍ରମ ନୃପତିଙ୍କ ନୃପତି
ସୁବର୍ଣ୍ଣ ସିଂହାସନରେ ବିଜେ କରିଅଛନ୍ତି
ସଂଗ୍ରାମେ ସହସ୍ରବାହୁ ବୀରଙ୍କ ଶିରୋମଣି
ପାତ୍ରମନ୍ତ୍ରୀ ଚଉପାଶେ ସେବକ ଖଟଣି
ଚାଳନ୍ତି ଚାମର ପାଶ ଲୋକେ
ବାଜେ କାହାଳୀ ମହୁରୀ
ଭାଟ କୈବାର କରେ
ଝୁଣ୍ଟିଆ ଡାକେ ପୁଣି ହୁରିକୁରି
ଗୁମୁରେ ଉଭା ଚଣ୍ଡ ସୁବର୍ଣ୍ଣ ବେତ ଧରି
ଆଳଟ ଚାମର ଧରି ଯେତେକ ସେବାକାରୀ
ଡାହାଣେ କଟାରି, ବାମେ ତରୁଆରି

ଆଗେ ଶ୍ବେତଦାର
ଶ୍ରୀ ଶ୍ରୀ ଶ୍ରୀ ପଣ୍ଡିରେ ଅର୍ଗଳ ତୋଡ଼ର
କଳା ଧଳା ଛତ୍ର ଯେ ଉଡ଼ଇ ଫରଫର
ପ୍ରଭୁଙ୍କ ମଥାରେ ଝୋଲର ପାଗ
ବଛ ଶ୍ବାନ ରହେ ଆଗ
ରାଜ୍ୟ ବୀରସିଂହପୁର, ଖଣ୍ଡାଏତ ବୀର
ଶାହାଣା, ଖାମଣା ଖଣ୍ଡା ତରବାରି ଧରି
ଚୁମୁରେ ହାଜର ।"

ଓଡ଼ିଶାର ରାଜାଙ୍କ ଯୁଦ୍ଧ ଅଭିଯାନରେ ସହଯାତ୍ରୀ ଓ ଦ୍ରବ୍ୟସମ୍ଭାରର କିଞ୍ଚିତ୍ ଅଭାସ ତଳ ଉକ୍ତିରୁ ମିଳେ—

ଛତ୍ରବୈରେଖ, ଦନ୍ତାମସ୍ତହାତୀ, ଉଡ଼ଣ ବାରୁଣ ଘୋଡ଼ା, ମଗରମୁହାଁ ପାଲଙ୍କି, ଚୋପି ପରବାରି, ଦାସୀ ପରବାରି, ନାଟୁଆର ଝିଅ, ଭାଟର ପୁଅ, ନବଲକ୍ଷ ବାସୁଆବଳଦ, କାନ୍ଦ ଭଣ୍ଡାରୁଣୀ, ନେତେଇ ଧୋବଣୀ, କୁମୁରୁଣୀ ଧାଈ, ଚିତ୍ରା ଗୁଲକାଣୀ, କୁଳପୁରୋହିତ, ଦାସିଆ କେଉଟ, ଆଢ଼େଣିତରାସ, ଲକଲକ ତରାସ, ଓଲଟା ବଞ୍ଚଣା, ନାଗରା ଧାମ୍‌ସା, ତୁରୀ ରଣ ଶିଙ୍ଗା, ଘଣ୍ଟା ଘୁଙ୍ଗୁରମାନ, ଡବଡବ ବାଇଦ, ଢେଲଙ୍ଗା ବାଇଦ, ମୁଖ ବଂଶୀନାଦ, ନାକବଂଶୀମାନ, ବାନ୍ଧ୍-ବାନ୍ଧ୍ ଦଉଡ଼, ମାର୍ ମାର୍ ଠେଙ୍ଗା, ଇନ୍ଦ୍ର ଗୋବିନ୍ଦ ଚନ୍ଦୁଆ, କାରଣ କୁନ୍ଦାଳିଆ, ତେରଣ କୁରାଢ଼ିଆ, ତମ୍ବୁଘର, ପାଲଘର, ଢଗବାରୁଆ, ବଡ଼କାଠ, ମଦନଭେରୀ ଇତ୍ୟାଦି ।

ରାଜାଙ୍କ ନିକଟରେ ପାତ୍ରମାନଙ୍କ ପ୍ରବେଶର ବର୍ଣ୍ଣନା ତଳ ଉକ୍ତିରେ ଅଛି ।

"ଲକ୍ଷେ ରାଜାର ମୌଡ଼ମଣି, ଚୁଡରେ ହୀରାମଣି, ଆଠ ଖମ୍ବେ ଯେ ଆଠ ଦଣ୍ଡପା, ମଝିଖମ୍ବେ ରାଜା, ବଣେଇ ମନ୍ତ୍ରୀ, ରାଉତ କୁଅଁର, ପାତ୍ରଅମାତ୍ୟ ରାଜାଙ୍କ ପାଖରେ ହେଲେ ପରବେଶ ।"

## ସାରଳା ଓ ବଳରାମଙ୍କ ଯୁଦ୍ଧ ବର୍ଣ୍ଣନା

ସାରଳା ଦାସ 'ନବକୋଟି କର୍ଣ୍ଣାଟାଧିପତି ଗଜପତି ଗୌଡ଼େଶ୍ୱର ପ୍ରତାପ ବୀର' କପିଳେନ୍ଦ୍ରଙ୍କ ସମସାମୟିକ କବି । ଜୀବନରେ ପରାଜୟର ଗ୍ଲାନି ଏହି ରାଜାଙ୍କୁ କେବେ ବହନ କରିବାକୁ ପଡ଼ିନାହିଁ । ବାହାମନି ସୁଲତାନଙ୍କ ସାମ୍ରାଜ୍ୟ ଧ୍ୱଂସ କରି ସେ ତେଲଙ୍ଗାନାର ଅଧିପତି ହୋଇଥିଲେ, ଦକ୍ଷିଣରେ କର୍ଣ୍ଣାଟର କାଞ୍ଚି, ଚନ୍ଦ୍ରଗିରି, ଉଦୟଗିରି ଓ କୁଣ୍ଡାବେଦୀ (କୋଣ୍ଡାବିଡୁ ଦୁର୍ଗ) ପ୍ରଭୃତି ଜୟ କରି

କାବେରୀ ନଦୀ ପର୍ଯ୍ୟନ୍ତ ନିଜ ସାମ୍ରାଜ୍ୟ ବିସ୍ତାର କରିଥିଲେ । ମହାକବି ସାରଳା ଦାସ କପିଳେନ୍ଦ୍ରଙ୍କ ବିରାଟ ଦିଗ୍‌ବିଜୟଯାତ୍ରା ଓ ଗୌରବରେ ଅଭିଭୂତ ହୋଇଛନ୍ତି । ତେଣୁ ନିରାଟ ଐତିହାସିକ ବିଜୟ ସତ୍ୟକୁ ସେ ପୌରାଣିକ ଆବରଣ ମାତ୍ର ଦେଇ-ଅଛନ୍ତି । ତଥାପି ତାହା ଲୁଚି ପାରିନାହିଁ । ସାରଳା ଦାସ ଏଭଳି ଚିତ୍ର ଦେଇ ହୋଇଛନ୍ତି ଅମର ଜାତୀୟ କବି, ଯେପରି କପିଳେନ୍ଦ୍ର ସେହି ସୁବର୍ଣ୍ଣ ଯୁଗର ଅମର ଜାତୀୟ ବୀର ।

କପିଳେନ୍ଦ୍ରଙ୍କ ପରି ବୀର ନ ଥିଲେ ବା ଏଇଭଳି ମହାନ୍ ଯୁଦ୍ଧ ସବୁ ସଂଘଟିତ ହୋଇ ନ ଥିଲେ ସାରଳା ଦାସ ଯୁଦ୍ଧର ଏ ଭଳି ଜୀବନ୍ତ ବର୍ଣ୍ଣନା ଦେବାକୁ ସମର୍ଥ ହୋଇ ନ ଥାନ୍ତେ । ସୁଦୂରରେ ସଂଘଟିତ ଏଇସବୁ ଯୁଦ୍ଧ ହୁଏତ କବି ପ୍ରତ୍ୟକ୍ଷଭାବରେ ଦେଖିନାହାନ୍ତି; କିନ୍ତୁ ଯୁଦ୍ଧାଗତ ମହାବୀରମାନଙ୍କ ମୁଖରୁ ଅବଶ୍ୟ ଶୁଣିବାକୁ ପାଇଥିବେ । ଲୋମହର୍ଷଣକାରୀ କାହାଣୀ ଜରିଆରେ ଯୁଦ୍ଧର ଭୟଙ୍କର ସ୍ପର୍ଶ ଗ୍ରାମାଞ୍ଚଳର ଲୋକସାଧାରଣ ଅବଶ୍ୟ ଲବ୍ଧ କରିଥିବେ, ଯାହା କବି କଳ୍ପନାରେ ଅନୁରଞ୍ଜିତ ହୋଇଥିବ ।

କିନ୍ତୁ କପିଳେନ୍ଦ୍ରଙ୍କ ଯୁଦ୍ଧଯାତ୍ରା ପଟୁଆର କବି ଅବଶ୍ୟ ପ୍ରତ୍ୟକ୍ଷ କରିଥିବେ । ରାବଣ ବା ମହିଷାସୁରର ଯୁଦ୍ଧଯାତ୍ରାରେ ତାର ଅବିକଳ ଛାୟା ହିଁ ପ୍ରତିବିମ୍ବିତ ହୋଇଅଛି ।

"ପର୍ଶୁ ମୁଦ୍‌ଗର ଧନୁଶର ଧରି ହସ୍ତେ
ଚଳେ ଦାନବ ଯେ ସୂର୍ଯ୍ୟମଣ୍ଡଳର ରଥେ ।
ଦ୍ୱିଗି ସମୁଦ୍ର ଜିଣିଣ ରକ୍ଷବଳ ଥାଟ
ଗଗନ ଅନ୍ଧକାର ଯେ ଉଲ୍‌କାପାତ ବୃଷ୍ଟି ।
ସିଂହନାଦ କଲେ ଗଜ ପଚିଶ କ୍ଷଉଣୀ
ବେନି ଲକ୍ଷ ଘୋଡ଼ା ପଞ୍ଚ ଅର୍ବୁଦ ସଇନ ।
ସତୁରି କୋଟି ଯେ ଢୋଲ କୋଟିଏ ଟମକ
ମହୁରୀ ପଚିଶ ଝାଞ୍ଜ ଶଙ୍ଖ ଯେ ଅନେକ ।
ନାନାବିଧ ବାଦ୍ୟମାନ କେହୁ ଗଣିପାରି
ଚଉର୍ଦ୍ଦଶ ଭୁବନରେ ଶବ୍ଦ ଅଛି ପୂରି ।
ମହିଷାସୁର ତୁଳେ ରଥ ଏଡ଼ାର ସାଗର
ନବକୋଟି ପଞ୍ଚଶତ ଅର୍ବୁଦ ଯେ ବୀର ।
ଅଶୀ କୋଟିଏ ମୁକୁଟବନ୍ଧା ଘୋଡ଼ା ତୁଳେ
ପଦାତିଗଣ ତାହାର କେହୁ ପରକଳେ ।
ବ୍ରହ୍ମଜାତି ସ୍ୱଭାବକୁ ଦେହେ ଆନ ନାହିଁ
କ୍ଷଣକେ ଏତେକ ସୈନ୍ୟ ଅଇଲେ ଯେ ବାହି ।

ପାଞ୍ଚ ଅୟୁତ ଭ୍ରମର ପଡ଼େ ବେନ ପାଶେ
ଭ୍ରମରମାନଙ୍କେ ମୁକ୍ତା ଲମ୍ବେ ଲକ୍ଷେ ଲକ୍ଷେ ।
ପଞ୍ଚଷଷ୍ଠୀ ସହ୍ର ଢାର ଢୋଲ ଯେ ବଜାଇ
ପଞ୍ଚଷଷ୍ଠୀ ସହସ୍ର ଯେ ନଶାଣ ଶୁଭଇ
ପଞ୍ଚଷଠୀ ସହସ୍ରେକ ନଶାଣ ଯେ ବାଜେ
ଦଉଣ୍ଡି ବଜ୍ରଘୋଷ ତ ତହିଁ କେହୁ ହଜେ ।
ପଞ୍ଚଷଠୀ ସହ୍ର ବାଜୁ ଅଛଇ ଝଣ୍ଟାଳ
ପଞ୍ଚଷଠୀ କୋଟି ତହିଁ ବାଜଇ କାହାଳ ।
ପଞ୍ଚଷଠୀ କୋଟି ଶଙ୍ଖ ବାଜେ ତହିଁ ପୁଣି
ପଞ୍ଚଷଠୀ କୋଟି ରାମତାଳ ପରମାଣି
ପଞ୍ଚଷଠୀ କୋଟିଏକ ମହୁରି ଦୋସର,
ଏ ବିଧି ଅନେକ ପିରକାରେ ବାଦ୍ୟ ସ୍ଫୁର ।

—ଚଣ୍ଡୀ ପୁରାଣ, ପୃ ୧୬

ବର୍ଣ୍ଣନା ଅତିରଞ୍ଜିତ ଲାଗିପାରେ, କିନ୍ତୁ କପିଳେନ୍ଦ୍ରଙ୍କ ସୈନ୍ୟସାଗର ଦେଖି କବିଙ୍କ ମନରେ ପ୍ରାଚୁର୍ଯ୍ୟବୋଧ ଜାଗ୍ରତ ହୋଇଥିବ, ଅକଳନ୍ତ ଧନରତ୍ନ, ରଣବାଦ୍ୟ ଓ ଅସ୍ତ୍ରଶସ୍ତ୍ରର ଧାରଣା ଜନ୍ମିଥିବ । ହିମାଳୟଦିଗରୁ ଭାରତ ଆକ୍ରମଣ କବିଙ୍କ ଅପ୍ରତ୍ୟାଶିତ ନୁହେଁ । ଭାରତ ଭୂମି ହିଁ ସ୍ୱର୍ଗ, ଦେବତା ଏହାର ଅଧିବାସୀ, ମହିଷାସୁର ଆକ୍ରମଣକାରୀ, କର୍ଣ୍ଣାର୍ଜୁନ ଯୁଦ୍ଧ, ଭୀମ ଦୁଃଶାସନ ଯୁଦ୍ଧ, ଭୀମ

"ଅରଣ୍ୟ ମଧ୍ୟରେ ଯାଇ ରହିଲେ ଲୁଚଣ
ହିମାଳୟ ବାଟ ଯାଏ ବଳଙ୍କା ରାଜନ ।
ଅସୁରଙ୍କ ଗରଜନ ଦେବତା ଦେଖିଲେ
ଇନ୍ଦ୍ରଙ୍କ ଆଗରେ ଯାଇ ବେଗେ ଜଣାଇଲେ
ଆହେ ଦେବଇନ୍ଦ୍ର, ସ୍ୱର୍ଗପୁର ରକ୍ଷା କର
ସ୍ୱର୍ଗକୁ ଧାଡ଼ି ଦିଅଇ ସହସ୍ରେକ ଶିର ।
ଶୁଣିକର ଦେବ ଇନ୍ଦ୍ର ମହାକୋପ କଲେ
ଦିଗପାଳମାନଙ୍କୁ ଯେ ଡାକ ଆଜ୍ଞା ଦେଲେ ।
ଅହେ ମେଘମାନେ ଶୁଣ ମୋହର ବଚନ
ପାଷାଣ ପାଣି ବରଷ ଆକାଶେ ଯାଇଣ ।
ଅଣଚାଶ ପବନର ସଙ୍ଗେ ମେଘ ବର୍ଷୁ
ମରନ୍ତୁ ରାକ୍ଷସମାନେ ବାଟେ ଅସୁ ଆସୁ ।

ତୁମ୍ଭ ପ୍ରଖର ତେଜରେ ମରନ୍ତୁ ଦଇତ
ଅହେ ସୂର୍ଯ୍ୟ ସହସ୍ର କିରଣ କର ଜାତ ।"

—ବିଲଙ୍କାରାମାୟଣ ପୃ-୪୬

ଦୁର୍ଯ୍ୟୋଧନଯୁଦ୍ଧ, ଅଭିମନ୍ୟୁ ବଧ ପଢ଼ିଲେ ସାରଳା ଦାସଙ୍କ ଯୁଦ୍ଧ ବର୍ଣ୍ଣନାରେ କେହି ପରବର୍ତ୍ତୀ ଓଡ଼ିଆ କବି ବଳିଯାଇଛି ବୋଲି ମନେ ହୁଏ ନାହିଁ । ପଞ୍ଚପାଣ୍ଡବ ସାରଳାଙ୍କ ଲେଖନୀରେ ନୂତନ ଜୀବନ୍ୟାସ ପାଇଛନ୍ତି, ହୃଦୟେ ହୃଦୟେ ସେମାନଙ୍କ ପୂଜା । କର୍ଣ୍ଣ, ଅର୍ଜୁନ ଧନୁର୍ବିଦ୍ୟାରେ ସୁନିପୁଣ, ତପୋବଳରେ ଦିବ୍ୟ ଅସ୍ତ୍ରର ଅଧିକାରୀ, କିନ୍ତୁ ଭୀମ ଉପରେ କବିଙ୍କର ଅଧିକ ଦୃଷ୍ଟି । ଶକ୍ତିସାଧକ କବିଙ୍କର ଗ୍ରାମ୍ୟଭାବ ଧାରଣାରୁ ଯେପରିକି ଭୀମର ଜନ୍ମ, ବଜ୍ରଶରୀର, ମଲ୍ଲଯୁଦ୍ଧରେ ଅପରାଜିତ ସେ ଯେପରି କି ସେ ଯୁଗର ଶ୍ରେଷ୍ଠ ପହିଲମାନ,' ତିଳକୁ ହସ୍ତରେ ମର୍ଦ୍ଦନ କରି ତେଲ ବାହାର କରେ, ଅକଟା ଅବଟା ରାନ୍ଧେ, ହୁଣ୍ଡା ପରି ଭୋଜନ କରେ, ବୃକ୍ଷ ଓପାଡ଼ି ଶତ୍ରୁ ସଂହାର କରେ ।

ପାଠକ ବା ଶ୍ରୋତା ନିଜେ ରଣକ୍ଷେତ୍ରରେ ଉପସ୍ଥିତ ରହି ଯୁଦ୍ଧ ଦେଖୁଥିବା ଭଳି ଅନୁଭବ କରେ, ଭୀରୁ ମନରେ ଆସେ ସାହାସ, ବୀର ଅନ୍ତରରେ ପ୍ରେରଣା ।

ବଳରାମ ଦାସ ମଧ୍ୟ ସାରଳା ଦାସଙ୍କ ପରି ସିଦ୍ଧହସ୍ତ । ତାଙ୍କ ଯୁଦ୍ଧ ବର୍ଣ୍ଣନା କେବଳ ଶାସ୍ତ୍ରାନୁସାରୀ ନୁହେଁ, ପ୍ରତ୍ୟକ୍ଷ ଅନୁଭୂତିର ସ୍ପର୍ଶରେ ଜୀବନ୍ତ । ପୌରାଣିକ ଘୋଡ଼ଣିଟି ହଟାଇଦେଲେ ସେ କାଳର ବୀର ଓଡ଼ିଶା ଆଖି ଆଗରେ ନାଚିଯାଏ । ପଦାତିକମାନଙ୍କର ଗୃହ, ଖେଳକୌତୁକର ବର୍ଣ୍ଣନା ବାସ୍ତବ ଓ ହୃଦୟସ୍ପର୍ଶୀ ହୋଇଅଛି । ଏହା ସମସାମୟିକ ରାଜା ପ୍ରତାପରୁଦ୍ରଙ୍କ ଯାତ୍ରାର ହିଁ ଚିତ୍ର ।

'ସୁଖାସନେ ଆସନ୍ତି ରାଜାର ତିନି ମନ୍ତ୍ରୀ
ପଟୁଆର ପଢ଼ିଣ ରାଉତେ ଝମକନ୍ତି
ଖଣ୍ଡାକୁ କାଢ଼ିଣ କେହୁ ବୁଲଇ ସାବେଲି
ଗୃବୁକ ଇଙ୍ଗାଇ ଘୋଡ଼ା କେହୁ ଦ୍ୟନ୍ତି ପେଲି ।
କେବଣ ଘୋଡ଼ା ଧାମଇ ବେନି ପାଦ ତୋଳି
କେବଣ ରାଉତ ହସ୍ତୀଟିପେ ଭାଇ ବୋଲି ।
ନାନା କଉତୁକରେ ଯେ ଚଳନ୍ତି ସଇନ
ଦେଖିଣ ଆନନ୍ଦେ ଯେ ହସନ୍ତି ନୃପମଣି ।'

ଯୁଦ୍ଧଯାତ୍ରା କାଳରେ ଢୋଲ, ଦମା, ଟମକ, ମର୍ଦ୍ଦଳ, ତାଳ, କଂସାଳ, କାହାଳି, ମୃଦଙ୍ଗ, ଝଞ୍ଜାଳ, ପଟହ, ଘଣ୍ଟା ଆଦି ବାଜୁଥିଲା । ଯାତ୍ରା ଅନୁକୂଳ

କରିବା ଆଗରୁ ଦେବପୂଜା, ଦାନଧର୍ମାଦି କର୍ମ ରାଜାଙ୍କୁ କରିବାକୁ ହେଉଥିଲା, ଏହା ଗଡ଼ଜାତ ରାଜ ଉଆସମାନଙ୍କରେ ଯେବେ ପ୍ରଚଳିତ ଥିଲା, ଅଳ୍ପାଧିକ ପରିମାଣରେ ପ୍ରତ୍ୟେକ ଓଡ଼ିଆ ଗୃହସ୍ଥ ମଧ୍ୟ ପାଳନ କରୁଥିଲେ ।

'ଦୁର୍ବାଦଳ ଅଙ୍କୁର ଶିରରେ ରାୟ ଧରି
ବ୍ରାହ୍ମଣମାନଙ୍କୁ ରାଜା ନମସ୍କାର କରି ।
ଯାହା ଶୁଭ ମଙ୍ଗଳକୁ ଦଧିମାଛ ଅଛି
ସୁବର୍ଣ୍ଣ କୁମ୍ଭରେ ଶ୍ରୀଫଳ ଯେ ସ୍ଥାପି ଅଛି ।
ଶ୍ୱେତ ପାରାବତ ହଂସ ଧରି ଦ୍ୱିଜମାନେ
ମଙ୍ଗଳ ଅର୍ଥରେ ଥୋଇଛନ୍ତି ସ୍ଥାନେ ସ୍ଥାନେ ।
ଦ୍ୱିଜକନେ ମିଳି ବେଦାଧ୍ୟୟନ କରନ୍ତି
'ସହସ୍ରଶୀର୍ଷା' କାଣ୍ଡିକ ମଙ୍ଗଳ ପଢ଼ନ୍ତି ।
ଭଟ୍ଟଗଣ ଆସି ଉଚ୍ଚେ ଶିବ ଶିବ ଘୋଷି
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ପାଟଯୋଷି
ପୁରବଧୂ ନାରୀଏ ଦିଅନ୍ତି ହୁଳହୁଳି
ନିଃଶ୍ୱାସ ବୃଜିଣ ରାୟେ ବାମପାଦେ ଚଳି ।'

ସେ କାଳରେ ରାଜା ନିଜେ ଅଖେଡ଼ା ଗୃହର ନେତା ଥିଲେ । କୁସ୍ତି, କସରତରେ ଜଣେ ଓସ୍ତାଦ୍ ଥିଲେ; ବଳିଷ୍ଠଶରୀର, କର୍ମଠ, ଯୋଦ୍ଧା, କିନ୍ତୁ ନମ୍ର । ସେ ଥିଲେ ଜଗନ୍ନାଥଙ୍କ ଦାସାନୁଦାସ ମାତ୍ର ।

ଗଡ଼ ବା ଦୁର୍ଗ ସେ କାଳ ରାଜ୍ୟରକ୍ଷାର ମୁଖ୍ୟକେନ୍ଦ୍ର ଥିଲା; କେବଳ ଓଡ଼ିଶାରେ ନୁହେଁ; ସମଗ୍ର ଭାରତବର୍ଷରେ । ଏହାର କାନ୍ଥ ବହୁ ପ୍ରସ୍ତବିଶିଷ୍ଟ ଥିଲା, ଶକ୍ତ ପ୍ରସ୍ତରରେ ନିର୍ମିତ ହେଉଥିଲା, ପ୍ରାଚୀର ଯେପରି ଦୀର୍ଘ ସେହିପରି ସ୍ଥୂଳ ଥିଲା । ଗଡ଼ଦ୍ୱାରରେ ଲୌହ କବାଟ ଲାଗିଥିଲା, ପ୍ରବଳ ଶତ୍ରୁ ଆକ୍ରମଣରେ ଦୁର୍ଗଦ୍ୱାର ବନ୍ଦ କରି ତା' ମୂଳରେ ଗୋଟିଏ ଅଚଳ ପଥର ଗଡ଼ାଇ ଦିଆହେଉଥିଲା । ଗଡ଼ଦ୍ୱାରକୁ ରକ୍ଷା କରିବା ଲାଗି ଆଗରେ ଯୁଦ୍ଧ ଭୂମିଥିଲା, ଭିତରୁ ଶର ବାଣ୍ଟିବା ଲାଗି ପାଚେରୀରେ କଳା ରହିଥିଲା ଓ ଗୋପନରେ ଦୁର୍ଗ ମଧ୍ୟରେ ପ୍ରବେଶ ବା ପଳାୟନ କରିବା ଲାଗି ଗୁପ୍ତ ସୁଡ଼ଙ୍ଗ ଥିଲା । ଦୁର୍ଗରେ କାଣ୍ଡ, କୁନ୍ତ, ଝଣ୍ଡା, ଉଲ୍କ, ଦଣ୍ଡ ପ୍ରଭୃତି ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ରହୁଥିଲା, ପ୍ରଚୁର ଖାଦ୍ୟ ଓ ଜଳ ସଞ୍ଚିତ କରି ରଖାଯାଉଥିଲା । ଚତୁର୍ଦ୍ଦିଗରେ ସୁଗଭୀର ଖାଇ ଥିଲା ।

ରାଜା ଯୁଦ୍ଧରେ ଅନୀତି କରୁ ନ ଥିଲେ, ପଳାଇଲେ ଶତ୍ରୁକୁ ଗୋଡ଼ାଇ ମାରୁ ନ ଥିଲେ; କିନ୍ତୁ ତାର ଅସ୍ତ୍ରଶସ୍ତ୍ର ଓ ଧନସମ୍ପଦ ଛଡ଼ାଇ ଆଣୁଥିଲେ, ସମ୍ମୁଖ ସମରରେ ନ ପାରିଲେ ଗୋଳଯୁଦ୍ଧ ବା ମାୟାଯୁଦ୍ଧ କରୁଥିଲେ । ଯୁଦ୍ଧରେ ନାନା

ଅସ୍ତ୍ରଶସ୍ତ୍ରର ବ୍ୟବହାର ହେଉଥିଲା—ଶୂଳ, ଗରୁଡ଼, ପନ୍ନଗ କାଳପାଶ, ବିମନ, ମୋହନ, ସୋମକାନ୍ତ, ସୂର୍ଯ୍ୟକାନ୍ତ, ଜଳବାଣ, ଭୃକ ବାଣ, ସୂର୍ଯ୍ୟଅସ୍ତ୍ର, ସାବର୍ତ୍ତୀ କାଳାନଳ, ଚକ୍ର, ବଜ୍ରମୁନା, ସପ୍ତଧାର, ପଞ୍ଚଶାଖା, ନିକେନା, କୁନ୍ତ, ଯଷ୍ଟି, କେଶର, ମନଭେଦା, ଲୌହଗଦା, କାଳଗଦା, ବ୍ରହ୍ମପାଶୀ କାଳପାଶୀ, ନାଗ-ପାଶୀ, ଜଳପାଶୀ ଇତ୍ୟାଦି । ଏଥି ମଧ୍ୟରୁ କେତେକ ପୌରାଣିକ, କେତେକ ସୂର୍ଯ୍ୟବଂଶ ଯୁଗରେ ବ୍ୟବହୃତ ।

ବ୍ରହ୍ମାଙ୍କର ବ୍ରହ୍ମାସ୍ତ୍ର, ବିଷ୍ଣୁଙ୍କର ନାରାୟଣାସ୍ତ୍ର, ଶିବଙ୍କର ପାଶୁପତାସ୍ତ୍ର ଅମୋଘ । ମନ୍ତ୍ର ପ୍ରୟୋଗ ପୁରାଣ ଯୁଗର ବୈଶିଷ୍ଟ୍ୟ ଥିଲା । ଅସ୍ତ୍ର ମନ୍ତ୍ରରେ ଜୟାବିଜୟା ଶ୍ରେଷ୍ଠ ଦୈବକୃପାରେ ପ୍ରାପ୍ତ ମନ୍ତ୍ର ପ୍ରଯୁକ୍ତ ଶର ଅବ୍ୟର୍ଥ ।

ମହାଭାରତରେ ଯେପରି ଭୀମ, ରାମାୟଣରେ ସେହିପରି ହନୁମାନ । ସେ ହାତୀକୁ ହାତୀ ଉପରେ, ଘୋଡ଼ାକୁ ଘୋଡ଼ା ଉପରେ, ରଥକୁ ରଥ ଉପରେ କଚାଡ଼ି ଦିଏ, ଶତ୍ରୁମାନଙ୍କ ମୁଣ୍ଡ ମୋଡ଼ି ଦିଏ ।

ପଞ୍ଚଭୌତିକ ଶକ୍ତିକୁ ଶସ୍ତ୍ରରେ ସନ୍ନିବିଷ୍ଟ କରି ପ୍ରୟୋଗ କରିବା ସେକାଳର ଏକ ବୈଶିଷ୍ଟ୍ୟ; କିନ୍ତୁ ପ୍ରତ୍ୟେକ ଅସ୍ତ୍ରର ପ୍ରତିଅସ୍ତ୍ର ଅଛି । ଯେପରି କି ପର୍ବତାସ୍ତ୍ରକୁ ବଜ୍ରାସ୍ତ୍ର, ଅଗ୍ନେୟାସ୍ତ୍ରକୁ ମେଘାସ୍ତ୍ର, ମେଘାସ୍ତ୍ରକୁ ବାୟବାସ୍ତ୍ର, ପନ୍ନଗାସ୍ତ୍ରକୁ ଗରୁଡ଼ାସ୍ତ୍ର ରହିଅଛି । ରାମରାବଣ ଯୁଦ୍ଧରେ ଦିବ୍ୟାସ୍ତ୍ର ଓ ମାନବ ନିର୍ମିତ ଅସ୍ତ୍ର ସବୁ ବ୍ୟବହୃତ ହୋଇଯାଇଛି, ବଳରାମଙ୍କ ଅସ୍ତ୍ରଶସ୍ତ୍ର ବର୍ଣ୍ଣନା କବି ।

"ବ୍ରାହ୍ମଣର ପରକୁ ଯେ ପାଶୁପତ ଶର
ଅଗ୍ନି କାଳ ଶାସ୍ତ୍ରକୁ ତରନ୍ତି ଛନ୍ନପୁର ।
ବରୁଣ ପବନ ଇନ୍ଦ୍ର ଆୟୁଧ ସହିତେ
କୁବେର ଶଙ୍କର ଅସ୍ତ୍ର ଶୂଳ ପରଯନ୍ତେ ।
କପିଳ, ବିମନା, ସୋମନାଥ ଶସ୍ତ୍ର ଅଛୁ
ମୋହନା ବିକାର ଘାଏ ସ୍ୱର୍ଗପୁର ଲୁଚି ।
ବଜ୍ରାଶର ଅନ୍ତର ଯେ ବ୍ରହ୍ମଶିର କାଣ୍ଡ
ମେଘାଶର ଘାତରେ ଯେ କମ୍ପଇ ବ୍ରହ୍ମାଣ୍ଡ ।
ଗରୁଡ଼ ବନତା ଆଦି ଯେତେ ଅସ୍ତ୍ର ଅଛୁ
ପନ୍ନଗା ଶସ୍ତ୍ରର ଘାତେ ସୂର୍ଯ୍ୟ, ଚନ୍ଦ୍ର ଲୁଚି ।
ଗନ୍ଧର୍ବ ମାନବା ଶର ସୂର୍ଯ୍ୟ ସମ ଅସ୍ତ୍ର
ସାବର୍ତ୍ତୀ କାଳୀ ବାରୁଣୀ ଅର୍ଦ୍ଧଚନ୍ଦ୍ର, ଶୋଷ ।
ବଜ୍ରମୁନା ଆଦି ଜୟା ବିଜୟା ଶକତି
ଅମୋଘ ଶକତି ବଜ୍ର ଶକତି ମାରନ୍ତି ।

ଲୌହ ମୁଦ୍‌ଗର ଗଦାବର ପଡୁଛନ୍ତି
ମହାମାୟା ଶୂଳବଜ୍ର ଗରୁ ହଂସ କାଣ୍ଡ
ଶିବ ଶୂଳ ଚକ୍ର ଯେ ଅପୂର୍ବ ଶରମାନ
ଏକକୁ ଆରକେ ଯେ ବର୍ଷନ୍ତି ଘନ ଘନ ।"

—ଲଙ୍କାକାଣ୍ଡ, ପୃ-୬୮୯

ଇନ୍ଦ୍ରଜିତ 'ଦେବଦଳନ' ରଥରେ ଯୁଦ୍ଧକୁ ଗମନ କରିଅଛି । ତାର ବାମ ହସ୍ତରେ ବିଜୟ କୋଦଣ୍ଡ, ସ୍କନ୍ଧରେ ଅକ୍ଷୟ ତୂଣୀର, ବାବଲବାଣ, ବ୍ରହ୍ମଅସ୍ତ୍ର, ଛାଡ଼ିଡ଼ା ଶୂଳ, ଚନ୍ଦ୍ରକାଣ୍ଡ, ମୁଷଳ, ଶକ୍ତି ଆଦି ବହୁ ଅସ୍ତ୍ରରେ ସେ ସଜ୍ଜିତ । ତଥାପି ତାକୁ ଅଦୃଶ୍ୟ ଭାବରେ ରହି ମାୟାଯୁଦ୍ଧ କରିବାକୁ ହୋଇଛି ସମ୍ମୁଖ ସଂଗ୍ରାମର ପରାଜୟ ଶଙ୍କାରେ । ବିବିଧ ଯୁଦ୍ଧ ବର୍ଣ୍ଣନାରେ କବିଙ୍କ ଦୃଢ଼ ଆତ୍ମପ୍ରତ୍ୟୟ ପ୍ରକାଶିତ । କିନ୍ତୁ ଯେପରି ଭାବିବାକୁ ପଡ଼ିନାହିଁ କିମ୍ବା କବି କେବଳ ପାରମ୍ପରିକ ଯୁଦ୍ଧ ବର୍ଣ୍ଣନାର ଆକ୍ଷରିକ ଅନୁବାଦ କରିଯାଇ ନାହାନ୍ତି । ଅନୁଭୂତିର ନିବିଡ଼ ଯୋଗ ସ୍ପଷ୍ଟଭାବେ ବାରି ହୁଏ ।

ମଲ୍ଲଯୁଦ୍ଧ ଯେପରି କି ନିରସ୍ତ୍ର ଗ୍ରାମ୍ୟଲୋକଙ୍କର ଏକ ଧରାଧରି ମରାମରି । ଶାରୀରିକ ଶକ୍ତି ଯାହାର ଅଧିକ, ଯେ କଳକଉଶଳ ଜାଣେ, ସେ ଏଥିରେ ବିଜୟୀ ହୁଏ, ବିପକ୍ଷକୁ ବିନାଶ କରି ।

"କେହୁ ମଲ୍ଲଯୁଦ୍ଧ କରି ଗଡ଼ି ଗଡ଼ି ଯାନ୍ତି
କେହୁ ବିଧା ଗୋପୁଡ଼ା ଯେ ମରାମରି ହାନ୍ତି ।
କେ କୁକୁ ଧରିଣ ଯେ ଛନ୍ଦାଇ କାହା ତଣ୍ଟି
କେହୁ ବିଧା ମାରଇ କାହାର ଧରି ଚୁଟି ।
କେ କୁକୁ ବିଦାରି ଅନ୍ତ କରଇ ବାହାର ।
ରକତେ ଜରଜର କାହା ଦୁଇ କର ।
କାହାକୁ ଗୋଡ଼ାଇ କେହୁ ଧରି କଚାଡ଼ଇ
ରଖ ବୋଲନ୍ତେ କାହାକୁ ରଖନ୍ତା କେ ନାହିଁ ।
କେ କାହା ପିଠିରେ ଯେଇ ନାଟ ପଡୁଛନ୍ତି;
କାହାର ହୃଦୟ କେହି ବିକଟି ପକାନ୍ତି ।"

—ଲଙ୍କାକାଣ୍ଡ, ପୃ ୫୭

## ରୀତି କାବ୍ୟରେ ଯୁଦ୍ଧ ବର୍ଣ୍ଣନା

ବଳରାମଙ୍କଠାରୁ ବ୍ରଜନାଥ ଓ ପରେ ବହୁ ବିଶିଷ୍ଟ କବି କାବ୍ୟ କବିତା ରଚନା କରିଛନ୍ତି । ସେଥିରେ ଯୁଦ୍ଧର ବର୍ଣ୍ଣନା ମଧ୍ୟ ରହିଛି; କିନ୍ତୁ ନିଜାନ୍ତ

ଗତାନୁଗତିକ; ଏହା ଯୁଦ୍ଧଘଟଣାର ଉଲ୍ଲେଖ ମାତ୍ର, ଶବ୍ଦର ମୃତ୍ୟୁବିବରଣୀ । ଖଣ୍ଡ-ଯୁଗର କବିଙ୍କ ଦୃଷ୍ଟି ନାୟକନାୟିକାଙ୍କ ଶୃଙ୍ଗାର ବର୍ଣ୍ଣନା ଉପରେ ନିବଦ୍ଧ । ତାଙ୍କ ଦୃଷ୍ଟି ଅଳଙ୍କାରର ପ୍ରୟୋଗଚାତୁରୀ ଓ ଘଟନାଘଟାରେ ଅନ୍ଧୀଭୂତ । ଅର୍ଜୁନଦାସଙ୍କ 'ରାମ ବିଭା'ର ଯୁଦ୍ଧ ବର୍ଣ୍ଣନାରେ କୌଣସି ମୌଳିକତା ନାହିଁ ।

ବୀର ବେଶ ହୋଇଣ ଶ୍ରୀରାମ,
କୁମାର ମୂରତି ଯେ କାମ
ସଙ୍ଗେଣ ସାନୁଜ ବୀର,
ଆଜାନୁ ଭୁଜେ ଧନୁଶର ।
ରଣ ରଙ୍ଗରେ ଅତି ଶ୍ରଦ୍ଧା,
ମୃଗ ପାରଧିରେ ଯେହ୍ନେ ଲୋଧା ।
ଶୁଣିଣ ମୁଖ ଚହଲ,
ଧାଆନ୍ତି ନିଶାଚର ବଳ;
ତର୍ଜନ ଗର୍ଜନ କରି,
ଆସନ୍ତି ବନଗିରି ପୂରି ।
ନିକଟେ ହୋଇଲେ ଆସି,
ରାମ ଦେଖନ୍ତି ଲୁଚି ବସି ।
ପଡ଼ିଲା ଦନୁଜ ଧାଡ଼ି,
ଋଷି ପଳାନ୍ତି ଯାଗ ଛାଡ଼ି,
ଲତାରୁ ରାମ ବାହାରି,
ତୁରିତେ ସନ୍ଧିଲେ ଶର ।
ବାହିନ୍ତି ଲକ୍ଷ୍ମଣ କୋଟି,
ଦାନବ ବଳ ମଧ୍ୟ ଲୋଟି,
ମାରୀଚ ସୁବାହୁ ବେନି,
ଯୁଝନ୍ତି ଶାଳ ଶିଳ ଘେନି ।
ଶ୍ରୀରାମ ପେଷିଲେ ବାଣ,
ଛାଡ଼ିଲା ସୁବାହୁ ପରାଣ,
ମାରୀଚ ଖଇର ବଳେ,
ରାମଙ୍କୁ ଓଗାଳିଲା ବଳେ ।
ହାବୋଡ଼ା ଶର ଏକ ସନ୍ଧି,
ରାମ ତା ହୃଦୟକୁ ବିନ୍ଧି,
ନାରାଜ ଯୋଜନେ ସେ ଉଡ଼ି,
ଶତଯୋଜନ ଦୂରେ ପଡ଼ି ।

—ପୃ ୩୦, ରାମବିଭା ।

କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା'ରେ ସେହିପରି ରୂପ ବର୍ଣ୍ଣନା ଯଥେଷ୍ଟ ଅଛି, ପ୍ରେମବର୍ଣ୍ଣନା ମଧ୍ୟ ସୁନ୍ଦର । କିନ୍ତୁ ଯୁଦ୍ଧବର୍ଣ୍ଣନା ନୈରାଶ୍ୟଜନକ ।

"ନେଲା ନେଲା ଗଲା ଗଲା ବାଜିଲାକ ଗୋଳ
ଧାଇଁଲେକ ରଥୀ ହାତୀ ନୃପତି ସକଳ ।
ରୁକ୍ମିଣୀକି ଘେନିଗଲେ ପ୍ରଭୁ ଚକ୍ରଧର
ହାତୀ ହାତୀ ରଥେ ରଥେ ବାଜିଲା ସମର ।
ଜରାସନ୍ଧ ବଳ ଘେନି ଅଛଇ ଗୋଡ଼ାଇ
ଆଗେ ଓଗାଳିଲେ ଆସି ରେବତୀର ସାଇଁ ।
ଜରାସନ୍ଧ ସଙ୍ଗତେ ସମର ହଳପାଣି
ମାଇଲେ ଅନେକ ରଥୀ କବନ୍ଧ ନାଚେଣି ।
ଅନେକ ସମର ତହୁଁ କଲାକ ରୁକ୍ମଣ
କାଟିଲେ ତାହାର ରଥୁଁ ଅଶ୍ୱ ଧନୁବାଣ ।

ଧରିନେଇ କେଶ ତାର ସାତଭାଗ କଲେ
ରଥର ସ୍ତମ୍ଭରେ ନେଇ ବାନ୍ଧି ପକାଇଲେ ।"

—ପୃ ୪୯, ରୁକ୍ମିଣୀବିଭା

"ଉଷାଭିଳାଷ"ରେ ସେହିପରି ଯୁଦ୍ଧ ଅତି ଗୌଣ ସ୍ଥାନ ଅଧିକାର କରିଅଛି । ଯୁଦ୍ଧବର୍ଣ୍ଣନା କରିବାକୁ କବି ଶିଶୁଶଙ୍କରଙ୍କର ଯେପରି କି ଆଦୌ ଇଚ୍ଛା ନାହିଁ, କିମ୍ବା ସେ ବିଷୟରେ କୌଣସି ଧାରଣା ନାହିଁ । ସତେ ଯେପରି ଏହା ଅବାନ୍ତର ! ପ୍ରେମ ହିଁ ତାଙ୍କର ଆଭିମୁଖ୍ୟ, ଯୁଦ୍ଧ ବର୍ଣ୍ଣନା ଯେପରି କି ତାର ଅନ୍ତରାୟ, ଆନୁଷ୍ଠାନିକ ଭାବେ କବି କୌଣସି ମତେ ତାହା ସାରି ଦେଇଛନ୍ତି ଏହା ଘଟଣାର ଗୋଟିଏ ଦୁର୍ବଳ ବିବୃତ ମାତ୍ର ।

"ଟମକ-ନିଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଶି ଶୁଭଇ ଚହଳ ।
ଜଳଧି ମନ୍ଥନେ ଯେହ୍ନେ ଶୁଭେ ସିନ୍ଧୁ ଘୋଷ
ଦାନବକନ୍ୟା ଶବ୍ଦେ ପୂରେ ଦଶଦିଶ ।
ମଙ୍ଗଳ ପଢ଼ନ୍ତି ତହିଁ ବ୍ରାହ୍ମଣ ଅପାର
ନଟ ଭଟମାନେ ତ କରନ୍ତି କଏବାର ।
ଚତୁରଙ୍ଗ ବଳ ଯେନ ଯୁଝଇ ଅସୁର
ଦୈତ୍ୟଗଣ ଘେନଣ ଶଙ୍କର ଅନୁଚର ।
ରାମକୃଷ୍ଣ ସାହା ପାଇ ଯଦୁ ବୀରମାନେ
ରଣେ ବାଣ ବଳ ପେଷି କୃତାନ୍ତ ସଦନେ ।
ହରିହର ବେନି କଲେ ସମର ଯେ ଘୋର
ଉଭୟର ଭୟେ କମ୍ପେ ଦେବେନ୍ଦ୍ର ଅମର ।
ପିତାମହ ଶାନ୍ତି କରି ବୁହାଇଲେ ଶିବ
ଜଗନ୍ନାଥ ସଙ୍ଗେ ବାଣ ଯୁଦ୍ଧ ଅସମ୍ଭବ ।
ଚକ୍ର ଘେନି ହାଣନ୍ତେ ତା ରଖିଲେ ଭବାନୀ
ଶେଷେ ବାହୁବଳ ଛେଦି ବୁହାଇଲେ ବେନି ।
ଦୁର୍ଜୟ କଟକ ତାର ଜିଣି ଯଦୁପତି
ବାଣକୁ ଜୀବନ ଦେଲେ ଶଙ୍କର ପୀରତି ।"

—ପୃ ୭୧, ଉଷାଭିଳାଷ ।

'ମଥୁରାମଙ୍ଗଳ'ର ଯୁଦ୍ଧ ମଲ୍ଲଯୁଦ୍ଧ; ଏଥିରେ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ହୋଇ-ନାହିଁ । ମତ୍ତ ନକୁଳକୁ ଦେଖି ଯେପରି 'ମାଟି ବିରାଡ଼ି', ମତ୍ତ ହସ୍ତୀକି ଦେଖି ଯେପରି ଛାଗଳ, ମାର୍ଜାରକୁ ଦେଖି ଯେପରି ମୂଷିକ, ଗରୁଡ଼କୁ ଦେଖି ଯେପରି

ନାଗ, ସେହିପରି ଶ୍ରୀକୃଷ୍ଣ ବଳରାମଙ୍କୁ ଦେଖି ଚାଣୂର ମୁଷ୍ଟିକ ସ୍ୱାନବଳ ହୋଇ-ଯାଇଛନ୍ତି । ରଣକ୍ଷେତ୍ରରେ ସେମାନେ କେବଳ ବାଗାଡ଼ମ୍ବର କରିଛନ୍ତି; ତାର ଉତ୍ତରରେ ଶ୍ରୀକୃଷ୍ଣଙ୍କ ଛଳୋକ୍ତି ପ୍ରକାଶ ପାଇଛି, ନିଜ ପ୍ରତି ନ୍ୟୂନଭାବ ବ୍ୟକ୍ତ କରି ସେ ଉଭୟ ବୀରଙ୍କୁ ବିଭ୍ରାନ୍ତିରେ ପକାଇଛନ୍ତି; "ଆମେ ଗୋରୁ ବାଛୁରି ଚରାଉଁ, ପଖାଳ ଖାଉଁ, ଦିହରେ ରଙ୍ଗମାଟି ବୋଳିହୋଇ ବାଳକମାନଙ୍କ ସଙ୍ଗେ ନୃତ୍ୟ କରୁ; ମାଲବିଦ୍ୟା ସାଧିନାହୁଁ; ଆମେ ତୁମ ସଙ୍ଗେ ଯୁଦ୍ଧ କରିବୁ କିପରି ? ତୁମେ ରାଜାର ଘିଅ ବରତନ ଖାଉଛ, ବଳ କମେଇଛ ।"

ଏହିପରି କଥା ହେଉଁ ହେଉଁ ଧରାପରା ହେଲେ, ଯେପରି ଦୁଇଜଣ କିଶୋର; ମୁଣ୍ଡ କୋଡ଼ାକୋଡ଼ି, ଗୋଡ଼କୁ ଗୋଡ଼ ମରାମରି, ଜାନୁକୁ ଜାନୁ, ପାଦକୁ ପାଦ ଛନ୍ଦାଛନ୍ଦି, ବାହା ମରାମରି, ମୁଥ ମରାମରି ଓ ଗଡ଼ାଗଡ଼ି ପରେ ଚାଣୂର ମୁଷ୍ଟିକ ମରି ଶୋଇଲେ । ସେହିପରି ଗୋଟିଏ ଚାପୋଡ଼ରେ ରଜକ ମରିଥିଲା, ବେଣୁ ଠୁକିଲାକ୍ଷଣି କୁବଳୟା ହସ୍ତୀ, ହସ୍ତୀ ଦନ୍ତର ଏକ ପ୍ରହାରରେ ମାହୁନ୍ତ, କେଶକୁ ଧରିବା ମାତ୍ରେ କଂସ ମରି ଯାଇଥିଲା ।

ଉପେନ୍ଦ୍ରଭଞ୍ଜ ଶୃଙ୍ଗାରୀ, ଆଳଙ୍କାରିକ କବି । ନାୟକ ଚରିତ୍ରର ଗୋଟିଏ ଦିଗପ୍ରତି ସେ ଅଧିକ ଦୃଷ୍ଟି ଦେଇଛନ୍ତି—ପ୍ରେମ; ପୌରୁଷ ବା ବୀରତ୍ୱ ତାର ଚରିତ୍ରକୁ ମହତ୍ତର କରିପାରି ନାହିଁ । ପ୍ରେମ ବା ଦୈହିକ ସଙ୍ଗମ ଯେପରିକି ଜୀବନର ଶ୍ରେଷ୍ଠ କାମ୍ୟ ବସ୍ତୁ । ଅଳଙ୍କାରରେ ଭାରାକ୍ରାନ୍ତ ଶୃଙ୍ଗାରର ବର୍ଣ୍ଣନା ବିଳାସ ମଧ୍ୟରେ ଯୁଦ୍ଧର ବାସ୍ତବ ବିଭୀଷିକା ଓ ବିକଟତା କେଉଁଆଡ଼େ ହଜିଯାଇଅଛି । ଭଞ୍ଜଙ୍କର ବୀରରସାତ୍ମକ ପଦାବଳୀ ପାଠକକୁ ବୀରଭାବରେ ଉନ୍ମାଦିତ କରେ-ନାହିଁ, ବର୍ଣ୍ଣନାର ରୀତି ଏକାନ୍ତ ଗତାନୁଗତିକ । ପ୍ରତ୍ୟକ୍ଷ ଅନୁଭୂତିର ଅଭାବରୁ ହୁଏତ କବିସମ୍ରାଟ ଅଳଙ୍କାର ମଧ୍ୟରେ ଆତ୍ମଗୋପନ କରିଛନ୍ତି ।

ଖରଦୂଷଣଙ୍କ ସହିତ ସଂଗ୍ରାମ ପ୍ରସଙ୍ଗରେ କବି ନଳିଗୁଳି ପ୍ରୟୋଗର ଉଲ୍ଲେଖ କରିଛନ୍ତି । ଏହା ଏକ ଐତିହାସିକ ତଥ୍ୟଗତ ତ୍ରୁଟି ।

'ବିସର୍ଜନେ ନଳି ଗୁଳି ସୁର ଭାବନ୍ତି
ଝଣେ ମୋ ବାଧୀ ମୋତେ ବି ଲକ୍ଷ୍ୟ କରନ୍ତି ।'

ରାମଲକ୍ଷ୍ମଣ ବାନର ପୃଷ୍ଠରେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ବନରେ ତାଡ଼କା ରାମ ଯୁଦ୍ଧ, ସୁବାହୁ ମାରିଚ ଯୁଦ୍ଧ, ବାଲୀ ସୁଗ୍ରୀବ ଯୁଦ୍ଧ, ଲଙ୍କାରେ ରାମରାବଣ ଯୁଦ୍ଧ, ଇନ୍ଦ୍ରଜିତର ମାୟାଯୁଦ୍ଧ ଓ କୁମ୍ଭକର୍ଣ୍ଣର ମଲ୍ଲଯୁଦ୍ଧ କବି ଲେଖନୀରେ ସରସ ହୋଇଛି । କିନ୍ତୁ ବର୍ଣ୍ଣନା କାଳ୍ପନିକ ଓ ଅତିରଞ୍ଜିତ ହୋଇଅଛି ।

ଯୁଦ୍ଧର ବିଭତ୍ସ ବିକଟତା ବର୍ଣ୍ଣିବାରେ କବି ସ୍ଥାନେ ସ୍ଥାନେ କୃତିତ୍ୱ ଦେଖାଇଛନ୍ତି । ରାମଚନ୍ଦ୍ରଙ୍କ ଅମୋଘ ଅସ୍ତ୍ର ରାକ୍ଷସଙ୍କୁ ଆକାଶକୁ ଉଡ଼ାଇ ନେଇ ପେଟ ଚିରି ଅନ୍ତ୍ରବୁଳୁଳା ବାହାର କରିଦେଇଛି । ଗୃଧ୍ରମାନେ ଶୂନ୍ୟେ ଶୂନ୍ୟେ ଶବକୁ ଘେନି ଉଡ଼ି ପଳାଇଛନ୍ତି ।

'ବିଜୟୀ ନନ୍ଦଘୋଷରେ ବିଜୟି ଧନୁଘୋଷରେ
କଇଲାସ ବିଳାସ ଛଡ଼ାଇ ଅଣାଇ
ବାଛି ସାର ଯୋଦ୍ଧାବ୍ରାତ ମୂର୍ଦ୍ଧା ଫାଳ ଫାଳକୃତ
ବକ୍ଷ ଚିରି ବସାପିତ୍ତ ମାଂସ ଭକ୍ଷଇ
ବାଜ ନାମୁଁ, ବର୍ଷିବାରେ ଜାଣି ମିତ୍ରତା କରି
ବିହଗ ଶବ ବିଯୁତେ ଘେନି ସେ ତୋଷେ ଭକ୍ଷନ୍ତେ
ଉଠିମୁଁ ଥିଲେ ରକତେ ପଶି ନ ପାରି ।''

—ବୈ. ବି. ୫୦ ଛାନ୍ଦ ।

କଣ୍ଠାହାଣ୍ଡି କଟା ହୋଇଥିଲେ ବି ତଳକୁ ଖସି ପଡ଼େ ନାହିଁ । ହେଲେହେଁ ରାବଣର କର୍ତ୍ତିତ ମସ୍ତକ, ସମୁଦ୍ର ଲହରୀକୁ ଖଡ୍ଗରେ ଛେଦନ କଲାଭଳି ଏହା ଏକ ନିଷ୍ଫଳ ପ୍ରୟାସ ।

'ବେଗଇଁରେ ଚକ୍ରୀ ତ ସେହି ଚକ୍ରୀ ବିଧାନକୁ ବହି
ଶର ସର ସୂନ୍ଦେ କଣ୍ଠାଖଣ୍ଡର ତୁଲେ
ବିଚ୍ଛେଦ କୋପେ ରାଘବ ଦଶଗ୍ରୀବ ଦଶଗ୍ରୀବ
ବିଚ୍ଛେଦ ନୋହିଲା ଲବ ଲାଗେ ତତ୍‌କାଳେ ।
ବିଘଟିତ, ବୁଦ୍ଧି ହୁଏ ଏଇ ଉପମାରେ
ବାରି ନୋହେ ଭିନ୍ନ କରି ଯଥା ବୀଚି ତରବାରୀ
ପୁନଃ ପୁନଃ ତରବାରୀମାନ ପ୍ରହାରେ ।'

ସୈନ୍ୟମାନଙ୍କ ପଟୁଆର ଖୁର ବହନ କରି ନ ପାରି ବାସୁକୀ ସ୍ୱଜନଙ୍କୁ ଡକା ପକାଇଲା । କିନ୍ତୁ ରାବଣ ଲାଗି ସେ ଏତେ କଷ୍ଟ ପାଉଥିଲା ଯେ ଏହାକୁ କଷ୍ଟଭାବେ ଗଣିଲା ନାହିଁ । ପୃଥିବୀର ଆନନ୍ଦକୁ କବି ନବଯୁବତୀର ବଲ୍ଲଭ ସଙ୍ଗଲାଭ ଆନନ୍ଦ ସଙ୍ଗେ ତୁଳନା କରିଛନ୍ତି ।

ରମଣୀ କବି ମନକୁ କିପରି ଆଚ୍ଛନ୍ନ କରିଥିଲା ତାହା ବିଭିନ୍ନ ସଂଗ୍ରାମ ବର୍ଣ୍ଣନାରୁ ଜଣାଯାଏ । ସଂଗ୍ରାମର ଗୁରୁତ୍ୱ ବା ବିକଟତା ଏହି ଉପମା ଫଳରେ ବହୁପରିମାଣରେ ହ୍ରାସ ପାଇଅଛି । ଚର୍ମାନଗରୀକୁ ପଟୁଆରରେ ଯାଉଥିବା ସୈନ୍ୟ-ସାମନ୍ତମାନଙ୍କ ଗତିକୁ ଗୋଟିଏ ରମଣୀରତ୍ନର ଗତି ସହିତ ତୁଳନା କରିଛନ୍ତି ।

ସୁନ୍ଦର କର୍ଣ୍ଣ ତିଳକ ପର ଖଡ଼୍ଗ, ଭଲ ପର ଫଳକ, ନାସା ପର ଭୂଣୀର କଟାକ୍ଷ ପର କୁନ୍ତ, ଚତୁର୍ବିଧ ବାଜେଣି ( କଙ୍କଣ, କର୍ଙ୍କିଣି, ବଳା, ମୁଦି ) ଚତୁର୍ବିଧ ବାଦ୍ୟ ( ତୂରି, ଭେରି, ଡିଣ୍ଡି, ଢୋଲ ), ପଣତ ପର ପତାକା, ଉଚ୍ଚ କୁଚପର ରଥ, କଣ୍ଠଭୂଷାହାର, ବିଦ୍ରୁମମାଳା ପର ରଥର ବଉଳ ଝରି, କଣ୍ଠ-ଭୂଷଣ ପର ରଥର ଚକ୍ର, କଣ୍ଠପର ପାଶ (ରଥ ଦଉଡ଼ି) ଅଙ୍ଗର ଶୃଙ୍ଖଳା ପର ତୁରଙ୍ଗ ରଙ୍ଗ, ସଙ୍ଗମତ୍ୱରା ଗତି ପର ମତ୍ତ ମାତଙ୍ଗଗତି—

"ଖଡ୍ଗ ଫଳକ ତିଳକ ଭଲ ବାଣକମାଣ ଭ୍ରୂନେତ୍ର ମେଳ
ତୂଣୀର ନାସା ଅତି ମଞ୍ଜୁଳ କୁନ୍ତ କଟାକ୍ଷ ଯେ ।
ଚତୁରବଧ ବାଦ୍ୟ ବାଜେଣି ବଳୟବଳା ମୁଦ୍ରି କର୍ଙ୍କିଣି
ଚପଳ ଚେଳ ଅଞ୍ଚଳ ଜାଣି ଚଞ୍ଚଳେ ଦକ୍ଷ ଯେ
ଉଚ୍ଚ ଶତାଙ୍ଗ କୁଚ ବଉଳଝରି ଯେ ,
କଣ୍ଠେ ଭୂଷା ବିଦ୍ରୁମ ମାଳିକା ହାରି ଯେ
ଅଙ୍ଗ ତାଟଙ୍କ ପାଶ ଯେ ଶୃଙ୍ଖଳ ତୁରଙ୍ଗ ରଙ୍ଗ ତରଙ୍ଗ ମତି
ମତ୍ତ ମାତଙ୍ଗ ଗମନ ଗତି ସଙ୍ଗମେ ତ୍ୱରି ଯେ ।
—କୋ· ବ୍ର· ସୁ· ୨୭ ଛାନ୍ଦ -

## କାଞ୍ଚିକାବେରୀ—ପୁରୁଷୋତ୍ତମ ଦାସ

ପୁରୁଷୋତ୍ତମ ଦାସଙ୍କ କାଞ୍ଚିକାବେରୀ ପ୍ରଚଳିତ କିମ୍ବଦନ୍ତୀକୁ ଯେନ ରଚିତ, ପରବର୍ତ୍ତୀ ସମସ୍ତ କାବ୍ୟ ଓ ନାଟକର ମୂଳ ଉତ୍ସ । ସେ ଜଗନ୍ନାଥଙ୍କର ଜଣେ ଭକ୍ତ, ଜଗନ୍ନାଥ କେବଳ ଶାନ୍ତ ଓ ମୈତ୍ରୀର ଦେବତା ନୁହନ୍ତି । ସେ ଦୁର୍ଦ୍ଧର୍ଷ ବୀର, ଅପ୍ରତିଦ୍ୱନ୍ଦୀ ଯୋଦ୍ଧା । ଦୁଷ୍ଟ ଦମନ ଓ ଭକ୍ତର ମହତ୍ତ୍ୱ ରକ୍ଷା ଲାଗି ସେ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗ ଦଅନ୍ତି । ଜଗନ୍ନାଥ ଓ ବଳରାମଙ୍କ ଯୋଦ୍ଧୃବେଶ କର୍ଣ୍ଣନାରେ କବି ଭାବବିହ୍ୱଳ ହୋଇଛନ୍ତି—

'ବେନି ପାଶ କୋମରରେ ଶୋହେ ତଲବାର
ମୁନଙ୍କର ଜ୍ୟୋତି ଯେ ନିନ୍ଦଇ ଦିନକର
ଝଣ୍ଡାରେ ଯେ ଢାଲରେ ସୁବର୍ଣ୍ଣ ମୁଦ୍ରାସାର
ହୀରା ସୁରଫୁଲ ପଦକ ଯେ ତାରକାର ।
ଚନ୍ଦନ ତିଳକ କପାଳେ କରି ବେଶ
କସ୍ତୁରୀର ରେଖକୁ କାଙ୍ଗୁଲି କର୍ଣ୍ଣ କଣ ।
ଶ୍ୱେତ ମେଘ ବାରୁ ପରେ ବିଜେ ଜଗନ୍ନାଥ
ସେ ଘୋଡ଼ାକୁ ଅନୁପମ ରାଉତ ସମର୍ଥ ।

ରାଉତ ବସନ୍ତେ ବାରୁ ଲକ୍ଷ ଉର୍ଦ୍ଧ୍ୱେ ତୋଳି
ଦଣଦଗକୁ ସେ ଘୋଡ଼ା ଆଡ଼ ଚଗ ମାରି ।
ନୀଳ କନ୍ଦରୁ ରାଉତେ ହୋଇଲେ ବାହାର
ବଜୁଳି ରୂପାଲସ୍ୱେ ଦୁଇ ଚେରଦାର ।
ଦୁହିଁଙ୍କର ବରଛା ଯେ ଦୁହେଁଛନ୍ତି ଧରି
ଘୋଡ଼ା ଘୋଡ଼ ବନଉତ କାନ୍ଧେ ଯେନ୍ନ କରି ।
କାଞ୍ଚିକାବେରୀକି ଯେ ଆପଣେ କଟକାଇ
ଜଗନ୍ନାଥ ବଳଭଦ୍ର ସହ ବେନ ଭାଇ ।
ଅତ୍ୟନ୍ତରେ ସୁଶୋଭା ଦିଶିଲା ଦଶ ଦିଶ
ହାଙ୍କି ଦେଲେ କ୍ଷେପି ଯିବେ ଧରଣୀ ଆକାଶ ।
ବାରୁକଙ୍କ ଗୃଭୂଷିରେ ଚାଲି ଆଡ଼ ଚଗ
ମାଣିକ୍ୟର ଜ ନ୍ଦ୍ୱୀ ପତାକା ଫରଫର ।
କେତେବେଳେ ଚଳନ୍ତି ଧାଆଁନ୍ତି କେତେବେଳେ
ଡାହାଣ କରେ ବରଛା ବାଗ ବାମ କରେ ।

ବଳରାମ ଏବଂ ଜଗନ୍ନାଥ କାଞ୍ଚି ଦୁର୍ଗର ପଥର କାନ୍ଥମାନ ଭାଙ୍ଗି ପକାଇଲେ । କାହାକୁ ଖଡ଼ଗରେ, କାହାକୁ ବର୍ଚ୍ଛାରେ, କାହାକୁ ସାବେଲୀ ବା ଭାଲରେ, କାହାକୁ ବନ୍ଧୁକରେ ବିନାଶ କରିବାକୁ ଲାଗିଲେ । ବନ୍ଧ ଭାଙ୍ଗିଗଲେ ଜଳ ଯେପରି ପ୍ରଖର ସ୍ରୋତରେ ଚାଲିଯାଏ, ସେହିପରି କାଞ୍ଚୀର ସୈନ୍ୟମାନେ ଭୟରେ ପଳାଇବାକୁ ଲାଗିଲେ ।

ଜଗନ୍ନାଥ କେବଳ ତଥାକଥିତ ଧର୍ମର ସଙ୍କେତ ନୁହନ୍ତି, ଉତ୍କଳୀୟ ଦେଶାତ୍ମବୋଧ ଓ ବୀରତ୍ୱର ମୂର୍ତ୍ତି ପ୍ରତୀକ । ଶାନ୍ତି ସହିତ ସମରର, ଧାର୍ମିକତା ସହିତ ବୀର୍ଯ୍ୟର, ଅହିଂସା ସହିତ ହିଂସାର, ମୈତ୍ରୀ ସହିତ ମାରଣର ଅପୂର୍ବ ସମନ୍ୱୟ ତାଙ୍କ ଚରିତ୍ରରେ ଘଟିଛି । କବିଙ୍କ ଦୃଷ୍ଟିରେ କାଞ୍ଚିଯୁଦ୍ଧ ଦେବତାଙ୍କ ସହିତ ଦେବତାର ଯୁଦ୍ଧ, ଦେବତାଙ୍କର ଏହି ଶକ୍ତି ପରୀକ୍ଷାରେ ମନୁଷ୍ୟ ନିମିତ୍ତ ମାତ୍ର । ଜଗନ୍ନାଥ ଯେପରି ଉତ୍କଳର, ଗଣନାଥ ସେହିପରି କାଞ୍ଚୀର ଇଷ୍ଟଦେବତା, ରକ୍ଷାକର୍ତ୍ତା । ସେ ବିଦ୍ୟାରେ ଯେପରି, ସଂଗ୍ରାମରେ ସେହିପରି ଧୁରୀଣ । ବାମନ, ସ୍ଥୂଳ ଶରୀର, ଗଜବଦନ, ହସ୍ତରେ ପଶାଙ୍କୁଶ ଧରି ସେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି ।

---

ପୁରୁଷୋତ୍ତମ ସପ୍ତଦଶ ଶତାବ୍ଦୀର କବି, ଏହାଙ୍କ 'କାଞ୍ଚିକାବେରୀ'କୁ ଅବଲମ୍ବନ କରି ରଙ୍ଗଲାଲ୍ ବନ୍ଦ୍ୟୋପାଧ୍ୟାୟ ବଙ୍ଗଳାରେ ଖଣ୍ଡିଏ କାବ୍ୟ ଲେଖିଛନ୍ତି । ଡଃ ସୁକୁମାର ସେନ୍ ଉଭୟ କାବ୍ୟକୁ ଏକତ୍ର ସଙ୍କଳନ କରି ପୁରୁଷୋତ୍ତମଙ୍କ କାବ୍ୟର ଉତ୍କର୍ଷତା ଦେଖାଇଛନ୍ତି ।

"ଯମକୁ ଜିଣିଲେ କାଳ ପାଶ ଚଢ଼ାଇଣ
ଏବେ ହେଁ ଯମ ଅଛୁ ବାହାନ ମୂଷାରେଣ ।
•ଭଣ୍ଡି ଗଣପତି ସଜ ହୋଇଲେ ସମରେ
ବୀର ବେଶ ଧରିଣ ଯେ ମୂଷିକ ଉପରେ ।
ଯାହା ସଙ୍ଗେ ଯୁଦ୍ଧେ ନ ପାରଇ ପୁରନ୍ଦର
ପାର୍ବତୀ ମାତା ଯାହାର ଈଶ୍ୱର ପିଅର ।
ଅକ୍ଷୟ ପିନାକୀ ଶୂଳ ପଶୁପତି ମୂଳେ
ଭଗଦନ୍ତ ଆଦି ପାଶ ଅଙ୍କୁଶ ତ୍ରିଶୂଳେ ।
ବାହାର କରିଣ ଭିଡେ ଯେ ସୈନ୍ୟ ମାରିବାକୁ
ନାନାଦି ବିଘ୍ନ କରିବେ ଓଡ଼ିଶା ରାଜ୍ୟକୁଁ ।"

ଜଗନ୍ନାଥ ବନ୍ଧୁଙ୍କ ଗୁହାରେ କାଞ୍ଚୀର ସୈନ୍ୟସଂହାର କରିବା ସ୍ଥଳେ ବଳରାମ ଓ ଗଣନାଥଙ୍କ ସଂଗ୍ରାମ ପୁରାଣ ଧରଣର ହୋଇଅଛି । ଗଣେଶ ଆକ୍ରମଣକାରୀ, ତାଙ୍କ ପର୍ବତ ଶରକୁ ବଜ୍ରଶରରେ, ଆଗ୍ନେୟାସ୍ତ୍ରକୁ ଜଳଧାରା-ଅସ୍ତ୍ରରେ, ପନ୍ନଗଶରକୁ ଗରୁଡ଼ାସ୍ତ୍ରରେ ବଳରାମ ନିବାରଣ କରିଛନ୍ତି, ତାପରେ ଗଣେଶ ବିଶ୍ୱମୂର୍ତ୍ତି ଧାରଣ କରି ଶୂଳ ପ୍ରୟୋଗ କରିଛନ୍ତି । ବଳରାମ ଢାଲରେ ଆତ୍ମରକ୍ଷା କରିପାରିଛନ୍ତି । ଶେଷରେ ଜଗନ୍ନାଥ ବଳରାମଙ୍କୁ ଆଡ଼ କରି ଅଗ୍ରସର ହୋଇଛନ୍ତି । ଜଗନ୍ନାଥଙ୍କ ମନ୍ତ୍ରବଳରେ ତାଙ୍କ ଶ୍ୱେତ ଅଶ୍ୱ ମାର୍ଜାର ରୂପରେ ଗଣେଶଙ୍କ ବାହନ ମୂଷିକକୁ ଆକ୍ରମଣ କରିଛି, ସେ ନିଜେ ମଧ୍ୟ ନୃସିଂହ ରୂପ ଧାରଣ କରିଛନ୍ତି । ସିଂହ ଦର୍ଶନରେ କାଞ୍ଚୀର ହସ୍ତୀମାନେ ସ୍ୱପକ୍ଷ ସୈନ୍ୟଙ୍କୁ ମର୍ଦ୍ଦନ କରି ପଳାୟନ କରିଛନ୍ତି । ନୃସିଂହଙ୍କ ତେଜରେ ନିଜେ ଗଣପତି ମଧ୍ୟ ଅଚେତ ହୋଇପଡ଼ିଛନ୍ତି । ତାପରେ ସେ ଆସି ବଳରାମ ଜଗନ୍ନାଥଙ୍କର ଶରଣ ପଶିଛନ୍ତି ।

"ନ ଜାଣିଣ ଯୁଦ୍ଧ କଲି ଦ୍ରୋହୀ ହେଲି ଆସି
ଏବେ ଯାହା ଇଚ୍ଛା ତାହା କର ବ୍ରହ୍ମରାଶି ।
କର କର ହୋଇ ହସନ୍ତି ଭାଇ ବେନି
କି ହୋ ଗଣନାଥ ତୁମ୍ଭେ ନ ଥିଲ କି ଚିହ୍ନି ?
ଏବେ ଯାଇ କହ ତୋହ ପାଳକ ରାଜାଙ୍କୁ
ବହନ ପଳାଉ ଗଡ଼ ଗ୍ରୁଡ଼ିଣ ଆମ୍ଭଙ୍କୁ ।"

ପୁରୁଷୋତ୍ତମଦେବଙ୍କ ସୈନ୍ୟ ଅପେକ୍ଷା କାଞ୍ଚିରାଜା କଳବର କେଶରୀଙ୍କ ସୈନ୍ୟ ସଂଖ୍ୟା ଅଧିକ । ସେମାନେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ, ସାହାସ ବା ପରାକ୍ରମ କାହିଁରେ ଊଣା ନୁହନ୍ତି । ସେମାନଙ୍କ ଦୁର୍ଗ ମଧ୍ୟ ଦୁର୍ଭେଦ୍ୟ । ଏ ଅବସ୍ଥାରେ

ପୁରୁଷୋତ୍ତମ ହାରିଯିବା କଥା । କିନ୍ତୁ ସେ ଦୈବଶକ୍ତିରେ ବଳବାନ, ଭକ୍ତି ହିଁ ତାଙ୍କ ଶକ୍ତିର ଉତ୍ସ, ତଦ୍ଦ୍ୱାରେ ସେ ଜୟଯୁକ୍ତ ହୋଇଛନ୍ତି । ପୁଣି ଏହା ଦେବତା ଦେବତାଙ୍କ ମଧ୍ୟରେ ଯୁଦ୍ଧ । ଯେଉଁ ପକ୍ଷର ଦେବତା ଅଧିକ ଶକ୍ତିଶାଳୀ, ସେହି ପକ୍ଷ ଜୟଯୁକ୍ତ ହେବା ସ୍ୱାଭାବିକ ।

'କାଞ୍ଚିକାବେରୀ'ରେ ପୁରୁଷୋତ୍ତମଙ୍କ ବୀରତ୍ୱ ଚର୍ଚ୍ଚିତ ହୋଇନାହିଁ, ଚର୍ଚ୍ଚିତ ହୋଇଛି ଜଗନ୍ନାଥଙ୍କ ବୀରତ୍ୱ ବା ମହତ୍ତ୍ୱ । କପିଳେନ୍ଦ୍ରଙ୍କ ପୁତ୍ର ହମ୍ବୀର ଓ ଅନ୍ୟ ପୁତ୍ରମାନେ ପୁରୁଷୋତ୍ତମଙ୍କୁ ବିନାଶ କରିବାଲାଗି ଚେଷ୍ଟା କରିଛନ୍ତି । ସେ ନିଜ ବୀରତ୍ୱ, କୂଟନୀତିକୌଶଳ ବା ବଳିଷ୍ଠ ବ୍ୟକ୍ତିତ୍ୱ ବଳରେ ରକ୍ଷା ପାଇ-ନାହାନ୍ତି । ଭଗବାନ ହିଁ ତାଙ୍କ ରକ୍ଷାକର୍ତ୍ତା । ତାଙ୍କ କୃପା ବିନା କେଡ଼େ କେଡ଼େ ବିପତ୍ପାଶି ଫାଟିଯାଏ । ତେଣୁ 'କାଞ୍ଚିକାବେରୀ'ରେ ଭଗବତ୍ ମହିମା ସମକ୍ଷରେ ମନୁଷ୍ୟ ଚରିତ୍ର ନିତାନ୍ତ ଗୌଣ ହୋଇଯାଇଛି । ସେ ନିମିତ୍ତ ମାତ୍ର, ତାର କିଛି ନିଜତ୍ୱ ନାହିଁ, ସ୍ୱକୃତିତ୍ୱରେ ନୁହେଁ, ଭଗବାନଙ୍କ କରୁଣାରେ ସେ ବଡ଼ ।

ରାଜା ପୁରୁଷୋତ୍ତମଙ୍କ ଯୁଦ୍ଧଯାତ୍ରା ଚିତ୍ର ଅତ୍ୟନ୍ତ ମନୋରମ ହୋଇଅଛି । ତାଙ୍କ ସହିତ ଶ୍ୱେତମେଘା, କାଳମେଘା, ସିନ୍ଧୁପୁରିଆ, କଣ୍ଟୁକୀ ଟାଙ୍ଗଣ ଜାତୀୟ ବହୁ ଅଶ୍ୱ ଥିଲେ । ସୈନ୍ୟମାନେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଥିଲେ । ବହୁ ଶକଟରେ ରସଦ ବୁହା ହୋଇଯାଉଥିଲା, ତମ୍ବୁ, ଡୁମ୍ବ, ଧମ୍‌ସା, ରାମଚେଙ୍ଗି, ହାବେଲି, ଧନୁ, ଶର ପ୍ରଭୃତି ଦ୍ରବ୍ୟ ଓ ଅସ୍ତ୍ରଶସ୍ତ୍ର ସବୁ ବୁହାହୋଇ ଯାଉଥିଲା । ହସ୍ତୀ ଉପରେ ନିଶାଣ ଉଡ଼ୁଥିଲା, ଉଷ୍ଟ୍ର ଉପରେ ଦମାମ୍, ଘୋଟକରେ ନାଗରା ଓ ଅସଂଖ୍ୟ ତୂରୀ, ଭେରୀ, କର୍ତ୍ତାଳ ସଙ୍ଗେ ଅଶ୍ୱଙ୍କ ହ୍ରେଷା, ହସ୍ତୀଙ୍କ ଘଣ୍ଟାରବ ଓ ପଦାତିକଙ୍କ କୋଳାହଳ ଧ୍ୱନି ମିଶି ବିଚିତ୍ର ଓ ଭୟଙ୍କର ଶବ୍ଦ ସୃଷ୍ଟି କରୁଥିଲା । କାଞ୍ଚିଜୟର ସଂକଳ୍ପ ଅନ୍ତରରେ ଘେନି ନୀଳଚକ୍ରକୁ ବନ୍ଦି ରାଜା ଦକ୍ଷିଣ ପଥରେ ଯାତ୍ରା କଲେ ।

କାଞ୍ଚିଗଡ଼ କଳାମ୍ବଗୁନ୍ଦ ପ୍ରସ୍ତରରେ ନିର୍ମିତ, ଚତୁର୍ଦ୍ଦିଗରେ ପାଞ୍ଚକୋଶ ପର୍ଯ୍ୟନ୍ତ ଘଞ୍ଚ ଅରଣ୍ୟ, ଦୁର୍ଗମ ପର୍ବତ ଘାଟି, ସେଥିରେ କାଞ୍ଚି ସୈନ୍ୟ ଶତ୍ରୁ ବିନାଶ କରିବାଲାଗି ଅହରହ ଜଗି ରହିଥାନ୍ତି, ଦୁର୍ଗଦ୍ୱାର କବାଟ ଅତି ଶକ୍ତ, ଚତୁର୍ଦ୍ଦିଗରେ ଗଡ଼ଖାଇ, କଡ଼ାତେଲ ଢଳା ହୋଇ ଦୁର୍ଗଦ୍ୱାର ମୃତ୍ତିକା ଅତ୍ୟନ୍ତ ପିଚ୍ଛିଳ କରା-ଯାଇଛି । କେହି ଛିଡ଼ାହୋଇ ଯୁଦ୍ଧ କରିବା ଅସମ୍ଭବ । ପୁରୁଷୋତ୍ତମ ଯେତେ ଗୁଳି ମାରନ୍ତି, ଯାଇ ପାହାଡ଼ରେ ବାଜେ, ଅଥଚ ଦୁର୍ଗର ମୁରୁଚାରେ ଥାଇ କାଞ୍ଚିରାଜାଙ୍କ ସୈନ୍ୟମାନେ ବହୁ ହସ୍ତୀ, ଅଶ୍ୱ ଓ ସୈନ୍ୟମାନଙ୍କୁ ବିନାଶ କରନ୍ତି; ଏହିପରି ବହୁ ଯୁଦ୍ଧପରେ ଅଲୌକିକ ଶକ୍ତି ବଳରେ ଓଡ଼ିଆ ସୈନ୍ୟମାନେ ଦୁର୍ଗ ଭେଦ କଲେ । କାଞ୍ଚିସୈନ୍ୟଗଣ ଦୁର୍ଗ ତ୍ୟାଗ କରି ଅରଣ୍ୟକୁ ପଳାୟନ କଲେ, ଧନରତ୍ନ ଭଣ୍ଡାର

ଜୁର ହେଲା । ପୁରୁଷୋତ୍ତମ କାଞ୍ଚିରାଜାଙ୍କୁ ସକୁଟୁମ୍ବେ ବନ୍ଦୀ କରି ମନ୍ତ୍ରୀଙ୍କ ଦାୟିତ୍ୱରେ ରଖାଇଲେ । ଗୋପାଳ ମୂର୍ତ୍ତି, ଭଣ୍ଡ ଗଣେଶ ଓ ବହୁ ଦେବଦେବୀ ମୂର୍ତ୍ତି ନେଇ ପୁରୁଷୋତ୍ତମ ଶ୍ରୀଗୁଣ୍ଡିଚା ପୂର୍ବ ଏକାଦଶୀ ଦିନ ସ୍ୱରାଜ୍ୟକୁ ବାହୁଡ଼ିଲେ ।

'କାଞ୍ଚିକାବେରୀ' ବ୍ରଜନାଥଙ୍କ 'ସମର ତରଙ୍ଗ' ପରି ସ୍ୱତନ୍ତ୍ର ସ୍ଥାନର ଅଧିକାରୀ, ଏହା ପାଠ କଲେ ବୀର ଓଡ଼ିଆର ଦିଗ୍‌ବିଜୟ ଚିତ୍ର ହୃଦୟଙ୍ଗମ କରି-ହୁଏ, ପ୍ରାଣ ଗୌରବରେ ସ୍ଫୀତ ହୁଏ ।

"ଓଡ଼ିଶା ଗଜପତି କର୍ଣ୍ଣାଟ ଜୟକରି
ଆଣନ୍ତି ଯେ ଯାହାର ଯେତେକ ଦ୍ରବ୍ୟ ଜୁର
ସତ୍ୟବାଦୀ ଗୋପାଳ ଦେଉଳ ହସ୍ତେ ଦେଇ
ଏତେ ଦିନେ ଜୟ କଲେ ସେ କଥା ଚତୋଳି
ଅତି ଆନନ୍ଦେ ନୃପତି ଓଡ଼ିଶାକୁ ଚଳି
ଭଣ୍ଡ ଗଣପତିଙ୍କି ଯେ ଆଣିଲେକ ଟାଳି ।
ଅନେକ ଦେବଦେବୀ, ମୁଗୁନି ଦ୍ରବ୍ୟ କମ,
ଚଉକି ଜଳାକବାଟି ଅନେକ ଉତ୍ତମ
ଅନେକ ଅମୂଲ୍ୟ ଦ୍ରବ୍ୟ ବୁହାଇ ସକଳ ।
ଭଣ୍ଡ ଗଣପତି ଯେ ଦେବତା ତାହାଙ୍କର
ସେ ଯେ ବୋଲିଥିଲି ମୁଁ ପାରିବ ଯେବେ ଜିଣି
ତାର ଇଷ୍ଟଦେବଙ୍କୁ ରଖିବି ପଛେ ଆଣି ।
ଏମନ୍ତ ଚରିତ ଯେ ରାଜା ହିଁ ଶୁଣିଥିଲେ
ଦେଉଳ ପଛେ ଯେ ଗଣପତିଙ୍କି ରଖିଲେ ।"

କାଞ୍ଚିକାବେରୀ ଯୁଦ୍ଧରେ ଗୁଳିଗୋଳା ଓ ଧନୁଶରର ଉଭୟର ପ୍ରୟୋଗ ହୋଇଅଛି । କବି ପ୍ରାଚୀନ ଉତ୍କଳର ଐତିହାସିକ ଗୌରବ ସହିତ ଯୋଗସୂତ୍ର ରକ୍ଷା କରି ପାରିନାହାନ୍ତି, ତାଦୃଶ ଇତିହାସସଚେତନତା ତାଙ୍କର ନ ଥିଲା । ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ବୀରତ୍ୱର ଯେଉଁ ଅବଶେଷଟିକ ଥିଲା, ଊନବିଂଶ ଶତାବ୍ଦୀରେ ଯାହା ଗୋଧୂଳିର ଶେଷଶିଖା ପରି ଜଳି ଉଠିଥିଲା, କବି ତାର ଜୀବନ୍ତ ଚିତ୍ର ଦେଇଛନ୍ତି । ସୈନ୍ୟଙ୍କର ସାଜସଜ୍ଜା, ଅସ୍ତ୍ରଶସ୍ତ୍ର, ପଟୁଆର, ରସଦ୍‌ସରବରାହ, ଯାନବାହନ, ଯୁଦ୍ଧବାଦ୍ୟ, ଦୁର୍ଗରକ୍ଷିତ, ଯୁଦ୍ଧର ଗତି ପ୍ରତ୍ୟକ୍ଷଦର୍ଶୀ ଭାବରେ ସତେ ବା ବର୍ଣ୍ଣନା କରିଛନ୍ତି । ଏହା ଅତି ବାସ୍ତବ, ତେଣୁ ହୃଦୟସ୍ପର୍ଶୀ ହୋଇଅଛି । କେଉଁଠି ଅଳଙ୍କାରର ଆବରଣ ନାହିଁ, କଳ୍ପନାର ମେଦ ନାହିଁ । ତେବେ ସୁସଂଗଠିତ ଜାତୀୟ ସଂଗ୍ରାମର ପ୍ରୟାସ ଯେ ସେତେବେଳେ ସ୍ତିମିତ ହୋଇଅଛି, ତାର ଆଭାସ ମିଳିଥାଏ । ସୈନ୍ୟମାନଙ୍କ ଜାତିଭେଦ ଶୂନ୍ୟତା ଓ କଠୋର ଜୀବନର ଚିତ୍ର ଅତ୍ୟନ୍ତ ମନୋରମ ହୋଇଅଛି ।

"ସିପାହି ଲୋକ ଯେ ଆମେ ରୁଟି ପାଣି ଖାଉଁ
ରୁଟି ପାଣି ଖାଇ ଆମ୍ଭେ ସଦା ଯୁଦ୍ଧ ଥାଉଁ ।
ଶଉଚ ଅଶଉଚ ସବୁ ଆମ୍ଭ ଛନ୍ଦି
ଯେଉଁ ସ୍ଥାନେ ଯାହା ଦେଖୁଁ ତାହା ଯାଉଁ ଖାଇ ।"

## ସମର ତରଙ୍ଗ—ବ୍ରଜନାଥ

ବ୍ରଜନାଥ ବଡ଼ଜେନାଙ୍କ 'ସମରତରଙ୍ଗ'ରେ ଅଲୌକିକ ଶକ୍ତିର ହସ୍ତକ୍ଷେପ ନାହିଁ, ମନୁଷ୍ୟ ହିଁ ନିଜ ଭାଗ୍ୟ ନିର୍ମାତା । ମନୁଷ୍ୟର ଚରିତ୍ର ଏଥିରେ ଚିତ୍ରିତ ହୋଇଅଛି, ତାର ଉତ୍ସାହ, କର୍ମତତ୍ପରତା, ନିଷ୍ଠା, ବୀରତ୍ୱ ବା ମହତ୍ତ୍ୱମହିମାର ସ୍ପଷ୍ଟ ଚିତ୍ର ଏଥିରେ ଅଙ୍କିତ ହୋଇଅଛି । ତ୍ରିଲୋଚନ ମହେନ୍ଦ୍ର ବାହାଦୁର ଢେଙ୍କାନାଳର ରାଜା । ୧୭୭୨ରୁ ୧୭୯୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ରାଜତ୍ୱ କରିଥିଲେ । ୧୭୮୧ ସାଲରେ ଏହି ରାଜାଙ୍କ ସହିତ ମରହଟ୍ଟା ସୁବାଦାରଙ୍କର ଯେଉଁ ଯୁଦ୍ଧ ହୋଇଥିଲା, ତାହା 'ସମରତରଙ୍ଗ'ରେ ବର୍ଣ୍ଣିତ ।

ଢେଙ୍କାନାଳ ରାଜା ପେସ୍‌କସ୍ ନ ଦେବାରୁ ମରହଟ୍ଟା ସୁବାଦାର ରାଜାରାମ୍ ସୈନ୍ୟସାମନ୍ତ ନେଇ ଢେଙ୍କାନାଳ ଆକ୍ରମଣ କଲେ, କିନ୍ତୁ ପରାସ୍ତ ହେଲେ । ରାଜସୈନ୍ୟମାନେ ଗୋଟିଏ ଲୌହଧମସ ଓ ଚଡ଼କନଳି ମରହଟ୍ଟାଙ୍କଠାରୁ ଛଡ଼ାଇ ନେଲେ । ରାଜାରାମ୍ ଲଜ୍ଜିତ ହୋଇ ନାଗପୁରକୁ ସମ୍ବାଦ ପଠାଇଲେ । ଭୋନ୍‌ସଲ ମୁଢୋଜି ୪୦ ହଜାର ଅଶ୍ୱାରୋହୀ ସୈନ୍ୟଙ୍କ ସହିତ ନିଜର ସପ୍ତଦଶ-ବର୍ଷୀୟ ପୁତ୍ର ଚେମଣାବାବୁଙ୍କୁ ପଠାଇଲେ । ଏଥର ମଧ୍ୟ ମରହଟ୍ଟା ସୈନ୍ୟମାନେ ଶୋଚନୀୟ ଭାବେ ପରାଜିତ ହେଲେ ।

ଅଠର ଦିନ ପର୍ଯ୍ୟନ୍ତ ମରହଟ୍ଟାମାନେ ଦୁର୍ଗ ଅବରୋଧ କରିଥିଲେ । ମହେନ୍ଦ୍ର ବାହାଦୁରଙ୍କର ଦଶହଜାର ପାଇକ, ଅଠରଶ ତେଲେଙ୍ଗା ଓ ପାଞ୍ଚଶ ନାଗା ସୈନ୍ୟ ଥିଲେ । ତାଙ୍କର ଦୁର୍ଗ ଅତ୍ୟୁଚ୍ଚ ପ୍ରାଚୀରଦ୍ୱାରା ବେଷ୍ଟିତ ଥିଲା । ଏହି ପ୍ରାଚୀର ଅନ୍ତରାଳରେ ରହି ଢେଙ୍କାନାଳ ସୈନ୍ୟମାନେ ଅଗଣିତ ମରହଟ୍ଟା ସୈନ୍ୟଙ୍କ ପ୍ରଚଣ୍ଡ ଆକ୍ରମଣକୁ ପ୍ରତିହତ କରିପାରିଥିଲେ । ଦୁର୍ଗର ବାହାରେ ଚଣ୍ଡୀ-ପ୍ରସାଦ, କାଳିକାପ୍ରସାଦ, ମୁଲକମଏଦାନ ପ୍ରଭୃତି ବୃହତ୍ ତୋପମାନ ସଜ୍ଜିତ ହୋଇଥିଲା, ମରହଟ୍ଟାମାନେ ଦୁର୍ଗ ଚତୁର୍ଦ୍ଦିଗରେ ବେଷ୍ଟିତ ଗଭୀର ନଳୀ ଲଙ୍ଘନ କରିବାକୁ ମଧ୍ୟ ଅସମର୍ଥ ହୋଇଥିଲେ । ମରହଟ୍ଟାମାନଙ୍କ ଦ୍ୱିତୀୟ ଅଭିଯାନ ସୁବିସ୍ତୃତଭାବେ 'ସମରତରଙ୍ଗ'ରେ ବର୍ଣ୍ଣିତ ହୋଇଅଛି ।

ଏହି ଯୁଦ୍ଧରେ ପ୍ରାଚୀନ ଓ ଆଧୁନିକ ଉଭୟ ପ୍ରକାରର ଅସ୍ତ୍ରଶସ୍ତ୍ର ବ୍ୟବହୃତ ହୋଇଥିଲା—ଯଥା କୁନ୍ତ, ତୁର୍ଗି, ଫାରଶା, ଟାଙ୍ଗି, କଟାରି, ବାଙ୍କଛୁରି, ଗ୍ରେଟ୍‌, ଭଲ୍ଲ ବା ଭୁଲ, ସାବେଲ, କଲମ୍‌, ବର୍ଚ୍ଛା, ତରବାରି, ଧୂପ (ଏକଧାର ଖଡ଼୍‌ଗ), ଖଡ଼୍‌ଗ (ଦ୍ୱିଧାର) ସଙ୍ଗେ ଜଜାଲ (ଗ୍ରେଟ ତୋପ), ଦ୍ରିଣକଟଗୁଣ୍ଡା (ଲମ୍ବତୋପ), ଜମ୍ବୁରି (ଏକ ଶ୍ରେଣୀର ବଡ଼ ବନ୍ଧୁକ), ପେଟକଟା ସାତହାତି ବନ୍ଧୁକ, ଚକମକ-ଲଗା ନଳୀ ଇତ୍ୟାଦି ।

ମରହଟ୍ଟା ସୈନ୍ୟମାନେ ଆସୁଥିବା ବାଟରେ ପାଣି ପିଉ ପିଉ ନଈ ଶୁଖାଇ ଦେଲେ; ଘୋଡ଼ାମାନଙ୍କୁ ଚରି ମିଳିଲା ନାହିଁ । ବାଟରେ ଅନେକ ମଲେ । ତଥାପି ସେମାନେ ବହୁ ଆଟୋପରେ ପହୁଞ୍ଚୁଆରରେ ଆସୁଥିଲେ – ଘୋଡ଼ା ବେକରେ ଘଣ୍ଟି, ହାତୀ ବେକରେ ଘଣ୍ଟା, ହାତୀଙ୍କ ପିଠିରେ ଆମ୍ବାରୁ (ସୋଲଗଦା), ହାତୀ ମୁଣ୍ଡ ଉପରେ ଟୋପର (ଘୋଡ଼ଣି ଗୁଦର), ଘୋଡ଼ାଅାବଳଦ ପିଠିରେ ପଲାଣ, ବହୁ ଶଗଡ଼ ଓ ଶଗଡ଼ରେ ସମିଆନା, କନାଟ ନଦ, ଛଅଘୋଡ଼ା ଚକ ଥିବା ଗାଡ଼ିରେ ଲମ୍ବ ତୋପମାନ ଘେନି ଆସୁଥିଲେ । ହାତୀ ଉପରେ ଧଁସା ବା ନହବତ ବାଜା ଉଠୁଥିଲା ।

ଓଡ଼ିଆ ସୈନ୍ୟମାନଙ୍କ ମଧ୍ୟରେ କିଏ ବାମହସ୍ତରେ ଢାଲ, ଦକ୍ଷିଣ ହସ୍ତରେ ଭଲ ଧରିଥିଲା, କିଏ ରଙ୍ଗ ଅଙ୍ଗା ଓ ଲାଲ୍‌ପଗଡ଼ି ପିନ୍ଧି ଘୋଡ଼ା ଛୁଟାଉଥିଲା; କିଏ ତୁର୍କୀ ଘୋଡ଼ା ଉପରେ ବସି ଢାଲ ବର୍ଚ୍ଛା ଧରିଥିଲା, ଲମ୍ବାନିଶଙ୍କୁ କାନରେ ଖୋସି ଦେଇଥିଲା, କିଏ ଏରି ପକ୍ଷୀଙ୍କ ପର ବାହାରେ ବାନ୍ଧିଥିଲା, କାହାର ଘୋଡ଼ା ଦୁଇ ଗୋଡ଼ରେ ଗୃଳିଥିଲା, ପଡ଼ିଯିବା ଭୟରେ ସବାର୍ ତା ବେକକୁ କୁଣ୍ଢାଇ ଧରିଥିଲା । କିଏ ଗଜରାଜ ଉପରେ ହରଦ୍ରା ବର୍ଣ୍ଣର ହାଉଦା ପକାଇ ବସିଥିଲା, ଗଳାରୁ ତାର ମୋତି ଝାଲର ଲମ୍ବିଥିଲା ।

ଭଣ୍ଡି ବା କାଙ୍ଗୁଲ ବାଟେ ଓଡ଼ିଆ ସୈନ୍ୟମାନେ ବନ୍ଧୁକ ଦାଗିଲେ, ପ୍ରାଣଭୟରେ ଜୀବଜନ୍ତୁମାନେ ପଳାୟନ କଲେ, ବୃକ୍ଷର ଗଣ୍ଡିମାନ ଫାଟିଗଲା, ଧୂମରେ ଢେଙ୍କାନାଳର ଅରଣ୍ୟ ଅନ୍ଧକାରମୟ ହୋଇଗଲା । ରାଜା ନିଜେ ପ୍ରତି ମୁରୁଚ୍ଚୁକୁ ଆସି ସୈନ୍ୟମାନଙ୍କୁ ତେଜାଉଥାନ୍ତି । ଗୁଳମାଡ଼ର ପ୍ରତଦ୍ୱନ୍ଦ୍ୱିତା ନିମ୍ନ ପଦ-ମାନଙ୍କରେ କବି ବର୍ଣ୍ଣନା କରିଅଛନ୍ତି । ଏହା ଅତି କରୁଣ ।

"ଗୁଳି ଗଳିଗଲାକି କା ହୃଦର, ତେବେ ଡାକୁଛି ଭାଇ ମାର ମାର ।
ଗ୍ରେଟ ବସିଲାକି କାହା ମୁଖରେ, ଖଣ୍ଡା ହାତ ସେ ବଞ୍ଚୁଚି ପ୍ରଖରେ ।
କାହା ଗୋଡ଼ ଭାଙ୍ଗି ପଡ଼େ ଧରଣୀ, ଯାଇ ଘୋଷାରି ପଶୁଅଛି ହାଣି ।
କାହା ଗୁନ୍ତରେ କଙ୍କାଳେ ବାହାର, ପେଟ ଅବା ଫୁଟିଯାଏ କାହାର,

କେଉଁ ଲୋକର ତଣ୍ଡି ଯାଏ ଫୁଟି, ଝିଙ୍କି ପକାଏ କାହାର ଛକାଠି ।
ଯାଇଁ ବାଜଇ କାହାର ଗୁଣ୍ଡରେ, ଗୁଣ୍ଡି ବନ୍ଧୁକ ଖସେ କେ ଅଥିରେ,
ଝିଙ୍କି ପକାଏ କାହା ଜାନୁ ହାଡ଼, ସେ ଯେ ଧୋପାରେ ହୋଇ ନଡ଼ବଡ଼
କାହା ବଦନେ ଭେରଛୁ ନାଳଲି, ଦନ୍ତପାଟିରୁ ଫାଲେ ଧେନଗଲି,
ଥୁ ଥୁ କରି ପକାଏ ସେ ରକତ, କଥା କହିବାକୁ ନୋହେ ଶକତ
—ପୃ ୨୪, ୨୫, ସ. ତ.

ବ୍ରଜନାଥଙ୍କ ମନରେ ଉତ୍କଳର ଐତିହାସିକ ଗୌରବଚେତନା ଜାଗ୍ରତ ହୋଇନାହିଁ । ଅନଙ୍ଗଭୀମ, ନରସିଂହ, କପିଳେନ୍ଦ୍ର ବା ପୁରୁଷୋତ୍ତମଙ୍କର ଦିଗ୍‌ବିଜୟ ଚିତ୍ର ତାଙ୍କ ଆଖି ଆଗରେ ଉଦ୍‌ଭାସିତ ହୋଇନାହିଁ । ସେ ଜାତୀୟ ଗୌରବରେ ଉଦ୍ଦୀପ୍ତ ହୋଇନାହାନ୍ତି । ସତେ ବା ଉତ୍କଳର ସୁବର୍ଣ୍ଣଯୁଗ ସହିତ ଏ ଯୁଗର କୌଣସି ସମ୍ପର୍କ ନାହିଁ । ଏହା ଓଡ଼ିଶା ଇତିହାସର ଏକ ବିରଳ ଘଟଣା ମାତ୍ର, ଲୌକିକ ମହତ୍ତ୍ୱରେ ଉଜ୍ଜ୍ୱଳ । ପାରମ୍ପରିକ ବୀରଗୌରବର ଛନ୍ଦ-ସ୍ପନ୍ଦକୁ ସେ ଗ୍ରଥିତ କରିନାହାନ୍ତି । ପ୍ରାଚୀନ ଉତ୍କଳୀୟ ସମରସାହିତ୍ୟରୁ ସେ କୌଣସି ପ୍ରେରଣା ପାଇନାହାନ୍ତି । ରାମାୟଣର ଯୁଦ୍ଧ ବରଂ ତାଙ୍କର ମନେ ପଡ଼ି-ଯାଇଛି ।

"ପୂର୍ବେ ଲଙ୍କା ଲଢ଼ାଇ ଯା ଗୀତରେ
ଶୁଣୁଥାଇଁ ଏବେ ସେହି ମତରେ ।
ଗଲା ରକତ ନଦୀ ପ୍ରାୟେ ବହି
ଗିରି ପ୍ରାୟେ ମଡ଼ା ପଡ଼ି ଦିଶଇ ।
ଦେଖାଗଲା ନାଚିବାର କବନ୍ଧ
ଥାଉଁ ଥାଉଁ ନୟନ ହେଲା ଅନ୍ଧ ।

ଛିନ୍ନଭିନ୍ନ ହୋଇ ପଳାଇ ଯାଉଥିବା ମରହଟ୍ଟା ସୈନ୍ୟଙ୍କ ଉପରେ ଓଡ଼ିଆ ସୈନ୍ୟମାନେ ତୋପ ଦାଗିଲେ ।

'ଏଣେ ମୁରୁଚୁରେ ତୋପ ଦାଗନ୍ତେ
ଉଡ଼ିଗଲେ ଫଉଜ ଅବା କେତେ ।
ଉଡ଼ିଗଲେ ବା କେତେ ଘୋଡ଼ାଘୋଡ଼ି
କେତେ ତମ୍ବୁ କବାଟ ନେଲା ତଡ଼ି ।
ଗୋଳା ଗୋଟିକେ ଦଶବାଂଶ ଯହିଁ
ଉଡ଼ିଯାଆନ୍ତି ତୁଳା ପ୍ରାୟେ ହୋଇ ।

କପିଳେନ୍ଦ୍ର ବା ପୁରୁଷୋତ୍ତମଙ୍କ ବୀର ପ୍ରତିଷ୍ଠା ତ୍ରିଲୋଚନ ମହେନ୍ଦ୍ର ବାହାଦୂର ଭୁଲି ଯାଇଛନ୍ତି । ତାଙ୍କ ପିତୃପିତାମହ ହୁଏ ତ ଜାଣି ବା ଜାଣିବେଣି

କଷ୍ଟ ଲାଗି ସୈନ୍ୟ ପ୍ରେରଣ କରିଥିବେ । ଦ୍ରୋଣ, କର୍ଣ୍ଣ, ଭୀମ, ଅର୍ଜୁନଙ୍କ ସ୍ଥାୟୀ ଯଶ ପ୍ରତିଷ୍ଠା କଥା ସେ ମନରେ ଆଣିଛନ୍ତି ମାତ୍ର ।

ଅଠର ଦିନ ଦୁର୍ଗ ଅବରୋଧ କଲା ପରେ ପର୍ଯ୍ୟସ୍ତ ହୋଇ ଚେମଣା ବାବୁ ସନ୍ଧି ପ୍ରସ୍ତାବ ପଠାଇଲେ—ଗୋଟିଏ ଦିନ ଲାଗି ଦୁର୍ଗ ଛାଡ଼ି ଚାଲିଯାଅ, ମରହଟ୍ଟାର ମହତ୍ତ୍ୱ ରହୁ । ତାପରେ ଆମେ ଢେଙ୍କାନାଳ ଛାଡ଼ି ଚାଲିଯିବୁ । ଏ ପ୍ରସ୍ତାବରେ ରାଜା ରାଜି ହେଲେନାହିଁ । ବରଂ ପରାସ୍ତ ମରହଟ୍ଟା ସୈନ୍ୟଙ୍କୁ ଢେଙ୍କାନାଳର ଗଣଲୋ ସୈନ୍ୟ କଲବଲ କରିବାକୁ ଲାଗିଲେ । ଏହିପରି ଭାବରେ ଢେଙ୍କାନାଳ ଇତିହାସର ଉଜ୍ଜ୍ୱଳତମ ଅଧ୍ୟାୟଟି ଶେଷ ହୋଇଛି ।

ଗରିଲା ଯୁଦ୍ଧରେ ଓଡ଼ିଆ ସୈନିକ ସୁଦକ୍ଷ ଥିଲେ । କବି ତାହା ବର୍ଣ୍ଣନା କରିଛନ୍ତି—

ଯେଉଁ ବାହାରିଲେ ଜଣେ ହେଲେ କାଣ୍ଡ ଗଲା ବାଜି ପଡ଼ି ମରଇ
ହଗିଗଲା ବେଳେ ଜଗି ବସିଥାନ୍ତି ସାଙ୍ଗ ସାବେଲା କରେ ନେଇ ।
ଦେଖିଲେ ଗଛବୁଦା ତାଙ୍କୁ ଚୁହାଡ଼
ଗାଧୋଇଲାଠାରେ ଧରିଥାନ୍ତି ଡରେ ଲୁହା ଠେଙ୍ଗା ଭାଲ ଦୁଆଡ଼ ।

—ପୃ ୨୯ ସ. ତ.

ପରାଜିତ ମରହଟ୍ଟା ବାହିନୀର ଘୋର ଦୁର୍ଦ୍ଦଶା କବି ବର୍ଣ୍ଣନା କରିଛନ୍ତି । କାହା ଦେହରୁ ଶର ଓପାଡ଼ିବାରୁ ବା ଗୁଳା କାଢ଼ିବାରୁ ସେ ମରିଯାଇଛି, କିଏ ଗାତ-ଖୋଳି ନିଜ ଶ୍ୱଶୁରଙ୍କୁ ପୋତୁଛି । କିଏ ମାମୁଙ୍କୁ ପୋଡ଼ୁଛି । କିଏ ଆହତ ସୈନିକ ଦେହରୁ ଶର କାଢ଼ି ଘାଆ ସିଲାଇ କରିଦେଉଛି । ଯେତେ ଯତ୍ନ କଲେ ବି କାହା ଘାଆର ରକ୍ତ ବନ୍ଦ ହେଉନାହିଁ । ଆଖିରେ ଆଖିରେ ଲୁହ, ମନରେ ଘୋର ଆତଙ୍କ । କେଜାଣି କେତେବେଳେ ଓଡ଼ିଆ ସୈନ୍ୟ ପୁଣି ଆକ୍ରମଣ କରିବେ ।

ନିଜ ଭାଷାରେ ଯୁଦ୍ଧରେ ମୃତମାନଙ୍କ ଗୁଣ ସ୍ମରଣ କରି ବିଳାପ କରିବା ଅତି ସ୍ୱାଭାବିକ ହୋଇଅଛି—

'କେ ବୋଲଇ ହାହା ରେ ବେଟା ମେରା
କୈସେ ଗୁନ୍ ବସୋରୁଁ ମୈଁ ତେରା
କେହୁ କାନ୍ଦଇ ହାହା ମେରା ଭାଇୟେ
କ୍ୟା ଗୁନାହ ମୁଝକୋ ଛୋଡ଼ି ଗୟେ ।'

ବ୍ରଜନାଥ ରୀତିଯୁଗର, ମୁଖ୍ୟତଃ ଶୃଙ୍ଗାରରସର କବି । 'ସମରତରଙ୍ଗ' ତାଙ୍କର ଏକ ନୂତନ ପଦକ୍ଷେପ । ସେଥିରେ ସେ ପୂର୍ଣ୍ଣମାତ୍ରାରେ ଯଶସ୍ୱୀ ହୋଇଛନ୍ତି । ତତ୍କାଳୀନ ସମଗ୍ର ଭାରତରେ ଏ ଢଙ୍ଗରେ ସେ ଏକକ କହିଲେ

ଚଳେ । ତାଙ୍କର ହୃଦୟ ବୀରହୃଦୟ, ସେ ସ୍ମରଣ କବ । ତାଙ୍କ ବର୍ଣ୍ଣନାରେ ସେ କୌଣସି ଗତାନୁଗତିକ ଧାରାକୁ ଅନୁସରଣ କରି ନାହାନ୍ତି । ଦୁର୍ଗ ସମ୍ପର୍କରେ ତାଙ୍କ ଜ୍ଞାନ ପ୍ରତ୍ୟକ୍ଷ, ସମରକୌଶଳ ଓ କୂଟନୀତିରେ ସେ ବିଶାରଦ, ଅସ୍ତ୍ରଶସ୍ତ୍ର ସଜ୍ଜା, ସୈନିକଙ୍କ ବେଶଭୂଷଣ, ପରାଜିତ ସୈନିକଙ୍କ ମନୋବିଜ୍ଞାନ ପ୍ରତ୍ୟକ୍ଷଦର୍ଶୀ ବ୍ୟତୀତ କିଏ ଏପରି ହୃଦୟଙ୍ଗମ କରିପାରିବ ? ସେକାଳର ବିଭିନ୍ନ ସାମରିକ ଶବ୍ଦ ଚୟନରେ ବ୍ରଜନାଥଙ୍କ କୃତିତ୍ୱ ବିଶେଷ ପ୍ରଶଂସନୀୟ । ପ୍ରକୃତ ଯୁଦ୍ଧ କ୍ଷେତ୍ରର ବର୍ଣ୍ଣନାରେ ତାଙ୍କ ଭଳି ଓଡ଼ିଆ କବିଙ୍କ ମଧ୍ୟରେ ଆଉ କେହି ନାହିଁ । ପାଠକ ମନରେ ଯୁଦ୍ଧର ବତାବରଣ ସୃଷ୍ଟି କରିବାରେ ସେ ପ୍ରବୀଣ ।

## ବୁଢ଼ାପଙ୍କ ଯୁଦ୍ଧ ପୋଥି—ନୃସିଂହ ରାୟଗୁରୁ

'ରାଜା ସୋମନାଥ ସିଂହ ଜଗଦେବ'ଙ୍କ ନାମରେ ଏହି ଗ୍ରନ୍ଥ ପ୍ରକାଶିତ ହୋଇଅଛି । କିନ୍ତୁ ବୁଢ଼ାପଙ୍କ ଯୁଦ୍ଧ ଛଡ଼ା ବାକୀ ଅଂଶ ନିତାନ୍ତ ଅବାନ୍ତର ବୋଧ ହୁଏ । ଅନୁଗୁଳ ରାଜା ସୋମନାଥ ସିଂହଙ୍କ ବୀରତ୍ୱ ବା ମହତ୍ତ୍ୱ ପରବର୍ତ୍ତୀ ଅଂଶରେ ଚିତ୍ରିତ ହୋଇନାହିଁ । ବରଂ ସେ କିପରି ଏକଜିଦିଆ, କଳିହା ଥିଲେ, ଜଗନ୍ନାଥ ଯାତ୍ରୀଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ ତାର ନୀରସ ବିବରଣୀ ଏଥିରୁ ମିଳେ । ଅନୁଗୁଳ ରାଜାଙ୍କ ବିରୁଦ୍ଧରେ ଅଭିଯୋଗଗୁଡ଼ିକ ହିଁ ଏଠି ପରେ ସଂଯୁକ୍ତ ହୋଇଅଛି । ବ୍ରିଟିଶରାଜ ଅନୁଗୁଳକୁ ସ୍ୱ ସାମ୍ରାଜ୍ୟରେ ମିଶାଇବା ଲାଗି କେତେକ ଅମୂଳକ ଅଭିଯୋଗ ଆଣିଥିଲେ । କବି ସେଗୁଡ଼ିକ ଏଥିରେ ଯୋଗ କରିବାର କୌଣସି ଅର୍ଥ ନାହିଁ । ମିଲସ ସାହେବଙ୍କ ରିପୋର୍ଟ ମଧ୍ୟ ଅଦ୍ଭୁତ । ସେ ଉପର ମହଲକୁ କାହିଁକି ଏଭଳି ଭିତ୍ତିହୀନ, ଅତିରଞ୍ଜିତ ରିପୋର୍ଟ ଦେବେ ? ଏହା ଇଂରେଜର ପ୍ରକୃତିବିରୁଦ୍ଧ; ଅନୁଗୁଳ ରାଜାଙ୍କୁ ଏତେ ଶକ୍ତିଶାଳୀ ମନେ କରିଥିବାର କୌଣସି ପ୍ରମାଣ ନାହିଁ ।

'ଅରେ ତୁମ୍ କ୍ୟା ନବାବ ହୋ ଅନୁଗୁଳ ରାଜା ବଡ଼ା
ସାରା ଯାହାନ୍‌ମେ ହୁକୁମ ଫିରାଏ ସ୍ୱହିଁ ହାଁକେ ଘୋଡ଼ା ।
ଘଡ଼ି ଘଡ଼ିମେ ଫଉଜ ଚଲାଏ ହିନ୍ଦୋଲଗଡ଼ ଧାଆଁ ଉଡ଼ା ।
କୁରୁମିଠା ହବେଲି କବେଲି ଯେତ୍ନା ଦୌଲତ ପୋଡ଼ା ।'

ନୃସିଂହ ରାୟଗୁରୁ 'ବୁଢ଼ାପଙ୍କ ଯୁଦ୍ଧ ପୋଥି' ଲେଖି ଅନୁଗୁଳ ରାଜାଙ୍କଠାରୁ 'କବିଚନ୍ଦ୍ର' ଉପାଧି ଲାଭ କରିଥିଲେ, ରାଜାଙ୍କ ପରବର୍ତ୍ତୀ ଜୀବନର ଏପରି ନିକୃଷ୍ଟ ଚିତ୍ରଣ ଦେବା ତାଙ୍କ ପକ୍ଷରେ ଅସଙ୍ଗତ ବୋଧହୁଏ । ପରବର୍ତ୍ତୀ ଅଂଶର ରଚନାରେ କୌଣସି ମୌଳିକତା ମଧ୍ୟ ନାହିଁ ।

୧୮୧୪ ଖ୍ରୀଷ୍ଟାବ୍ଦରେ ସୋମନାଥ ସିଂହ ଅନୁଗୁଳର ସିଂହାସନ ଆରୋହଣ କଲେ; ୧୮୫୩ରେ ହାଜାରିବାଗ୍ ଜେଲ୍‌ରେ ତାଙ୍କର ମୃତ୍ୟୁ ହେଲା । ସେ ୬୩ ବର୍ଷ ରାଜତ୍ୱ କରିଥିଲେ । ୧୮୨୫ ଖ୍ରୀଷ୍ଟାବ୍ଦ ଅନୁଗୁଳ ଢେଙ୍କାନାଳ ମଧ୍ୟରେ "ବୁଢ଼ାପଙ୍କ" ଯୁଦ୍ଧ ହୋଇଥିଲା । ସେତେବେଳକୁ ରାଜାଙ୍କ ବୟସ ୨୫ ବର୍ଷ । ଢେଙ୍କାନାଳ ରାଜା ବୁଢ଼ାପଙ୍କ ଗ୍ରାମରେ ପ୍ରଥମେ ଆକ୍ରମଣ ଆରମ୍ଭ କରିଥିଲେ, କିନ୍ତୁ ସୋମନାଥ ସିଂହଙ୍କ ପ୍ରଚଣ୍ଡ ପ୍ରତାପ ସମ୍ମୁଖରେ ତିଷ୍ଠି ନ ପାରି ଛତ୍ରଭଙ୍ଗ ଦେଇଥିଲେ । ଏ ଯୁଦ୍ଧରେ ହିନ୍ଦୋଳ, ଦର୍ପଣୀ, ସୁକିନ୍ଦା, ଆଠଗଡ଼, ବଲରାମପୁର, ଦଶପଲ୍ଲା, ଢେଙ୍କାନାଳ ରାଜାଙ୍କୁ ସାହାଯ୍ୟ କରିଥିଲେ । ଅନୁଗୁଳର ସପକ୍ଷରେ କେବଳ ତାଙ୍କ ଶ୍ୱଶୁର ତାଳଚେର ରାଜା ଥିଲେ ।

ଏହି ପୁସ୍ତକର ୧୭ଟି ଗ୍ରନ୍ଥ ମଧ୍ୟରୁ ୬ଟି ଗ୍ରନ୍ଥ ବୁଢ଼ାପଙ୍କ ଯୁଦ୍ଧକୁ ଅବଲମ୍ବନ କରି ରଚିତ । ସେତେବେଳକୁ 'ସମର ତରଙ୍ଗ' ମୁଖେ ମୁଖେ ଗୀତ ହେଉଥିଲା । ନୃସିଂହ ରାୟଗୁରୁ ସମର ବର୍ଣ୍ଣନାରେ ବଡ଼ଜେନାଙ୍କ ପ୍ରଭାବ ଏଡ଼ିପାରି ନାହାନ୍ତି ।

ସେତେବେଳେ ଅନୁଗୁଳରେ ବାରୁଦ ତିଆରି କାରଖାନା ଥିଲା । ଅନୁଗୁଳ ରାଜା 'ଶତ୍ରୁଘ୍ନ ଚଣ୍ଡୀ', 'କାଳିକା ପ୍ରସାଦ' ପ୍ରଭୃତି କେତେକେ ବଡ଼ ବଡ଼ ତୋପ ସଂଗ୍ରହ କରିଥିଲେ । ତା ଛଡ଼ା ତାଙ୍କର ଅନେକ ଜଜାଲ, ଜମ୍ବୁରା ଥିଲା ଓ ଶତାଧିକ ଅଶ୍ୱାରୋହୀ ସୈନିକ ଥିଲେ । ସୈନିକମାନେ ଲୌହଜାଲି ନିର୍ମିତ ଶିରସ୍ତ୍ରାଣ ପରିଧାନ କରୁଥିଲେ । ବନ୍ଧୁକ ସହିତ ତୀର, ଭାଲା, ତରବାରି ବ୍ୟବହୃତ ହେଉଥିଲା । ଉଦ୍ଧୃତ ପଦମାନଙ୍କରେ 'ମହାମଣ୍ଡଳ ଅଶ୍ୱ ଆରୋହୀ' ସୋମନାଥଙ୍କ ଯୋଦ୍ଧୃବେଶ ବର୍ଣ୍ଣିତ ହୋଇଅଛି ।

"ପିନ୍ଧିଲେ ଯୁଦ୍ଧ ପୋଷାକ ଅଙ୍ଗେ,
ନାନା ଅସ୍ତ୍ରଶସ୍ତ୍ର ଘେନିଣ ସଙ୍ଗେ ।
ସେ ନୃପତିଭାନୁ,
କୋପୀ ସିଂହ ପ୍ରାୟ କମ୍ପଇ ତନୁ ।
ବୀର ବେଶେ ବଜେ ମୁକୁଟ ମଣି,
ଝଲନ୍ତେ ଶୋଭା ଦିଶଇ ଧରଣୀ ।
ବଇରୀ ଦଳନ ବାନାକୁ ବାନ୍ଧି,
ଅନର୍ଗଳ ତୋଡ଼ି ଚରଣେ ଛନ୍ଦି ।
ସେ ଲୋହ ଚକ୍ରକୁ,
ଯତ୍ନେ ମର୍ଣ୍ଣି ନେଲେ ନୃପ ଜାନକୁ ।"

—ପୃ ୭, ସୋମନାଥ ସିଂହ ଜଗଦେବ

ଯୁଦ୍ଧର ପ୍ରଥମ ଭାଗରେ ଆକ୍ରମଣକାରୀ ଢେଙ୍କାନାଳେ ବିଜୟୀ ହେବାର ସମ୍ଭାବନା ଦିଶୁଥିଲା । ଯୁଦ୍ଧର ଉପଯୁକ୍ତ ବର୍ଣ୍ଣନା ଅତ୍ୟନ୍ତ ସ୍ୱାଭାବିକ ହୋଇଅଛି—

"ତେଣେ ପରଙ୍ଗ ଗଡ଼ନାୟକ ଥିଲା
ପୂର୍ବ ଦିଗକୁ ତାର ଦୃଷ୍ଟି ନ ଥିଲା
ବାଜିଲା ଗୋଳା ବାମ ହସ୍ତରେ
ଛିଡ଼ିଣ ଭୁଜ ପଡ଼େ ଭୂମିରେ
ପ୍ରାଣ ରହିଲା, ମାତ୍ର ସତ୍ୟରେ ହତ ନୋହିଲା ଯେ ।
ଏହି ସମୟେ କଥାଏ ଶୁଣ
ଥିଲା ଯେ ଢେଙ୍କାନାଳ ପଠାଣ
ବାମ କରରେ ତୀର କମାଣ ଧରି ଧାଇଁଲା ଯେ ।
ମନରେ କରିଥିବ ବିଚାର
ଯଶ ଉଡ଼ାଇ ରଖିବି ମୋର
ବିଶେଷେ ମାୟାମୟ ସଂସାର ବୋଲି ଧାଇଁଲା ଯେ ।
ମୂଳିଆ ଦଳବେହେରା ସେ ପାଖେ ଥିଲା
ଭଲି ସଲଖି ଜମ୍ବୁରା ଯୋଡ଼ିଣ ଦେଲା
ବାଜିଲା ଗୋଳା ମସ୍ତକେ ଘାତେ
ଭ୍ରମିଲା ବନ ବେଢ଼ା ପର୍ଯ୍ୟନ୍ତେ
ପଡ଼ି କାଢ଼ିଲା ରସନା ହାତେ ଜୀବନ ଗଲା ଯେ !
ଘୋର ପ୍ରବଳ ସଂଗ୍ରାମ ହୋଇ
ଅନ୍ଧାର ଦିଶେ ଶୂନ୍ୟମଣ୍ଡଳ
କାହାର କେତେ ଶିର କମଳ ଯାଉଛି ଉଡ଼ି ଯେ ।
କାହାର ଚୁଟି ଲୁଟି ଛିଡ଼ଇ
କେ କଟିଯାଇ ତଳେ ପଡ଼ଇ
କେ ଲଟି ଧରି ଲୁଟଇ ମଝି ଦନ୍ତକୁ ଭିଡ଼ି ଯେ ।
ଏହିପରି ସମର ଚଉଦ ଘଡ଼ି
ବନ ଯୋଜନେ ପକ୍ଷୀ ନ ପାରେ ଉଡ଼ି
ଶୁଣିଲେ ଅନୁଗୁଳ ରାଜନ
ବୋଇଲେ ମୋର ଗଲା ଭୁବନ ସମ୍ପଦ ବୁଡ଼ି ଯେ ।"

ଢେଙ୍କାନାଳ ରାଜା ହିଁକେ ଯୁଦ୍ଧକ୍ଷେତ୍ରକୁ ଆସି ନ ଥିଲେ; କିନ୍ତୁ ସୋମନାଥ ଯେପରି ଶକ୍ତିଶାଳୀ ସେହିପରି ଉତ୍ସାହୀ; ତାରୁଣ୍ୟର ତେଜ ସଙ୍ଗେ ଉତ୍ସାହର ସ୍ଫୂର୍ତ୍ତି ତାଙ୍କ ବ୍ୟକ୍ତିତ୍ୱକୁ କରିଛି ଅଭିନବଭାବେ କ୍ରିୟାଶୀଳ । ସେ ହୋଇଛନ୍ତି ସ୍ମରଣ କବି,

ସ୍ୱୟଂ ସେନାପତି । ସୈନ୍ୟମାନେ ତାଙ୍କ ଉତ୍ସାହ ଓ ଆତ୍ମପ୍ରତ୍ୟୟରେ ଉଦ୍ଦୀପ୍ତ ହୋଇ ଉଠିଛନ୍ତି; ସେମାନଙ୍କ ତତ୍କାଳୀନ ମନୋବୃତ୍ତି ବିଜୟର ଅନୁକୂଳ । କେହି କେହି ଯୁଦ୍ଧକ୍ଷେତ୍ରରେ ଜୀବନ ଆହୁତି ଦାନ ରୂପ ଯଶ ଅର୍ଜନକୁ ଶ୍ରେୟସ୍କର ମନେ କରିଛନ୍ତି । ଦିନେ ନା ଦିନେ ସମସ୍ତେ ମରିବେ । ସମ୍ମୁଖ ସଂଗ୍ରାମରେ ମୃତ୍ୟୁ କ୍ଷତ୍ରିୟ ପକ୍ଷରେ ଚରମ ଗୌରବ, ପୁଣି ଏହା ଫଳରେ ସ୍ୱର୍ଗବାସ ହୁଏ ବୋଲି ସେମାନଙ୍କ ମନରେ ଦୃଢ଼ବିଶ୍ୱାସ ରହିଅଛି । ତେଣୁ ଅକାତରରେ ପ୍ରାଣବଳି ଦେବାକୁ ସେମାନେ ପ୍ରସ୍ତୁତ ହୋଇଛନ୍ତି । ବୀରମାନଙ୍କ ବ୍ୟକ୍ତିଗତ ନାମ ଓ ସେମାନଙ୍କ ସଂଗ୍ରାମ ବିବରଣୀ ଏ ଗ୍ରନ୍ଥକୁ ଦେଇଛି ଏକ ସ୍ୱତନ୍ତ୍ର ମୂଲ୍ୟ । ଅନୁଗୁଳ-ବାସୀଙ୍କ ହୃଦୟ ଏହା ପାଠକରି ଅବଶ୍ୟ ଉଦ୍‌ବୁଦ୍ଧ ହେଉଥିବ । ବୈଷ୍ଣବ ଗଡ଼ନାୟକ, କୃଷ୍ଣ ସାମନ୍ତରାୟ, ସିଂହ ଗଡ଼ନାୟକ, ଫତେ ସିଂହ ପ୍ରଭୃତି ଆଜି ଅମର ।

ସୋମନାଥଙ୍କ ନେତୃତ୍ୱରେ ଅନୁଗୁଳର ଅଶ୍ୱାରୋହୀମାନେ ଆଗେଇ ଯିବାର ଦେଖି ଢେଙ୍କାନାଳ ସୈନ୍ୟମାନେ ତୋପ ଦାଗି ଦେଲେ; ଧୂମପଟଳରେ ଚତୁର୍ଦ୍ଦିଗ ଆଚ୍ଛନ୍ନ ହୋଇଗଲା । ଏହି ଯବନିକାର ଅନ୍ତରାଳରେ ଅନୁଗୁଳର ଅଶ୍ୱାରୋହୀ ଓ ତାଙ୍କ ପଛରେ ପଦାତିକବାହିନୀ ଆଗେଇ ଚାଲିଲେ ।

"ଯେ ଯେଉଁଣେ ପାରିଲା ଯେ ମାରିଲା ତୀକ୍ଷ୍ଣ କୁନ୍ତ,
ଅଁଲା ପିଅଁଲା ନାଡ଼ୀ ଯେ ବାହାର ସରୁ ଅନ୍ତ ।
କାହାର ମସ୍ତକରେ ବାଜିଲା ଭାଲ ମୂନ,
ଗିରକୁ ରୁଧିର ବାହାରି ଯେ ଗୁଚ୍ଛିଲା ଜୀବନ ।"

× × × ×

"ଯେବଣ ବାପୁଡ଼ା ମାଇଲା ବଜ୍ର ନଳୀ,
ଫେରିଲା ସେ ପାଏକ ଆନନ୍ଦେ ଯାଏ ଚଳି ।
ଉତ୍ତର ଦିଗରେ ଥିଲା ପ୍ରଚଣ୍ଡ ବିଧାରି,
ଗଲା ଗଲା ଶବ୍ଦ ବୋଲି ବନ୍ଧିଲା ବାଜିବର ।
ଆଗ ମୁଖେ ପଡ଼ି ମାଇଲା ତୀକ୍ଷ୍ଣ କୁନ୍ତ,
ଶିର ଗୋଟା କାଟି ଧଇଲା ବାମ ହସ୍ତ ।
ଯେବଣ ବାପୁଡ଼ା ଗୁଳି ମାଇଲାକ ପୁଣି,
ଉତ୍ତରକବାଟ ତାକୁ ପକାଇଲା ହାଣି ।

× × × ×

ସେହି ଧୂଆଁ ବହୁଲେ ଯେ ପଶିଲେ ଅନୁଗୋଳ,
ଜାଣି ନ ପାରିଲେ କପଟୀ ଢେଙ୍କାନାଳ ।

ଅଙ୍ଗ ଛନ୍ଦ ପାଇଣ କଲେକ ଖଲ୍ଲ ମାଡ଼,
ଢେଙ୍କାନାଳ ସୈନ୍ୟରେ ପଶିଲା ଭଗଡ଼ ।
ଅନୁଗୋଳ ଖାରେ ଯେ ପାଇଲେ ରଣ ଜୟେ,
ଆପେ ଯୁଦ୍ଧ କିରନ୍ତି ସୋମନାଥ ରାୟେ ।
ତୋପ ଧ୍ୱଜା ସହିତେ ସକଳ ଗଲେ ଗୁଡ଼ି,
କମଳାଙ୍ଗଠାରୁ ରାଜା ଅଇଲେ ବାହୁଡ଼ି ।"

ବୁଢ଼ାପଙ୍କ ଯୁଦ୍ଧ ଏକ ସ୍ଥାନୀୟ ଯୁଦ୍ଧ; ମାତ୍ର ଅଳ୍ପ କେତେ ଘଣ୍ଟା ମଧ୍ୟରେ ଶେଷ ହୋଇଥିଲା । ଦୁଇ ଗ୍ରାମ ମଧ୍ୟରେ ସୀମାଗତ ବିବାଦ ଘେନି ବାଡ଼ିଆବାଡ଼ି ହେଲପରି ଏହା ଏକ ଘଟଣା । ତେବେ ଏଥିରେ ଠେଙ୍ଗାବାଡ଼ି ବଦଳରେ ଖଣ୍ଡା, ତରବାରି ଓ ଜଜାଲ, କମ୍ବୁରାମାନ ବ୍ୟବହୃତ ହୋଇଥିଲା । ଢେଙ୍କାନାଳର ଗୃହ ଶତ ସୈନ୍ୟ ମରିଥିଲେ, ଉଭୟପକ୍ଷର ବହୁ ସୈନ୍ୟ କ୍ଷତବିକ୍ଷତ ହୋଇଥିଲେ । ସମର-ସାହିତ୍ୟରେ 'ବୁଢ଼ାପଙ୍କ ଯୁଦ୍ଧ'ର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି, ଏହା ସ୍ୱୀକାର୍ଯ୍ୟ ।

## ଭଞ୍ଜବିହାର—ବାସୁଦେବ

ଗୋଟିଏ ଲୌକିକ ଘଟଣାକୁ ଘେନି ଏହି କାବ୍ୟ ରଚିତ : 'ବ୍ରାହ୍ମଣଘାଟି'ର ଜମିଦାର ମାଧବ ଦାସ ମୟୂରଭଞ୍ଜର ତତ୍‌କାଳୀନ ରାଜା ଯଦୁନାଥଭଞ୍ଜଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟ୍ ଉଇଲ୍‌କିନ୍ ସାହେବ ତାଙ୍କୁ ଭିତରେ ଭିତରେ ସମର୍ଥନ କଲେ । କିନ୍ତୁ ଓଡ଼ିଶାର କମିଶନର୍‌ଙ୍କ ସାହାଯ୍ୟ ଯୋଗୁଁ ମୟୂରଭଞ୍ଜ ମହାରାଜାଙ୍କର କୌଣସି କ୍ଷତି ହେଲା ନାହିଁ । ରାଜା ଦୃଢ଼ହସ୍ତରେ ବିଦ୍ରୋହ ଦମନ କଲେ, ମାଧବ ଦାସଙ୍କ ଉଆସରେ ଅଗ୍ନି ସଂଯୋଗ କଲେ । ବିଦ୍ରୋହୀମାନଙ୍କ ଗୃହ ମଧ୍ୟ ଦଗ୍ଧ ହେବାକୁ ଲାଗିଲା । ଉପାୟାନ୍ତର ନ ଦେଖି ମାଧବ ଦାସ ରାଜାଙ୍କର ଶରଣ ପଶିଲେ, ବ୍ରାହ୍ମଣଘାଟି ମୟୂରଭଞ୍ଜରେ ରହିଲା, କିନ୍ତୁ ଷଢ଼େଇକଲା, ଖରସୁଆଁ, ପୋଡ଼ାହାଟ ପ୍ରଭୃତି ନ'ଟି ପୀଢ଼ ମୟୂରଭଞ୍ଜରୁ ଅଲଗା ହୋଇଗଲା । ଏହା ୧୮୩୪—୩୫ ଖ୍ରୀ:ଅ:ର ଘଟଣା ।

ଏହି କାବ୍ୟ ଏବେ ପାଣ୍ଡୁଲିପି ଅବସ୍ଥାରେ ଅଛି । ଏହାର ରଚୟିତା ବାସୁଦେବ, ତାଙ୍କ ଘର ମୟୂରଭଞ୍ଜର ବୈଦ୍ୟନାଥପୁର ଶାସନରେ । ତାଙ୍କ ଇଷ୍ଟଦେବୀ 'କୀଚକେଶ୍ୱରୀ' । କାବ୍ୟର ଭଣିତା ହେଉଛି 'ଦ୍ୱିଜ ବାସୁଦେବ ବୋଲେ ଛାନ୍ଦ ହେଲା ପୂର୍ଣ୍ଣ ।'

* ପରମାନନ୍ଦ ଆଚାର୍ଯ୍ୟଙ୍କ ସଂଗୃହୀତ ପାଣ୍ଡୁଲିପିରୁ ଗୃହୀତ ।

ମାଧବର ଗଡ଼ ଯେ ସେ 'ବ୍ରାହ୍ମଣଘାଟି'ର ଏକାଙ୍ଗଚକ୍ରବର୍ତ୍ତୀ; ଏକ ସହସ୍ର ସୁସଜ୍ଜିତ ସୈନିକଙ୍କର ସେନାପତି ସେ । ଅତି ଉଦ୍ଧତ ହୋଇ ଗ୍ରାମାଞ୍ଚଳରେ ଲୁଣ୍ଠତରାଜ ଆରମ୍ଭ କଲା, ବ୍ରାହ୍ମଣମାନଙ୍କୁ ନିର୍ବିଚାରରେ ହତ୍ୟା କଲା, ଗୋ ମହିଷ ହରଣ କଲା । ମୟୂରଭଞ୍ଜର ରାଜା ପ୍ରତାପ ଯଦୁନାଥ ଭଞ୍ଜ ମାଧବକୁ ଧରିଆଣିବାଲାଗି ପରଓ୍ୱାନା ପଠାଇଲେ । ମାଧବ ହାଜରିବାଗକୁ ପଳାଇଯାଇ ଉଇଲ୍‌କିନ୍ସ ସାହେବଙ୍କ ସଙ୍ଗେ ସାକ୍ଷାତ୍ କଲା । ରାଜା ମଧ୍ୟ କଲିକତାର ଗ୍ରେଟ୍‌ଲାଟଙ୍କୁ ସମସ୍ତ କଥା ନିବେଦନ କଲେ । ତା ସଙ୍ଗେ ସଙ୍ଗେ ଏଣେ ଦୃଢ଼ହସ୍ତରେ ବିଦ୍ରୋହ ଦମନ କଲେ । ଲାଟଙ୍କ ବିଚାରରେ ମାଧବ ମହାରାଜାଙ୍କୁ ବର୍ଷକୁ ତିନିହଜାର ଟଙ୍କା କର ଦେବାର ସ୍ଥିର ହେଲା ।

ରାଜାଙ୍କ ଯୁଦ୍ଧ ଯାତ୍ରାର ଶୁଭଲଗ୍ନ ପାଟଯୋଷୀ ନିରୂପଣ କଲେ, ସହସ୍ରେ ଶଙ୍ଖ ବାଜି ଉଠିଲା, ଭାଟମାନେ ଜଏବାର କଲେ, ମାଣିକ୍ୟର ଦୀପାବଳୀ ଜଳି ଉଠିଲା । ଗୋପୀ, ଧୀବରୀ, 'ଦଧି', 'ମତ୍ସ୍ୟ' ବୋଲି ଡାକ ଦେଲେ । ବୈରେଣ, ତାସ, ଆଢ଼େଣି, ଶ୍ୱେତଛତ୍ର, ପାଟଛତ୍ର ଗହଣରେ ବାରିପଦା ଦୁର୍ଗର ରକ୍ଷାଭାର ରାଉତରାଙ୍କୁ ଦେଇ ମହାରାଜା ଯୁଦ୍ଧଯାତ୍ରା କଲେ ।

'ସିନ୍ଦୁକ ପେଟରା ବୋଝ ଭାର କରିନେଲେ ।' ସୈନ୍ୟଙ୍କ ପଦ ଧୂଳିରେ ଚତୁର୍ଦ୍ଦିଗ ଆଚ୍ଛନ୍ନ ହେଲା । ଯୁଦ୍ଧ ପ୍ରାୟ ଏକତରଫା, ମାଧବର କେତେଜଣ ସୈନ୍ୟ ରାଜାଙ୍କ ବିପୁଳ ବାହିନୀ ବିରୁଦ୍ଧରେ କି ଯୁଦ୍ଧ କରିବେ ? ଏଠି ଯୁଦ୍ଧ ମାନେ ଗୃହଦାହ, ବିପୁଳ ହତ୍ୟାକାଣ୍ଡ, ଶିଶୁ ଅବଳାଙ୍କ କରୁଣ ରୋଦନ ଧ୍ୱନି । କବି ତାହା ବର୍ଣ୍ଣନା କରିଛନ୍ତି—

'ପରିଧି ପରାୟେ ବେଗେ ରୁନ୍ଧିଲେ
ଯୋଦ୍ଧାମାନେ ଆବରିଣ ରହିଲେ
ରାଉତ ଅଶ୍ୱନ୍ତ ମଧ୍ୟେ ଧୂଆଁଇ
ପଦାନ୍ତ ଅଗ୍ନି ଗୃହେ ଦେଲେ ନେଇ
ଫଳାଶନ ଧରି
କନ୍ଦ ବିକନ୍ଦ ରହିଲେ ଆବୋରି ।

ଗରଷ୍ଟ ଧନୁ କିଏ ଘାଟେ ବାଟେ
ଆବୋରି ରହିଲେ ତୃଣ ନିକଟେ
ଏ ସମୟେ ଦଉଆଇଲେ ଟମକ
ଧାଙ୍ଗୁଆମାନଙ୍କୁ ହେଲା ଚମକ

ବାଜେ ବୀର ଘୋଷ
ନିଶାଣ ଘାଏ କର୍ମେ ଦଶଦଶ ।

ଧାନୁଆମାନେ କି ଧନୁକୀମାର
ତଥାପି ରହି ଯୁଝନ୍ତି ଅପାର
ପାଦେ ନ ଘୁଞ୍ଚନ୍ତି ପଛକୁ କେହି
ଆଗଭର ଲୋକ ଲୋଟି ପଡ଼ଇ
ବାଣର ବେଗରେ
ବିଦ୍ୟୁ ଝଟକ କି ବଳାହକରେ ?

ପ୍ରଚଣ୍ଡରେ ଅଗ୍ନି ଆସଇ ଜଳି
ହସ୍ତି ବାଳକ ସବୁ ଦାଣ୍ଡେ ମିଳି
ଘୃରଦଗୁ ଗୋଠ ପଡ଼ିଲେ ମାଡ଼ି
କୂଳ ବୁଡ଼ାଇ କି ସରିତ ବଢ଼ି
ହେଲେ ମଧ ଦାଣ୍ଡେ
ମିଳି ଖଡ଼୍ଗ ଧରି କାଟିଲେ ମୁଣ୍ଡ ।

ନିଘଞ୍ଚେ ଶବ ପଡ଼ିଲେକ ଯହିଁ
ରାଉତେ ଅଶ୍ୱ ଧାପ ଦେଲେ ତହିଁ
ପିଶିତେ ଶୋଣିତେ କର୍ଦ୍ଦମ ମଣ୍ଡି
ମୁଣ୍ଡମାନ ସବୁ ଦେଲେ ଗୁଣ୍ଡାଇ
ଅଚଳ ସମାନ
ଦୁର୍ଗୋତ୍ସବ କାଳେ କି ବଳିଦାନ ?

ଓଡ଼ିଶାକୁ ବହୁ ଉତ୍‌ଥାନ ପତନ ମଧ୍ୟରେ ଗତି କରିବାକୁ ହୋଇଛି । କେତେବେଳେ ସେ ବିପୁଳ ସାମ୍ରାଜ୍ୟ, ଅକଳନୀୟ ଧନ ସମ୍ପତ୍ତିର ଅଧିକାରୀ ହୋଇଛି, କେତେବେଳେ ଗଙ୍ଗା ଗୋଦାବରୀ ମଧ୍ୟରେ ସଙ୍କୁଚିତ ବା ତହିଁରୁ କ୍ଷୀଣତର ହୋଇଅଛି । ବୀର ରାଜା ଓ ସାହସୀ ସେନାପତିଙ୍କ ଉତ୍ସାହ, ଉଦ୍ୟମ, ସଙ୍ଗଠନ ଶକ୍ତି, କୂଟନୀତିକତା ଓ ଅସ୍ତ୍ରଶସ୍ତ୍ରର ଘନଘଟା ଉପରେ ଏହା ନିର୍ଭର କରିଅଛି । ଦୁର୍ବଳ ରାଜା ଉତ୍କଳୀୟ ଧର୍ମ ଓ ସଂସ୍କୃତିର ହୃତ୍‌ପିଣ୍ଡ ଜଗନ୍ନାଥଙ୍କୁ ମଧ୍ୟ ରକ୍ଷା କରିବାକୁ ସମର୍ଥ ହୋଇନାହିଁ, ଓଡ଼ିଆଙ୍କୁ ବହୁ ଲାଞ୍ଛନା ଭୋଗ କରିବାକୁ ହୋଇଛି । ବିଶ୍ୱାସଘାତକଙ୍କ କୁଟିଳ ଚକ୍ରାନ୍ତ ଓ ରାଜାଙ୍କ ସଂଗ୍ରାମ ସାଧନାର ଅଭାବ, ଯୁଗୋପଯୋଗୀ ଅସ୍ତ୍ରଶସ୍ତ୍ର ନିର୍ମାଣର ଅସାମର୍ଥ୍ୟରୁ ହୀନ ପରାଜୟ ବରଣ

କରିବାକୁ ହୋଇଛି । ଦେବମୂର୍ତ୍ତି ବିକଳାଙ୍ଗ ଓ ବହୁ କଳାପୂର୍ଣ୍ଣ ମନ୍ଦିର ବିଧ୍ୱସ୍ତ ହୋଇଅଛି ।

ଗୋଟିଏ ଦିଗରୁ ଦେଖିଲେ ଅସ୍ତ୍ରଶସ୍ତ୍ର ହିଁ ସଭ୍ୟତାର ନିୟାମକ । ଅସ୍ତ୍ର ବଳରେ ଗୋଟିଏ ବର୍ବର ଜାତି ଉନ୍ନତତର ସଭ୍ୟତାର ଅଧିକାରୀ ଅନ୍ୟ ଜାତି ଉପରେ ପ୍ରଭୁତ୍ୱ ବିସ୍ତାର କରିପାରେ । ଇତିହାସରେ ଏହାର ଦୃଷ୍ଟାନ୍ତ ରହିଅଛି । ପ୍ରସ୍ତର ଯୁଗର କୁଠାର ଓ ଏ ଯୁଗର ଉଡ଼୍‌ଯାନ ବୋମା—ଏ ମଧ୍ୟରେ ଗୁଳିଗୁଳାର ପ୍ରବର୍ତ୍ତନ ଫଳରେ ଯୁଦ୍ଧର ଆଭିମୁଖ୍ୟରେ ବୈପ୍ଳବିକ ପରିବର୍ତ୍ତନ, ଶାରୀରିକ ଶକ୍ତିର ମୂଲ୍ୟ ହ୍ରାସ, ବାଷ୍ପୀୟପୋତର ଗମନାଗମନ ଓ ବିରାଟ ସାମ୍ରାଜ୍ୟ ସ୍ଥାପନ ଜଗତର ସ୍ଥିତି ଓ ଗତିକୁ ବଦଳାଇ ଦେଇଛି, ଗୁଳି ଗୁଳାର ବିପୁଳ ପ୍ରବର୍ତ୍ତନ କାଳ ହିଁ ଉତ୍କଳୀୟ ସାମରିକ ସଙ୍ଗଠନର ଅସ୍ତକାଳ । ତେଣୁ କମାଣ, ବନ୍ଧୁକ ନିର୍ମାଣ ଓ ମାରଣ ଶକ୍ତିର ପ୍ରଚୁର ବିକାଶ ଲାଗି ଉତ୍କଳକୁ ଅବକାଶ ମିଳି ନାହିଁ । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଆ ପାଇକ ସୈନିକ ଗୁଳିଗୋଳା ସଙ୍ଗେ ଖଣ୍ଡା, ତରବାରୀ ବ୍ୟବହାର କରୁଅଛି, କମାଣ ସମକ୍ଷରେ ଦୁର୍ଗର କୌଣସି ମୂଲ୍ୟ ନ ରହିଲେ ମଧ୍ୟ ତାହାକୁ ହିଁ ଶେଷ ଅବଲମ୍ବନ କରିଅଛି । ଉପଯୁକ୍ତ ସଙ୍ଗଠନ, ଶିକ୍ଷା ଓ ଅସ୍ତ୍ରଶସ୍ତ୍ର ଅଭାବରୁ ବିପୁଳ ସଂଖ୍ୟକ ଓଡ଼ିଆବାହିନୀକୁ ଅଳ୍ପ କେତେକ ସୁଶିକ୍ଷିତ ଗୋରା ସୈନିକଙ୍କ ସମକ୍ଷରେ ପରାଜୟ ବରଣ କରିବାକୁ ପଡ଼ିଛି ।

ଶେଷ ପନ୍ଥା ହୋଇଛି ଗରିଲା ଯୁଦ୍ଧ । ବକ୍‌ସି ଜଗବନ୍ଧୁ ଓ ସୁରେନ୍ଦ୍ର ସାୟି ଏହି ଯୁଦ୍ଧରେ ପ୍ରବୀଣ ଥିଲେ ।

ଉତ୍କଳୀୟ ଯୁଦ୍ଧାସ୍ତ୍ର ଓ ସାମରିକ ଶିକ୍ଷାର କ୍ରମ ବିକାଶର ସ୍ପଷ୍ଟ ରୂପ ଦେଖିବାକୁ ମିଳେ ନାହିଁ । କାଞ୍ଚି ଯୁଦ୍ଧ ବେଳକୁ ଗୁଳିଗୋଳା ଭାରତକୁ ନ ଆସିଥିଲେ ମଧ୍ୟ ପୁରୁଷୋତ୍ତମ ଦାସଙ୍କ ଜଗନ୍ନାଥ ତାହା ବ୍ୟବହାର କରିଛନ୍ତି । ପୁରୁଷୋତ୍ତମଦାସ ଓ ବ୍ରଜନାଥ ପୌରାଣିକ ଯୁଦ୍ଧର ଆଦର୍ଶ ଗ୍ରହଣ କରିଛନ୍ତି । କିନ୍ତୁ ବ୍ରଜନାଥଙ୍କ ଯୁଦ୍ଧବର୍ଣ୍ଣନା ଅଧିକ ଆଧୁନିକ ବୋଧହୁଏ । ପ୍ରତ୍ୟକ୍ଷଦର୍ଶୀର ଏହା ଏକ ଜୀବନ୍ତ ବିବରଣୀ । ସୈନ୍ୟ ସଂସ୍ଥାପନା, କମାଣ ପ୍ରୟୋଗ କୌଶଳ ଓ ଯୁଦ୍ଧବିଜ୍ଞାନ ବିଷୟରେ କବିଙ୍କ ଜ୍ଞାନ ଅପୂର୍ବ । ସେ ଦିଗରେ ଏକା ଉତ୍କଳୀୟ ସାହିତ୍ୟରେ କାହିଁକି, ସମଗ୍ର ଭାରତୀୟ ସାହିତ୍ୟରେ ସେ ଏକକ ।

**ମହାଯାତ୍ରା—ରାଧାନାଥ**

ପୁରୁଷୋତ୍ତମ ବା ବ୍ରଜନାଥ ଦୈବାତ୍ 'କାଞ୍ଚିକାବେରୀ' ବା 'ସମର-ତରଙ୍ଗ' ଲେଖିଛନ୍ତି । ତା ତଳେ ଜାତୀୟଭାବର ଉନ୍ମାଦନା ବା ମହତ୍ କୀର୍ତ୍ତି-

ମଚେତନତା ନାହିଁ, ଗୌରବୋଜ୍ଜ୍ୱଳ ଗାଥାମାନଙ୍କୁ ଅବଲମ୍ବନ କରି କାବ୍ୟ ରଚନା କରିବାର ସ୍ୱତନ୍ତ୍ର ଯୋଜନା ଦେଖାଯାଏ ନାହିଁ । ବ୍ରଜନାଥ ଶୃଙ୍ଗାର ରସର ବହୁ କାବ୍ୟ ରଚନା କରିବା ସ୍ଥଳେ ଖଣ୍ଡିଏ ମାତ୍ର କ୍ଷୁଦ୍ର ସମର କାବ୍ୟ ଲେଖିଛନ୍ତି । କିନ୍ତୁ ରାଧାନାଥ ଅତୀତର ବୀରତ୍ୱ ଚିତ୍ରଣରେ ସଚେତନ କବି। ବୀରର ଯଶୋଗାନରେ ବାଲ୍ମୀକି, ବ୍ୟାସ ପ୍ରଭୃତିଙ୍କୁ ଛାଡ଼ିଦେଲେ ଅଧିକାଂଶ କବି କୁଣ୍ଠିତ ବା କୃପଣ । ବୀରରସର କାବ୍ୟ ରଚିତ। କରି ଜାତୀୟ ଜାଗରଣ ସଙ୍ଘଟନ କରେଇବାକୁ ହେବ, ରାଧାନାଥ ହୃଦୟଙ୍ଗମ କରିଛନ୍ତି । ତେଣୁ ପୌରୁଷ ଚିତ୍ରଣର କୌଣସି ସୁଯୋଗ ସେ ହରାଇ ନାହାନ୍ତି । କ୍ଷୁଦ୍ର ଗ୍ରାମମାନ ଅତୀତର ଅଦ୍ଭୁତ ଗୌରବରେ ଉଦ୍‌ଭାସିତ ହୋଇଅଛି । ନିଜ ଜନ୍ମସ୍ଥାନ ସୋରୋକୁ 'ଶୂରଙ୍କର ସ୍ଥଳୀ' ବୋଲି ସେ ଚିତ୍ରିତ କରିଛନ୍ତି ।

ରାଧାନାଥ-ଯୁଗ ଦେଶାତ୍ମବୋଧର ଯୁଗ । ନିଜ ଦେଶ ଓ ପ୍ରଦେଶର ଅତୀତ ଗୌରବକୁ ଫିଟେଇବାରେ ଏ ଯୁଗର ବୈଶିଷ୍ଟ୍ୟ ନିହିତ । ରାଧାନାଥ ଭାରତକୁ 'ଧରଣୀର କଳ୍ପଲତା' କହିବା ସଙ୍ଗେ ସଙ୍ଗେ ଉତ୍କଳକୁ ତା ମଧ୍ୟରେ ପ୍ରାକୃତିକ ଦୃଶ୍ୟ, ଧର୍ମ ଓ ବୀରତ୍ୱ ଦୃଷ୍ଟିରୁ ସର୍ବଶ୍ରେଷ୍ଠ ରୂପେ ପ୍ରତିପାଦିତ କରିଛନ୍ତି । ତାଙ୍କ ବୀରରସାତ୍ମକ ରଚନା ଗଭୀର ଦେଶାତ୍ମବୋଧର ଭିତ୍ତି ଉପରେ ହିଁ ପ୍ରତିଷ୍ଠିତ ।

ରୀତି ଯୁଗରେ ପୁରୁଷର ଧ୍ୟେୟ। ଶୃଙ୍ଗାରରଙ୍ଗିଣୀ ନାରୀ । ସୁଖର ଯେପରି ଏହା ଉତ୍କୃଷ୍ଟତର ବିଭବ ଆଉ ନାହିଁ । ସାଧନା ବା ସଂଗ୍ରାମ, ତ୍ୟାଗ ବା ଆତ୍ମବଳିଦାନର ଉଜ୍ଜ୍ୱଳ ଐତିହ୍ୟ କାବ୍ୟ ଉପାଦାନ ଦୃଷ୍ଟିରୁ ନିତାନ୍ତ ଗୌଣ ବିବେଚିତ ହୋଇଅଛି । ରାଧାନାଥ ଆଂଶିକଭାବରେ ହେଉ ପଛେ ଏହି ମନୋବୃତ୍ତି ବିରୁଦ୍ଧରେ ବିପ୍ଳବ କରିଛନ୍ତି । ପୌରୁଷସମ୍ପନ୍ନ ବ୍ୟକ୍ତିମାନେ ହୋଇଛନ୍ତି ତାଙ୍କ କାବ୍ୟର ନାୟକ—ସେ ଶ୍ରୀରଙ୍ଗ ବା ଯଯାତି, ପୁରୁଷୋତ୍ତମ ବା ଯୁଧିଷ୍ଠିର, ଯଦିବା ଶ୍ରୀରଙ୍ଗଙ୍କୁ ଛାଡ଼ିଦେଲେ ଅନ୍ୟ ଚରିତ୍ରମାନଙ୍କ ଚିତ୍ରଣରେ ଯଥେଷ୍ଟ କୃତିତ୍ୱ ଦର୍ଶାଇ ନାହାନ୍ତି ।

ରାଧାନାଥଙ୍କ କାବ୍ୟରେ ବୀରତ୍ୱର ନିମ୍ନ କେତୋଟି ବିଭାବ ଦେଖିବାକୁ ମିଳେ—

(କ) ଉଦ୍‌ବୋଧନ । ଅମର୍ଷୀବାଣୀ ଓ ଶିବାଜୀଙ୍କ ଉତ୍ସାହ ବାଣୀରେ ଏହା ରୂପାୟିତ ।

ରାଧାନାଥ ଏଥିରେ ହୋଇଛନ୍ତି ଚାରଣ, ରଣକ୍ଷେତ୍ରରେ ସ୍ୱୟଂ ଯେପରିକି ନେପୋଲିଅନ୍ । ସୈନ୍ୟମାନଙ୍କ ମଧ୍ୟରେ ବିପୁଳ ଉତ୍ସାହ ଓ ରଣୋନ୍ମାଦନା ସୃଷ୍ଟି

କରିବା ତାଙ୍କର ଉଦ୍ଦେଶ୍ୟ । ପ୍ରକୃତରେ ଏଥିରୁ, କାବ୍ୟ ହୃଦୟକୁ ଏହା ବୀର ଭାବରେ ରସାଣିତ କରେ । ଦାସତ୍ୱରୁ ବଳି ଦୁଃଖ ନାହିଁ, ଜୀବନ ଅସ୍ଥାୟୀ, ରଣକ୍ଷେତ୍ରରେ ମୃତ୍ୟୁ ହେଲେ ସ୍ୱର୍ଗବାସ, ତେଣୁ ପରାଧୀନ ହୋଇ ଲାଞ୍ଛନା ଭୋଗକରିବା ଅପେକ୍ଷା ଯୁଦ୍ଧ କ୍ଷେତ୍ରରେ ପ୍ରାଣବଳିଦାନ ଶ୍ରେୟସ୍କର । 'ମନ୍ତ୍ରର ସାଧନ ଅବା ଶରୀର ପାତନ', ବୀରର ଏହି ଆଦର୍ଶକୁ କବି ପ୍ରତିପାଦିତ କରିଛନ୍ତି ।

(ଖ) ଯୁଦ୍ଧର ଆୟୋଜନ ବା ପନ୍ଥୁଆର । 'କାଞ୍ଚିକେଶ୍ୱରୀ'ରେ ଚୋଡ଼ଗଙ୍ଗଙ୍କ ସ୍କନ୍ଧାବାର, କାଠଯୋଡ଼ି ତୀରରେ ସୁବର୍ଣ୍ଣକେଶରୀଙ୍କ ଶିବିର, ତମ୍ବୁ, ଉଡ୍ଡୀନ ପତାକା, ବାଦ୍ୟନାଦ, ସୈନ୍ୟମାନଙ୍କ ଲାଠିଖେଳ ଓ ମଲ୍ଲଯୁଦ୍ଧ, ଆଳି, କନିକା, କୁଜଙ୍ଗ, ଅନ୍ତରଙ୍ଗ, ଅସୁରେଶ୍ୱର, ଚଉଦ୍ୱାର, ବିରଜାମଣ୍ଡଳ, ଭଦ୍ରକ, ସୋର, ନୀଳଗିରି, କୋଠରଙ୍ଗ, ପାରିକୁଦ, ଦାଣ୍ଡିମାଳ, ଖଲିକୋଟ ପ୍ରଭୃତି ରାଜାମାନଙ୍କର ଯୁଦ୍ଧରେ ଯୋଗଦାନ ବର୍ଣ୍ଣିତ ହୋଇଅଛି । ବଡ଼ାନାସୀର ଦୁର୍ଗଦ୍ୱାର ରୁଦ୍ଧ ହୋଇଅଛି । ଉତ୍କଳୀୟ ସେନା ଚୋଡ଼ଗଙ୍ଗବାହିନୀର ସମ୍ମୁଖୀନ ହୋଇ ପାରିନାହିଁ । ସେହିପରି 'ମହାଯାତ୍ରା'ରେ ଉଭୟେ ଯୁଦ୍ଧରେ ରାଜାମାନଙ୍କ ଆଡ଼ମ୍ବର ସହକାରେ ଯୋଗଦାନ କବି ଚିତ୍ରିତ କରିଛନ୍ତି । କେଉଁ ବାହିନୀ କେଉଁ ବେଶ ଭୂଷଣ ପରିଧାନ କରିଛନ୍ତି, କେଉଁ କେଉଁ ଅସ୍ତ୍ରଧାରଣ କରିଛନ୍ତି, ଅଶ୍ୱାରୋହୀ, ଗଜାରୋହୀ କିମ୍ବା ପଦାତିକ, କେଉଁପ୍ରକାର ରଣରେ ବିଶେଷ ପାରଙ୍ଗମ, ତାହା ବର୍ଣ୍ଣିତ ହୋଇଅଛି ।

(ଗ) ଯୁଦ୍ଧ; 'ବେଣୀସଂହାର'ର ବର୍ଣ୍ଣନା ମାର୍ଜିତ ଓ ସଂଯତ । ଶାରଳା ଦାସଙ୍କ ଅପେକ୍ଷା କବି ପୌରାଣିକ ରଣ ବର୍ଣ୍ଣନାରେ ଅଧିକ କୃତିତ୍ୱ ଦେଖାଇ ପାରିନାହାନ୍ତି । କିନ୍ତୁ ଭୀମଙ୍କ ମୁଖରେ ବୀରୋଚିତ ଅଭିମାନ, ଦୃଢ଼ ଆତ୍ମପ୍ରତ୍ୟୟ, ରଣଆହ୍ୱାନ ଜନିତ ବାକ୍ଚାତୁରୀ ଶୋଭା ପାଇଛି । ବିଷ୍ଣୁଶକ୍ତିରେ ବଳୀୟାନ୍ ହୋଇ ଭୀମ ଦୁଃଶାସନକୁ ବିନାଶ କରିବାକୁ ସମର୍ଥ ହୋଇଅଛି । ମାନବିକ ପୌରୁଷ ଅପେକ୍ଷା ଅଲୌକିକ ଶକ୍ତିକୁ ଏଥିରେ ଉଚ୍ଚତର ସ୍ଥାନ ଦିଆଯାଇଛି ।

ପତିତ ଶତ୍ରୁର ଅପକର୍ମ ସ୍ମରଣ ଓ ତା ପ୍ରତି ବାକ୍‌ବାଣ ପ୍ରୟୋଗ ବା ବ୍ୟଙ୍ଗ 'ବେଣୀସଂହାର'ର ଏକ ବିଶେଷତ୍ୱ—

'କୁରୁ ସଭାତଳେ ବସ୍ତ୍ର କଲା ଯେ ହରଣ
ଚର୍ହ୍ନି ବିଟି ଏହିଟିକ ସେହି ଦୁଃଶାସନ
ଭଲ କରି ଦେଖ ମୋର ଭ୍ରାତାଙ୍କ ବଦନ
ଉପକାରୀ ପୁରୁଷ ଯେ ଅଟନ୍ତି ଏ ଜନ ।'

'ମହାଯାତ୍ରା' କବିଙ୍କର ପ୍ରକୃତ ସମର କାବ୍ୟ । ଏହାର ପ୍ରଥମାଂଶ ଯୁଦ୍ଧ ବିରତି, ସଂସାରର ନଶ୍ୱରତା, ବିଜେତାଙ୍କର ତୀବ୍ର ବୈରାଗ୍ୟ ଓ ଶୋକୋଚ୍ଛ୍ୱାସ ବର୍ଣ୍ଣନାରେ ଯେପରି ପୂର୍ଣ୍ଣ, ଶେଷ ଦୁଇ ସର୍ଗ ସେହିପରି ବୀରଙ୍କର ହୁଙ୍କାର, ଅଶ୍ୱହ୍ରେଷା, ବାରଣ ବୃଂହିତ ଓ ଅସ୍ତ୍ର ଝନତ୍କାରରେ ଝଙ୍କୃତ । ଏହି ଯୁଦ୍ଧ ବର୍ଣ୍ଣନାରେ କବିଙ୍କର ପ୍ରସ୍ତୁତି ବିପୁଳ । ପ୍ରାଚ୍ୟ ପାଶ୍ଚାତ୍ୟ ବହୁ କାବ୍ୟ ମହାକାବ୍ୟ ସେ ଆଲୋଡ଼ନ କରିଛନ୍ତି ଓ ଭାରତୀୟ ଇତିହାସର ସେଇ ମହାନ୍ ଅଭ୍ୟୁଦୟ ଓ କ୍ଷୀଣ ଅସ୍ତମାନ ଅବସ୍ଥାର ଜୀବନ୍ତ ଆଲେଖ୍ୟ ପ୍ରଦାନ କରିବାକୁ ସମର୍ଥ ହୋଇଛନ୍ତି ।

୧୧୯୩ରେ ଦ୍ୱିତୀୟ ତରେଇ ଯୁଦ୍ଧ ହୋଇଥିଲା; ପୃଥ୍ୱୀରାଜଙ୍କ ସପକ୍ଷରେ ବଙ୍ଗ, ଉତ୍କଳ, ଆଜମିର, ଗୁଜରାଟ, ସିନ୍ଧୁ, ରାଜସ୍ଥାନ, ଶୂରସେନ, ମାଳବ ପ୍ରଭୃତିର ରାଜାମାନେ ଯୋଗ ଦେଇଥିଲେ । ଜୟଚନ୍ଦ୍ର ଓ ତାଙ୍କର କେତେକ ମିତ୍ରରାଜା ଆକ୍ରମଣକାରୀ ସପକ୍ଷରେ ଥିଲେ । ପୃଥ୍ୱୀରାଜଙ୍କ ସେନାପତି ଥିଲେ, ଆଜମିରପତି ଅମର୍ଷୀ । ଖୁରୁ ଓ ନରାଣ ହୃଦୟରେ ତାଙ୍କ ଅଗ୍ନି-ଗର୍ଭବାଣୀ ରଣୋନ୍ମାଦ ସୃଷ୍ଟି କରିଥିଲା ଓ ବୀର ବିକ୍ରମରେ ଆର୍ଯ୍ୟବାହିନୀ ଯୁଦ୍ଧ କରି ବିପକ୍ଷକୁ ପରାସ୍ତ କରିବାକୁ ସମର୍ଥ ହୋଇଥିଲେ ।

ସମର ପ୍ରାଙ୍ଗଣରେ ଯୁଗପତ୍ ହର୍ଷ ବିଷାଦର ଚିତ୍ର ଅଙ୍କନ ଅଭିନବ । ଏ ମୁହୂର୍ତ୍ତର ବିଜୟୀକୁ ପରମୁହୂର୍ତ୍ତରେ ପରାଜୟ ଓ ମୃତ୍ୟୁ ବରଣ କରିବାକୁ ହୋଇଛି । ଶିଙ୍ଗା, ଦାମାମା, ଦୁନ୍ଦୁଭି ପ୍ରଭୃତି ରଣବାଦ୍ୟର ଗର୍ଜନ ମଧ୍ୟରେ ଘୋର ରଣୋନ୍ମାଦ, ନିଷ୍ଠୁର ହନନ, କବନ୍ଧର ନୃତ୍ୟ ଓ ରକ୍ତ ମେଦ ଓ ଧୂଳିର ବିଭତ୍ସ ଘାଣ୍ଟିଅର ଚିତ୍ର ଅତି ଭୟଙ୍କର ହୋଇଅଛି ।

ବୀରମାନଙ୍କ ବାକ୍‌ଚାତୁରୀ ନିତାନ୍ତ ଅସଙ୍ଗତ ଓ ଅସ୍ୱାଭାବିକ ବୋଲି କବି ମହାଯାତ୍ରାରେ ପରିହାର କରିଛନ୍ତି । ଯୁଦ୍ଧର ଗୁରୁଗାମ୍ଭୀର୍ଯ୍ୟ ଆମୂଳାନ୍ତ ସଂରକ୍ଷିତ ହୋଇଅଛି ।

ଯୁଦ୍ଧଯାତ୍ରା କାଳରେ ଜନନୀ, ଭଗିନୀ ଓ ପ୍ରଣୟିନୀ ପ୍ରଭୃତି ଆତ୍ମୀୟାଙ୍କ ମନର ଭାବ ଅଙ୍କନ ପ୍ରୟାସ କବିଙ୍କର ଏକ ନୂତନ ବିଭବ । ସ୍ୱଦେଶ ନିମିତ୍ତ ସଂଗ୍ରାମ କରିବାଲାଗି ବୀର ଜନନୀ ପୁତ୍ରକୁ ବିଦାୟ ଦେଉଛି । ଅଶ୍ରୁବର୍ଷଣ ଅଶୁଭ; କିନ୍ତୁ ଜନନୀ ବା ପ୍ରଣୟିନୀ ତାହା ରୋଧ କରି ପାରନାହିଁ । କଠୋର କର୍ତ୍ତବ୍ୟ ଓ ନିବିଡ଼ ସ୍ନେହ ପ୍ରୀତି ମଧ୍ୟରେ ଅନ୍ତର୍ଗତ ସଂଘର୍ଷ ସୃଷ୍ଟି କରିବାକୁ କବି କ୍ଷମ ହୋଇଛନ୍ତି ।

'ବିଜୟୀ ବାହୁଡ଼ା ଯାଚ ରଣ ଲକ୍ଷ୍ମୀ ପଦେ
ବରଷିଲେ ଲାଜାଞ୍ଜଳି କାହିଁ ବରାଙ୍ଗନା
ଦୂରୁ ଦେଖି ମୁହୁର୍ମୁହୁ ଶିରେ କର ହାଣି
କାନ୍ଦଲ୍ କରୁଣେ ଦୋଷି ଦାରୁଣ ବନ୍ଧୁକ ।
ଅତୃପ୍ତ ନୟନେ କାହିଁ ଉଭା ପ୍ରଣୟିନୀ
ବ୍ୟାବର୍ତ୍ତିତ ପ୍ରିୟ ମୁଖ ଦେଖିବାର ଆଶେ
ଥରେ ହେଲେ ଆମରଣ ସ୍ମୃତିର ସଖାଳି ।'

—*—

# କବିତା ଓ ନୈତିକତା

କବି ହୃଦୟର ଅନନ୍ତ ଆନନ୍ଦ ଅନୁଭୂତିର ଉତ୍ସ କବିତାରେ ମୂର୍ତ୍ତି ଧାରଣ କରେ । କବି ଅରୂପକୁ ରୂପ ଦାନ କରେ, ଅବ୍ୟକ୍ତକୁ ବ୍ୟକ୍ତ କରେ, ଅସୀମ ଅନୁଭୂତିକୁ ଛନ୍ଦୋବଦ୍ଧ କରେ, ନିରର୍ଥକୁ ଅର୍ଥପୂର୍ଣ୍ଣ ଓ ନିର୍ଜୀବକୁ ସଜୀବ କରେ । ନବ ନିର୍ଗତା ନିର୍ଝରିଣୀ ଯେପରି ଗଦ୍‌ଗଦ ଉଚ୍ଛ୍ୱାସରେ ନିଜର ଗତିପଥ ନିର୍ମାଣ କରି କଳକଳ ନିନାଦରେ ପ୍ରବାହିତ ହୁଏ, କବିର କବିତା ମଧ୍ୟ ଠିକ୍ ସେହିପରି ସ୍ୱାଭାବିକ ଭାବରେ ଛନ୍ଦୋବୈଚିତ୍ର୍ୟ ଭାଷା ପରିପାଟ୍ୟ, ଶବ୍ଦଶିଳ୍ପ ଓ ଉପଯୋଗୀ ଅଳଙ୍କାର ବିମଣ୍ଡିତ ହୋଇ ଆବିର୍ଭୂତ ହୁଏ । ସଚେତନ ଭାବରେ କବି ସାହିତ୍ୟ ବିପଣିରେ ନିଜ କନ୍ୟା କବିତା ଲାଗି ପଟ୍ଟବସ୍ତ୍ର ବା ଅଳଙ୍କାର ଖୋଜିବୁଲେ ନାହିଁ । କବିତା ସମସ୍ତ ନିସର୍ଗ ସୁନ୍ଦର ବେଶଭୂଷାରେ ବିଭୂଷିତ ହୋଇ ଆତ୍ମପ୍ରକାଶ କରେ ।

କେଉଁ ଅନନ୍ତ ଶକ୍ତିର ପ୍ରେରଣାରେ ପ୍ରଣୋଦିତ ହୋଇ, କେଉଁ ଯାଦୁକରୀ ମାୟାମନ୍ତ୍ରରେ ବିମୋହିତ ହୋଇ କବି କବିତା ରଚନା କରେ ସେ ନିଜେ ବୁଝିବାକୁ ଅକ୍ଷମ । ଆତ୍ମବିସ୍ମୃତ କବି ଯେତେବେଳେ ପ୍ରକୃତିସ୍ଥ ହୋଇ ସ୍ୱରଚିତ କବିତା ପାଠ କରେ, ସେତେବେଳେ ସେ କବିତା ପଛରେ ଅଚିନ୍ତନୀୟ ବିରାଟ ଶକ୍ତିର ସତ୍ତା, ପ୍ରଭାବ ଓ ପ୍ରେରଣା ଅନୁଭବ କରି ନିଜେ ତାର ରଚୟିତା ବୋଲି ପ୍ରକାଶ କରିବାକୁ ସଂକୋଚ ବୋଧ କରେ । ସେ ଅନୁଭବ କରେ—ସତେ ଯେପରି କିଏ ତାର ହାତଧରି ଲେଖାଇ ଦେଇଛି; ସେ ନିମିତ୍ତ ମାତ୍ର ।

ସବୁ କବିତାର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଆଦର୍ଶ ନାହିଁ କିମ୍ବା କୌଣସି ପ୍ରୟୋଜନ ମେଣ୍ଟେଇବା ଲାଗି କବିତା ରଚିତ ହୁଏ ନାହିଁ । କବିତା ରଚନାର କୌଣସି ଚିରନ୍ତନ ନିୟମ ମଧ୍ୟ ପୂର୍ବାଚାର୍ଯ୍ୟମାନେ ଲିପିବଦ୍ଧ କରି ଯାଇନାହାନ୍ତି । କେବଳ କେତେକ ନିୟମ ପାଳନ କଲେ ଯଦି ସୁକବିତା ରଚିତ ହୋଇପାରନ୍ତା, ତେବେ ଯେ କେହି ଲୋକ କବିର ଗୌରବମୟ ଆସନ ମାଡ଼ି ବସନ୍ତା । ଆମ ସାହିତ୍ୟରେ ପ୍ରକୃତ କବିତାର ଶୋଚନୀୟ ଅଭାବ ଆଉ ଦୃଷ୍ଟିଗୋଚର ହୁଅନ୍ତା ନାହିଁ । ପୁଣି ସକଳ କବିତାର ଯଦି ଗୋଟିଏ ନିର୍ଦ୍ଦିଷ୍ଟ ଆଦର୍ଶ ଥାନ୍ତା, ତାର

ଅନୁବର୍ତ୍ତୀ ହୋଇ ସମସ୍ତେ କବିତା ଲେଖିଲେ ଏବଂ ଯାହା ଲେଖନ୍ତେ ତାହା ଚିର ଆଦରଣୀୟ ହୁଅନ୍ତା; କିନ୍ତୁ ମନୁ, ପରାଶର, ପ୍ଲେଟୋ ବା ଆରିଷ୍ଟଟଲ ଭବିଷ୍ୟତ ବଂଶଧରଙ୍କ ସୁଖସୁବିଧା ଲାଗି ବହୁ ନିୟମ ପ୍ରଣୟନ କରିଥିଲେହେଁ କବିତାକୁ ସ୍ବତନ୍ତ୍ର ପରିସରରୁ ବାଦ୍ ଦେଇଛନ୍ତି । ଅଳଙ୍କାରଶାସ୍ତ୍ରର ଧାରା ଅନୁସରଣ କରି ଅକବି କବି ହୋଇ ପାରେ ନାହିଁ, ନିରଙ୍କୁଶ କବି ସଂଯତ ଓ ଶୃଙ୍ଖଳିତ ହୁଏ ମାତ୍ର । କବିତ୍ୱ ନ ଥାଇ ବୋଧି ବା ଅଧିବସାୟ ବଳରେ କେହି କେହି କବି ହୋଇ-ପାରନ୍ତି, ଗଦ୍ୟ ଚିନ୍ତାକୁ ପଦ୍ୟ ରୂପରେ ପ୍ରକାଶ କରି କବିଯଶପ୍ରାର୍ଥୀ ମନ୍ଦ କବି ପରି ନିନ୍ଦିତ ହୋଇଥାନ୍ତି । ବାହ୍ୟରୂପ ଓ ଅଳଙ୍କାରର ଚାକଚକ୍ୟ ଥିଲେ ସୁଦ୍ଧା କାଗଜଫୁଲ ପରି କାବ୍ୟ ନୀରସ ବୋଧହୁଏ । ଫକୀରମୋହନ ଓ ମୃତ୍ୟୁଞ୍ଜୟଙ୍କ ଅଧିକାଂଶ କବିତା ପଦ୍ୟାୟିତ ମାତ୍ର, ଗତାନୁଗତିକ ରୀତି, ପ୍ରବାହ ମନ୍ଥର, ଛନ୍ଦ ସ୍ପନ୍ଦନହୀନ ।

କାବ୍ୟିକ ସତ୍ୟ ଓ ବୈଜ୍ଞାନିକ ସତ୍ୟ ଏକ ନୁହେ । ତେଣୁ ବୈଜ୍ଞାନିକ ରୀତିରେ କାବ୍ୟର ପରୀକ୍ଷାନିରୀକ୍ଷା କରିବା ନିର୍ବୋଧତା । କବିତା ରସ କେବଳ କେତେକ ପଦାର୍ଥସମଷ୍ଟିରୁ ଉଦ୍‌ଭୂତ ହୁଏ ନାହିଁ । ଶରୀରରେ ଯେପରି ଲାବଣ୍ୟ, କବିତାରେ ସେହିପରି ରସ, ବିଶେଷରେ ନିର୍ବିଶେଷ ରୂପରେ ଥାଏ । ଖଣ୍ଡ ମଧ୍ୟରେ ଅଖଣ୍ଡ ତାର ସ୍ୱରୂପ । ବୈଜ୍ଞାନିକ, ଐତିହାସିକ ଓ ଭୌଗୋଳିକ ବୃତ୍ତାନ୍ତସବୁ ପଦ୍ୟରେ ରୂପାୟିତ କଲେ କବିତା ହୁଏନାହିଁ । ପ୍ରକୃତ କବିତା ଅନନୁଭୂତ ସୌନ୍ଦର୍ଯ୍ୟରସ ସୃଷ୍ଟି କରେ, ସେ ରସପାନରେ କବି ଓ ପାଠକ ଉଭୟେ ମୁଗ୍ଧ ହୁଅନ୍ତି । ଚିରନ୍ତନ ସୌନ୍ଦର୍ଯ୍ୟାନନ୍ଦ ସୃଷ୍ଟିକଳାର ମୁଖ୍ୟତମ ଉଦ୍ଦେଶ୍ୟ ।

ନୀତିଶାସ୍ତ୍ରଜ୍ଞ ସମାଲୋଚକ ଅନେକ ସମୟରେ କବିର କବିତାକୁ ନୀତିର ନିକିତିରେ ତଉଲନ୍ତି । କିନ୍ତୁ କବିତା ନୀତି କିମ୍ବା ବିଜ୍ଞାନ କୌଣସି ଜଗତର ଅନ୍ତର୍ଭୁକ୍ତ ନୁହେ । ଏହା ନିଜପାଇଁ ଏକ ସ୍ୱତନ୍ତ୍ର ସଂସାର ସୃଷ୍ଟି କରେ । ସେହି ସଂସାର କଳ୍ପନାମୟ, ସୌନ୍ଦର୍ଯ୍ୟମୟ ଓ ଚିରାନନ୍ଦମୟ । ସୌନ୍ଦର୍ଯ୍ୟାନନ୍ଦ ଓ ରସାନୁଭୂତିର ମନୋଜ୍ଞ ଅଭିବ୍ୟକ୍ତି କବିତାରେ ହୋଇଥାଏ । ନୀତିଶିକ୍ଷା ବାହ୍ୟିକ, ରସ ଅତି ଅନ୍ତରଙ୍ଗ । ତେଣୁ ରସର ମାନଦଣ୍ଡରେ କବିତାର ଉତ୍କର୍ଷ ବା ଅପକର୍ଷ ନିରୂପିତ ହୋଇଥାଏ ।

କବିତାରେ ନୀତି ଉପେକ୍ଷଣୀୟ ନ ହେଲେ ସୁଦ୍ଧା ଅବହେଳିତ । କବିତା ଶୁଷ୍କ ନୀତିବାକ୍ୟର ବହୁ ଉଚ୍ଚସ୍ତରରେ ଅବସ୍ଥିତ । କେବଳ ନୈତିକ ଶିକ୍ଷାଦାନ ଉଦ୍ଦେଶ୍ୟ ହୋଇ ରହିଲେ କବିତା କକ୍ଷଚ୍ୟୁତ ହୁଏ । ତାର ଆଦର୍ଶ ଖର୍ବ ହୁଏ । ବେଦ ମାନବସମାଜର ଆଦିଗ୍ରନ୍ଥ ହୋଇପାରେ, ଧର୍ମ, ଦର୍ଶନ, ଭାଷାତତ୍ତ୍ୱ ଦୃଷ୍ଟିରୁ

ଏହାର ଯଥେଷ୍ଟ ମହତ୍ତ୍ୱ ଥାଇପାରେ । କିନ୍ତୁ ଏହାର ଅଧିକାଂଶ କାବ୍ୟ ନୁହେ । ଉପନିଷଦ୍ ଉନ୍ନତ ଚିନ୍ତାରେ ଗରିଷ୍ଠସ୍ଥାନ୍, ମାନବଜାତିର ଆଲୋକବର୍ତ୍ତିକା ହୋଇପାରେ, କିନ୍ତୁ ଏହା ମଧ୍ୟ କାବ୍ୟ ନୁହେଁ । ସେହିପରି ପୁରାଣ ବହୁ କାହାଣୀ, ନୀତି ଉପଦେଶରେ ପରିପୂର୍ଣ୍ଣ । କିନ୍ତୁ ଏହା କାବ୍ୟପଦବାଚ୍ୟ ନୁହେଁ । ଭଗବତ୍-ଗୀତା ଗ୍ରନ୍ଥ ହିସାବରେ ପୃଥିବୀରେ ସର୍ବଶ୍ରେଷ୍ଠ, ଚିନ୍ତାର ଅମୂଲ୍ୟ ରତ୍ନାକର, ଜ୍ଞାନର ବାରିଧି । କିନ୍ତୁ କାବ୍ୟାଦର୍ଶ ଦୃଷ୍ଟିରେ 'ମେଘଦୂତ' ଆଗରେ ଏହା ନିଷ୍ପ୍ରଭ ।

କବିତା କ୍ଷୁଦ୍ର ଆନନ୍ଦ ବା କ୍ଷଣିକ ତୃପ୍ତି ଦିଏ ନାହିଁ । ଆନନ୍ଦ ମଧ୍ୟ ଅନେକ ସ୍ତରର ହୋଇପାରେ । ମଦ୍ୟପ ମଦ୍ୟ ପାନକରି ପରମ ତୋଷ ଲଭ କରେ । ଅସଭ୍ୟ, ବର୍ବର ଲୋକେ ସାଉଣ୍ଡ ରସର ସଙ୍ଗୀତ ଶୁଣିବାକୁ ଭଲ ପାଇ-ପାରନ୍ତି, ପାଗଳ ଆନନ୍ଦରେ ଆତ୍ମହରା ହୋଇ ନୃତ୍ୟ କରେ, ଲୋଭୀ ଆକଣ୍ଠ ଭୋଜନରେ ପରିତୃପ୍ତି ଲଭ କରେ, କୃପଣ ମଧୁମକ୍ଷି ପରି କେବଳ ଧନ ସଞ୍ଚିବାକୁ ସୁଖ ପାଏ । କବିର ଆନନ୍ଦ ଏହି ସ୍ତରର ନୁହେଁ । କବି ନିତ୍ୟନୈମିତ୍ତିକ ଚଳଣିରେ ସାଧାରଣ । ଚିନ୍ତା ଓ ରସାନୁଭୂତିରେ ଅସାଧାରଣ । ସ୍ୱାର୍ଥ, ମୋହ, ହିଂସା, ସାମ୍ପ୍ରଦାୟିକତା ପ୍ରଭୃତି କ୍ଷୁଦ୍ର ଭାବ ଦ୍ୱାରା ତାର ଅମୃତମୟ ରାଜ୍ୟ ପଙ୍କିଳ ହୁଏ ନାହିଁ । କବିର ଶରୀର କ୍ଷଣଭଙ୍ଗୁର; କିନ୍ତୁ ତାର ଭାବରେ ଭଙ୍ଗୁରତା ନାହିଁ । ସେ ସ୍ଥାୟୀ ଆନନ୍ଦ ଦାନ କରେ । କବି ସସୀମ; କିନ୍ତୁ ତାର ଆନନ୍ଦ ଅସୀମ । କ୍ଷୁଦ୍ର-କୁଟୀରରେ ତାର ଜନ୍ମ, କିନ୍ତୁ ଅନନ୍ତ ଆକାଶକୁ ତାହା ବିସ୍ତୃତ । ଭୌତିକ ଆନନ୍ଦ ପରି ଉପଭୋଗରେ ତାର କ୍ଷୟ ନାହିଁ; ନୂତନ ବସନ, ଭୂଷଣ ଛିନ୍ନ ହୁଏ । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଜୀର୍ଣ୍ଣ ହୁଏ; ମାତ୍ର କାବ୍ୟରସ ଚିର ସୁସ୍ୱାଦୁ । କାବ୍ୟରୂପ ଚିରରମଣୀୟ, ପ୍ରକୃତ କାବ୍ୟ ଚିରମଙ୍ଗଳମୟ ।

ନୈତିକ ସୀମାରେ ଆବଦ୍ଧ କଲେ କାବ୍ୟ ପଙ୍କିଳ ସରୋବର ମାତ୍ର ହୋଇଯାଏ, ସରିତ ପରି ସ୍ୱାଧୀନ ଭାବରେ ପ୍ରବାହିତ ହୋଇପାରେ ନାହିଁ । ଜୀବନ ସହିତ କବିତାର ସମ୍ପର୍କ ଘନିଷ୍ଠ । ହାମ୍‌ଲେଟ କିମ୍ବା ଶକୁନ୍ତଳାରେ କେବଳ ସ୍ୱପ୍ନ ନାହିଁ, ଜୀବନପ୍ରାଚୁର୍ଯ୍ୟରେ ଏହା ଋଦ୍ଧିମନ୍ତ । ସେ ଜୀବନ ଏବେ ବାହାରେ ନାହିଁ । ଆମ ସ୍ମୃତିରେ ତାର ଲୀଳା; ଶକୁନ୍ତଳା ପାପ କଲା କି ପୁଣ୍ୟ କଲା, ବିଚାର କରିବାଲାଗି ଆମ ମନ ବିଚାରକର ଆସନରେ ବସେ ନାହିଁ । ସେ ପ୍ରଶ୍ନ ରସୋପ-ଲବ୍‌ଧିରେ ଅବାନ୍ତର । ଆମ ପ୍ରେମିକ ଚିତ୍ତରେ ଶକୁନ୍ତଳାର ସ୍ଥାୟୀ ପ୍ରତିଷ୍ଠା । ସେ ଅତିଥି ସତ୍କାରରେ କେତେ ତ୍ରୁଟି କଲା, ଆଶ୍ରମ ଅପବିତ୍ର କଲା କି ନାହିଁ, ଆମେ ଖୋଜି ବସୁନାହିଁ । ପ୍ରେମିକା ଶକୁନ୍ତଳା ଲାଗି ଆମ ଅନ୍ତର କାରୁଣ୍ୟରେ ଭରି ହୋଇ-ଯାଏ, ଯଦିବା ଦୁର୍ବାସାଙ୍କ ଆଶ୍ରମ ଆଦର୍ଶଚିନ୍ତା ଓ ଅଭିଶାପ ସଙ୍ଗତ ।

କାବ୍ୟରଚନାରେ କବିର ଆନନ୍ଦ । ଦେବାରେ ତାର ସାର୍ଥକତା ଓ ଅଭିବୃଦ୍ଧି । କେବଳ ଯଶପ୍ରାପ୍ତି ଲାଗି ସେ କବିତା ରଚନା କରେ ନାହିଁ । ବିନା କାରଣରେ ହସିବାରେ ଶିଶୁର ଯେପରି ଆନନ୍ଦ, କବିତାରଚନାରେ କବିର ସେହିପରି ଆନନ୍ଦ । ଏ ଆନନ୍ଦଟିକି ନ ଥିଲେ, ଦୁଃଖାଗ୍ନିରେ ବିଦଗ୍ଧ ହୋଇ, ବହୁ ବାଧାବିଘ୍ନ ଓ ତାଡ଼ନାରେ ଉତ୍ପୀଡ଼ିତ ହୋଇ, ଦାରିଦ୍ର୍ୟ ଓ ନୈରାଶ୍ୟରେ ନିକ୍ଷେପିତ ହୋଇ ସେ କାହିଁକି କବିତା ରଚନା କରନ୍ତା ? ଅବସ୍ଥା ବା ପରିସ୍ଥିତି ପ୍ରକୃତ ପ୍ରତିଭାର ଜ୍ୟୋତି ମ୍ଳାନ କରିପାରେ ନାହିଁ । ସେ ଘୋର ଦୁଃଖରେ ଥାଇ ବି ଦାନ କରେ ଚିର ଆନନ୍ଦ, ଜୀବନରୁ ଯାହା ପାଇଥାଏ, ଶତଗୁଣରେ ଶୋଧ କରିଦିଏ । ଜୀବନର ଶିଳ୍ପୀ ସେ । ସେ ନୀତି, ଅନୀତି ବାଛି ବସେ ନାହିଁ, ଜୀବନକୁ ରୂପ ଦେବା ତାର କାର୍ଯ୍ୟ । କବି ନୀତି ଅନୀତିର ବିଗ୍ରହ ଲାଗି ଦରବାର ଖୋଲି ବସେ ନାହିଁ । ଜୀବନର ସୁଖ ଦୁଃଖ ଘେନି କାବ୍ୟ ରଚିତ । ସୁଖ ନ୍ୟାୟସଙ୍ଗତ ଉପାୟରେ ପ୍ରାପ୍ତ କି ନୁହେଁ, ଦୁଃଖ ପ୍ରବଳର ଉତ୍ପୀଡ଼ନରୁ ଜାତ କି ନୁହେଁ, ଏ ବିଚାର ପ୍ରତ୍ୟକ୍ଷଭାବରେ କବିଙ୍କୁ କରିବାକୁ ପଡ଼େ ନାହିଁ । କିନ୍ତୁ ତାର ବିଚାରଧାରାର ପରିଧି ମଧ୍ୟରେ ସବୁ ମଣିଷ ଆସନ୍ତି, ସବୁ ହାହାକାର ତାକୁ ଶୁଣିବାକୁ ହୋଇ-ଥାଏ, ସବୁର ରାୟ ଦେବାକୁ ହୋଇଥାଏ । ସେ ଏକାକୀ ଏକ ପଞ୍ଚାୟତ, ସବୁ କଳାତତ୍ତ୍ୱରେ 'ଭଲଲୋକ' । ତା 'ଭଲଲୋକୀ'ରେ ସବୁ ବ୍ରାହ୍ମଣ ସମ୍ଭବ । କେହି ତ୍ୟକ୍ତ ବା ଉପେକ୍ଷିତ ନୁହେଁ । ରାଜଚକ୍ରବର୍ତ୍ତୀର ଖିଆଲ ସେଠି ନିଷ୍ପ୍ରଭ, ଦରିଦ୍ର ସେଠି ଦରିଦ୍ର ନୁହେଁ, ଦାନର ମର୍ଯ୍ୟାଦା ବଳିଦାନରେ ମାନୀ ସେଠି ମାନ ପାଏନାହିଁ । ଧନ ସେଠି ଜୟଯୁକ୍ତ ହୁଏନାହିଁ, କ୍ଷମତା ସେଠି ଅବନତ । ସାଧାରଣ ବିଚାରାଳୟରୁ ନ୍ୟାୟ ମିଳିପାରେ ନ ପାରେ, କିନ୍ତୁ କବି ଯେଉଁ ରାୟ ଦିଏ, ଏହା ମାନବିକତାର ରାୟ, ତା ବିରୁଦ୍ଧରେ ଅପିଲ୍ ଲୋଡ଼ା ହୁଏ ନାହିଁ; ଏହା ଏକ ସନାତନ ନିଷ୍ପତ୍ତି, ଯାହାକୁ ସମସ୍ତେ ଗ୍ରହଣ କରନ୍ତି ।

ଆମ ଦେଶରେ ଗୋଟିଏ ପ୍ରବଚନ ପ୍ରଚଳିତ—

ଯାହା ହୋଇନାହିଁ ବାଳ କାଳେ
ତାହା ହେବ କି ପାଚିଲା ବାଳେ ?

ବାଲ୍ୟକାଳରୁ ଆତ୍ମସଂଯମ ଆବଶ୍ୟକ । ତେଣୁ ନୈତିକ ଚରିତ୍ରର ଉନ୍ନତି-ଲାଗି ଶିଶୁମାନଙ୍କୁ କବିତାରେ ନୀତି ଉପଦେଶ ଦିଆଯାଇଥାଏ । ଭକ୍ତକବି ମଧୁ-ସୂଦନ ବହୁ ଉପଦେଶପୂର୍ଣ୍ଣ ଶିଶୁ କବିତା ରଚନା କରି ଯାଇଛନ୍ତି—

'ପିତାମାତା ପରି ଆଉ କେ ଅଛି ସଂସାରେ ?
ଧନ୍ୟ ସେ ଯେ ପ୍ରାଣ ଦିଏ ତାଙ୍କର ସେବାରେ ।'

'ବିଦ୍ୟା ଅଟଇ ମହାଧନ,
ବାଲକେ କର ଉପାର୍ଜନ ।
ବିଦ୍ୟା ଅଟଇ ମହାବଳ,
ସେ ବଳେ ଜିଣ ଭୂମଣ୍ଡଳ ।'

ପିତାମାତାଙ୍କ ସେବା, ଅଧ୍ୟୟନ ଓ ଧର୍ମଆଡ଼କୁ ଚପଳମତି ଶିଶୁମାନଙ୍କର ମନ ଆକର୍ଷଣ କରିବାଲାଗି କବି ଏହି ପଦଗୁଡ଼ିକ ରଚନା କରିଛନ୍ତି । କିନ୍ତୁ କେବଳ ନୈତିକ ଶିକ୍ଷା ଦେଲେ ଶିଶୁ ତାହା ଗ୍ରହଣ କରିପାରେ ନାହିଁ । ଏହା ମନୋରଞ୍ଜକ ହେବା ବାଞ୍ଛନୀୟ ।

'ଇଟିକିଲି ମିଟିକିଲି ଫୁଟିଗଲି କାଇଞ୍ଚ
ତୁମର ଆମର ଲାଲ ପଇଞ୍ଚ ।'

ଏହାର ସ୍ୱର, ତାଳ, ଝଙ୍କାର ଶୁଣି ଶିଶୁ ଆନନ୍ଦରେ ନୃତ୍ୟ କରେ । ତାର ମନ କ୍ରୀଡ଼ାଚଞ୍ଚଳ ହୋଇଯାଏ, ସାମାନ୍ୟ ନଜରରେ ସେ ତାକୁ ଧରି ପକାଇ ନିଏ । କିନ୍ତୁ—

'ପୃଥିବୀ ଅଟଇ ଗୋଲ ଆକାର,
ସତେ କି କମଳାଲେମ୍ବୁ ପ୍ରକାର ।'

ଏହା କେବଳ ତାର କାନରେ ପଶେ, ମର୍ମ ଭିତରକୁ ଯାଏନାହିଁ ।

'ତାଆଁଣିଆ ଖରା ପଡ଼ୁଛି ବେଳ ଯାଉଛି ବୁଡ଼ି,
କି ସୁନ୍ଦର ପାରା ଯୋଡ଼ିଏ ଯାଉଅଛନ୍ତି ଉଡ଼ି ।'
'ବିଲରେ ପାଚିଛି ରଙ୍ଗଣି ଧାନ ହୋ
ଧୋଟରେ ବାଇଆ ଧୋ,
ଯେଉଁ କିଆରିରେ ଗହଲ ଧାନ ରୁ
ସେଇ କିଆରିରେ ଶୋ ।'

ପ୍ରଭୃତି ଗୀତ ଆବୃତ୍ତି କଲେ ଶିଶୁ ସମକ୍ଷରେ ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ-ଜଗତ ଉଦ୍ଭାସିତ ହୋଇଉଠେ, ତାର ମନ ସଚଳ ଓ କ୍ରିୟାଶୀଳ ହୁଏ, ତାର ସୁପ୍ତ ସୃଷ୍ଟିଶକ୍ତି ଜାଗ୍ରତ ହୁଏ ।

ନୀରସ ନୀତିଉପଦେଶଗୁଡ଼ିଏ ନ ବୁଝି ବୃଥା କଣ୍ଠସ୍ଥ କରିବାକୁ ଶିଶୁ ଆଦୌ ଭଲପାଏ ନାହିଁ । କେବଳ ଅବଧାନଙ୍କ ବେତ୍ରାଘାତ ଓ ରକ୍ତଚକ୍ଷୁ ଭୟରେ ସେହି ଗୁଡ଼ିକ ପାଠନ ଗଳାଧଃକରଣ କରେ । କିନ୍ତୁ ଏଭଳି ବାଧ୍ୟତାମୂଳକ ଅସ୍ୱାଭାବିକ ନୀତିଶିକ୍ଷା ସୁଫଳପ୍ରଦ ହୁଏ ନାହିଁ । କ୍ରୀଡ଼ାକୌତୁକପ୍ରିୟ ଶିଶୁର କୋମଳ ପଥ

କୃତ୍ରିମ ବାଡ଼ରେ ଅବରୁଦ୍ଧ ହେବାଦ୍ୱାରା ତାର ପୀଡ଼ିତ ଆତ୍ମା ବିଦ୍ରୋହୀ ହୋଇ-ଉଠେ । ପାଠ୍ୟପୁସ୍ତକ ଜରିଆରେ ଏହିପରି ଶୁଷ୍କ ନୀରସ କବିତା ପଢ଼ି କବିତା ପ୍ରତି ଚିରଦିନ ତା ମନ ବୀତଶ୍ରଦ୍ଧ ହୋଇଯାଏ । କାବ୍ୟସରସ୍ୱତୀଙ୍କ ଦ୍ୱାର ତା ଲାଗି ଆଜୀବନ ରୁଦ୍ଧ ହୋଇଯାଏ । ତେଣୁ ସହଜ ସୁନ୍ଦର କବିତାର ଆନନ୍ଦହିଲ୍ଲୋଳ ମଧ୍ୟରେ ନୀତିଶିକ୍ଷା ପରୋକ୍ଷଭାବରେ ଦେବା ଉଚିତ ।

କବି ଶିକ୍ଷକ ହେଲେ କଳାର ଉଦ୍ଦେଶ୍ୟ ବ୍ୟର୍ଥ ହୁଏ । ଜଗତର ବହୁ କବି ଜନସାଧାରଣଙ୍କୁ ଶିକ୍ଷା ଦେବା ନିମିତ୍ତ ନୀତିଉପଦେଶପୂର୍ଣ୍ଣ କବିତାମାନ ଲେଖି ଯାଇଛନ୍ତି । ଉଦ୍ଦେଶ୍ୟ ମହତ୍ । କିନ୍ତୁ ସେ କବିତା କେବଳ ସ୍କୁଲ୍‌ଗୃହର କାନ୍ଥ-ମାନଙ୍କରେ ଲେଖା ହୋଇଥାଏ । ଗ୍ରନ୍ଥଗ୍ରାହୀମାନଙ୍କର କୌଣସି କାର୍ଯ୍ୟରେ ଲାଗେ ନାହିଁ । ଶିକ୍ଷାଦିଗରୁ ସେଗୁଡ଼ିକର ମୂଲ୍ୟ ଥିଲେହେଁ କଳାଦିଗରୁ ସେଗୁଡ଼ିକର ସ୍ଥାନ ନିମ୍ନରେ । ସେଗୁଡ଼ିକ 'ନୀତି କବିତା' ନାମରେ ଅଭିହିତ ।

ଓ୍ୱାର୍ଡ଼ସ୍ ଓ୍ୱାର୍ଥଙ୍କ ପ୍ରକୃତିକବିତା ସ୍ୱାଭାବିକ ସୌନ୍ଦର୍ଯ୍ୟଗୁଣରେ ସୁପ୍ରସିଦ୍ଧ; କିନ୍ତୁ ତାଙ୍କ ନୀତି କବିତାଗୁଡ଼ିକ ଅନାଦୃତ ହୋଇଥାଏ । ମଧୁସୂଦନ ମଧ୍ୟ ରୁଚି-ସଂସ୍କାରକ ହିସାବରେ ଏ ଧରଣର ବହୁ କବିତା ଲେଖିଛନ୍ତି । ଭୀମ ଭୋଇଙ୍କ ଭଜନ ଅପେକ୍ଷା ସେଗୁଡ଼ିକର ସ୍ଥାନ ଉଚ୍ଚରେ ନୁହେଁ ।

ଜନସାଧାରଣଙ୍କୁ ସେ ପ୍ରକାଶ୍ୟଭାବରେ ଉପଦେଶ ଦେଇ ଯାଇଛନ୍ତି । କବି ଉପରେ ବଡ଼ ହୋଇ ବସିଛି ଅବଧାନ । ମୁଖରେ ତାର ବହୁତ କିଛି ଶିଖେଇ ଦେବାର ବ୍ୟାକୁଳତା; କିନ୍ତୁ ଯେ ଶିଖିବ ତାର ମନ ସେ ନେଇନାହିଁ, କେବଳ ନିଜକୁ ଜାହିର୍ କରିଛି, ଉଦ୍ଦେଶ୍ୟ ଯେତେ ସତ୍ ହେଉ ପଛକେ ।

'ଜଗତର ହିତ ଅର୍ଥେ ଦିଅରେ ଜୀବନ'
'ବିଭୁପଦେ ପ୍ରାଣ ସମର୍ପି ନବ ଜୀବନ ଧର ।'

ଏ ଉପଦେଶ କାନ୍ତାସମ୍ମିତ ନୁହେଁ, ଗୁରୁସମ୍ମତ । ଏଇ ଜ୍ଞାନର ଉଦ୍‌ଗୀରଣ, ମହତ୍ତ୍ୱର ବିତରଣ ମଧ୍ୟରେ ରସ ଅନ୍ତର୍ହିତ ହୋଇଯାଇଛି; କଳା ଆତ୍ମହତ୍ୟା କରିଛି । କଳ୍ପନା, ଧ୍ୱନି ଓ ଆବେଗ ପରିବର୍ତ୍ତରେ ଆମେ ଦେଖୁ ପଦ୍ୟାନ୍ୱିତ ବିବୃତି, ଦର୍ଶନ ଓ ନୀତିଶିକ୍ଷା ଦେବାର ପ୍ରବୃତ୍ତି । କିନ୍ତୁ ତାଙ୍କର 'ହିମାଚଳେ ଉଦୟୋତ୍ସବ', 'ଋଷିପ୍ରାଣେ ଦେବାବତରଣ' କଳାର ମହତ୍ତମ ଉଦ୍ଦେଶ୍ୟ ସାର୍ଥକ କରେ । ଜଗତର ଯେ କୌଣସି ଉନ୍ନତ ସାହିତ୍ୟ ଏଇ କବିତା ଦୁଇଟିକି ଘେନି ଗର୍ବ କରିବ ।

ଜୀବନ-ରସରେ ସାହିତ୍ୟ-ତରୁ ପରିପୁଷ୍ଟ, ସାହିତ୍ୟର ଆଦର୍ଶ ଦ୍ୱାରା ଜୀବନ ଅନୁପ୍ରାଣିତ । କୁସଂସ୍କାରପୂର୍ଣ୍ଣ ସମାଜର ରୁଚିସଂସ୍କାର ଭାର ସାହିତ୍ୟ ବହନ କରେ,

ସଭ୍ୟତାର ଅଗ୍ରଗତି ସାହିତ୍ୟ ଯୋଗୁଁ ସମ୍ଭବ; ସମାଜର ରୁଚି ଯଦି ନିମ୍ନସ୍ତରରେ ରହେ, ତେବେ ସୌନ୍ଦର୍ଯ୍ୟାନନ୍ଦ କବି ସୃଷ୍ଟି କରିବ କାହା ଲାଗି ? କେବଳ ଜଣେ ଅଧେ କବି ବା ସାହିତ୍ୟିକ ସମାଜର ଉଚ୍ଚତମ ସ୍ତରରେ ରହି ନୋବେଲ୍ ପୁରସ୍କାର ଲାଭ କଲେ ଜାତି ଉନ୍ନତି ହେବନାହିଁ । ଜାତିକୁ ନିଜ ସହିତ ପ୍ରସ୍ତୁତ କରି ଅଗ୍ରଗତି କରାଇବାକୁ ହେବ ।

ଜନସମାଜରେ ଆଧୁନିକ ସାହିତ୍ୟିକମାନଙ୍କର ସୁରୁଚିପୂର୍ଣ୍ଣ ପୁସ୍ତକର ବିକ୍ରୀସଂଖ୍ୟା ସ୍ୱଳ୍ପ । ଅବଶ୍ୟ ଲେଖକ ଜନସାଧାରଣଙ୍କ ଉପଯୋଗୀ ପୁସ୍ତକ ରଚନାରେ ମନଯୋଗୀ ହୋଇନାହାନ୍ତି । ଫଳତଃ ଲୋକେ 'ମଧୁଶଯ୍ୟା ମିଳନ', 'ଶାଶୂବୋହୂ କଳି' ପ୍ରଭୃତି କୁରୁଚିପୂର୍ଣ୍ଣ ପୁସ୍ତକ ପାଠକରି ଅଧୋଗାମୀ ହେଉଛନ୍ତି । ଉପେନ୍ଦ୍ରଯୁଗର ପଙ୍କିଳ ସମାଜର ସ୍ତର ଉନ୍ନତ କରିବା ନିମିତ୍ତ ମଧୁସୂଦନ ନୀତିପୂର୍ଣ୍ଣ କବିତା ଲେଖିଥିଲେ । କିନ୍ତୁ ତାହା ସାଧାରଣଙ୍କ ମର୍ମ ସ୍ପର୍ଶ କରିପାରିଲା ନାହିଁ । ତେଣୁ ସାହିତ୍ୟର ଉନ୍ନତି ସଙ୍ଗେ ସମାଜଜୀବନର ଗତି ମେଳ ଖାଇଲା ନାହିଁ । ଫଳରେ ସାହିତ୍ୟ ଓ ସମାଜ ଉଭୟେ ପଛରେ ପଡ଼ି ରହିଲେ ।

କବି ଜଗତର ସକଳ ବିଷୟରେ କବିତା ଲେଖେ ନାହିଁ । ଟେବୁଲ, ଚେୟାର, ପେଟ୍ରୋମାକ୍ସ ଲାଇଟ୍, ଇଞ୍ଜିନ୍ ପ୍ରଭୃତି ବହୁ ବିଷୟ ବାଦ୍ ଦେବାକୁ ହୁଏ । ବିଷୟବସ୍ତୁର ସାରସଂଗ୍ରହ ହୁଏତ ଜ୍ଞାତସାରରେ ହୁଏ । ପରୋକ୍ଷଭାବରେ ସେତେବେଳେ ନୈତିକତାର ପ୍ରଭାବ ପଡ଼ିଥାଏ । ସୁ-କବି କୌଣସି ଉନ୍ନତ ଆଦର୍ଶ ଆଗରେ ନ ରଖି କବିତା ରଚନା କରନ୍ତି ନାହିଁ । ସେପରି ଆଦର୍ଶ ନ ଥିଲେ କବିତା ଉଚ୍ଚସ୍ତରର ନୋହିପାରେ । ନୀତିର ଅଲକ୍ଷିତ ପ୍ରଭାବ ଏଡ଼ିବା କବି ପକ୍ଷରେ ସମ୍ଭବ ନୁହେ ।

କବି ଖାମଖିଆଲୀ ଭାବରେ କବିତା ରଚନା କରେନାହିଁ । ସେ ମାନବ ସମାଜକୁ ନୂତନ ପଥ ପ୍ରଦର୍ଶନ କରେ, ନୂତନ ଆଦର୍ଶର ପ୍ରତିଷ୍ଠା କରେ । କବି କେବଳ କଳ୍ପନାରସିକ ନୁହେଁ, ସୁବିବେଚକ । ବିବେକବୁଦ୍ଧି ତାର ଅତି ଉଜ୍ଜ୍ୱଳ । ତେଣୁ ଧର୍ମର ଜୟ, ଅଧର୍ମର ପରାଜୟ, ପଶୁଶକ୍ତିର ଧ୍ୱଂସ, ସାଧୁତାର ପୁରସ୍କାର, ଅସାଧୁତାର ଦଣ୍ଡ, ଜ୍ଞାନର ଗୌରବ, ଅଜ୍ଞାନତାର ଗ୍ଳାନି କାବ୍ୟ ବା ନାଟକରେ ସେ ଦୃଷ୍ଟାନ୍ତରୂପେ ପରିବେଷଣ କରିଥାଏ । ଜଗତର ସମସ୍ତ ଉପନ୍ୟାସ, ନାଟକ ପ୍ରାୟ ଏହି ଆଦର୍ଶରେ ଲିଖିତ । ଏହି ଉଚ୍ଚ ଆଦର୍ଶର ଅନୁଗାମୀ ହୋଇ ଭ୍ରାନ୍ତ ଜନତା ସତ୍‌ମାର୍ଗକୁ ଫେରିଆସେ । ନାୟକ ବା ନାୟିକାର ମହତ୍ ଚରିତ୍ର ସଙ୍ଗେ ଆତ୍ମଚରିତ୍ରକୁ ତୁଳନା କରି ସଂଶୋଧନରେ ବ୍ରତୀ ହୁଏ । ତେଣୁ ଅଳଙ୍କାରଶାସ୍ତ୍ରରେ 'ରାମାଦିବତ୍ ପ୍ରବର୍ତ୍ତିତବ୍ୟଂ ନ ରାବଣାଦି ବତ୍' ଆଦର୍ଶ ସନ୍ନିବେଶିତ ହୋଇଅଛି ।

ବ୍ୟକ୍ତି ପଛରେ ପ୍ରେରଣା ଦେବାଲାଗି ଉନ୍ନତ, ଚରିତ୍ର ନିଷ୍ଠା ଓ ବିଶିଷ୍ଟ ବ୍ୟକ୍ତିତ୍ୱ ନ ଥିଲେ, ବାମନର ଚନ୍ଦ୍ରଧାରଣ ପ୍ରୟାସ ପରି କ୍ଷୁଦ୍ରଚରିତ୍ରର ମହାକାବ୍ୟ ରଚନା ଚେଷ୍ଟା ବ୍ୟର୍ଥ ହୁଏ । ସବୁ ମହାକାବ୍ୟ ମୂଳରେ ମାନବଜାତିର ପ୍ରତିନିଧି-ଯୋଗ୍ୟ ବ୍ୟକ୍ତିତ୍ୱ ବିଦ୍ୟମାନ । ଜାତୀୟ ଚରିତ୍ର ଗଠନରେ ସେ ସାହାଯ୍ୟ କରେ । କିନ୍ତୁ ନିଜେ ଚରିତ୍ରବାନ୍ ନହେଲେ ସେ ଚରିତ୍ର ଗଠନ କରିବ କିପରି ? ଯାହା ଘୋର ଅଶ୍ଳୀଳ, ବୀଭତ୍ସ, ଗ୍ଳାନିକର ସେ ପ୍ରକାଶ କରେନାହିଁ । ଯାହା ଆମ ଚରିତ୍ରକୁ ଉନ୍ନୀତ ନ କରେ, ହୃଦୟରେ ଉନ୍ନତିର ଅନୁଭବ ନ ଆଣେ, ତାହା ଉଚ୍ଚାଙ୍ଗ ସାହିତ୍ୟ ନ ହୋଇପାରେ । ଓଡ଼ିଆ ରୀତିଯୁଗ ସାହିତ୍ୟ ଯେତେ ସରସ ଓ ସୁନ୍ଦର ହେଲେ ବି ଓଡ଼ିଆ ଜାତିର ଚରିତ୍ର ଗଠନରେ କିପରି ସାହାଯ୍ୟ କରେ ?

କବିତା ନୀତିହୀନ ହେବନାହିଁ କିମ୍ବା ପ୍ରକାଶ୍ୟରେ ନୀତି ଉପଦେଶପୂର୍ଣ୍ଣ ହେବନାହିଁ । କାବ୍ୟର ଉଦାର, ଗମ୍ଭୀର ଭାବରାଶି ତଳେ ନୀତିର ଫଲ୍‌ଗୁଧାରା ପ୍ରଚ୍ଛନ୍ନଭାବରେ ପ୍ରବାହିତ ହେବା ବାଞ୍ଛନୀୟ ।



# ଓଡ଼ିଆ ସାହିତ୍ୟରେ ଅନ୍ନଦାଶଙ୍କର

'ସବୁଜ' ସଙ୍ଗୀମାନଙ୍କ ମଧ୍ୟରେ ଅନ୍ନଦାଶଙ୍କର ଅଗ୍ରଗଣ୍ୟ, ରଚନାର ବିପୁଳତା ଓ ବୈଚିତ୍ର୍ୟ ଦିଗରୁ ବିଗ୍ଚାର କଲେ । ତାଙ୍କ ସାହିତ୍ୟିକ କଳ୍ପନାର ପରିଧି ବିପୁଳ, ପ୍ରସ୍ତୁତ ବ୍ୟାପକ ଓ ଅନୁଭୂତି ସୁଦୂରପ୍ରସାରୀ । ସାଧନାର ଅଖଣ୍ଡ ଓ ଅନିର୍ବାଣ ଦୀପ ସେ ଜାଳି ଆସିଛନ୍ତି । କୌଣସି ବାଧାବିଘ୍ନ ବା ବିପଦରେ ତାହା ବ୍ୟାହତ ହୋଇନାହିଁ । ଚିରକାଳ ସେ କରିଛନ୍ତି, ଦାସତ୍ୱରୁ ଆତ୍ମାକୁ ଯଥାସମ୍ଭବ ଊର୍ଦ୍ଧ୍ୱରେ ରଖି । ସ୍ୱାଧୀନ ଆତ୍ମା ଉପରେ ଯେତେବେଳେ ଆଘାତ ଆସିଛି, ସେ ଚିରକାଳ ଗୁଡ଼ି ଚାଲି ଆସିଛନ୍ତି । କ୍ଷମତା ତାଙ୍କୁ ଅହଂମତ୍ତ କରିନାହିଁ, ନୈରାଶ୍ୟ କରି ନାହିଁ ଦିଗ୍‌ଭ୍ରାନ୍ତ । ସରଳ ଜୀବନ ଓ ଉଚ୍ଚଚିନ୍ତାର ମହନୀୟ ମିଳନ ଆଉ କେଉଁଠି ଏପରି ଦେଖିବାକୁ ମିଳେ ?

ବ୍ୟକ୍ତି ଆଉ ଅଭ୍ୟାସ ସମାନ୍ତର ଭାବରେ ଚାଲିଛି । ସଂସ୍କୃତିକୁ ଏକ ମହାନ୍ ଧର୍ମସ୍ୱରୂପ ସେ ଗ୍ରହଣ କରିଛନ୍ତି ଓ ସେଥି ଧର୍ମଲାଗି ସେ ଅକାତରରେ ସମସ୍ତ ତ୍ୟାଗ ସ୍ୱୀକାର କରିଛନ୍ତି, ଲୋଡ଼ିଛନ୍ତି ଯାବତୀୟ ବନ୍ଧନରୁ ଆତ୍ମାର ମୁକ୍ତି । ତେଣୁ ତାଙ୍କ ରଚନା ମଧ୍ୟରେ ଦେଖିବାକୁ ମିଳେ ମୁକ୍ତମନର ଅବାରିତ ହିଲ୍ଲୋଳ । ମନୀଷା ଓ ମାନବତାର ମଣି-କାଞ୍ଚନ ସଂଯୋଗ ଅନ୍ନଦାଙ୍କ ଚରିତ୍ରରେ ଘଟିଛି । ତେଣୁ ସେ ଆମର ଏତେ ପ୍ରିୟ ।

ଭ୍ରମଣକାହାଣୀ, ରମ୍ୟରଚନା, ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, ଉପନ୍ୟାସ, କବିତା ପ୍ରଭୃତି ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ତାଙ୍କର ଦାନ ପ୍ରଚୁର । 'ପଥେ ପ୍ରବାସେ' ଲେଖି ସେ ବଙ୍ଗଳାରେ ପ୍ରତିଷ୍ଠିତ ହେଲେ, 'ଜାପାନେ' ଲେଖି ସାହିତ୍ୟଏକାଡ଼େମୀ ପୁରସ୍କାର ଲାଭ କଲେ । ଭ୍ରମଣକାହାଣୀ ଲେଖକ ହିସାବରେ ତାଙ୍କର ସ୍ଥାନ ରବୀନ୍ଦ୍ରନାଥଙ୍କୁ ବାଦ୍‌ଦେଲେ ସର୍ବୋଚ୍ଚ । ହେଲେ ହେଁ ସେ ମୁଖ୍ୟତଃ ଗାଳ୍ପିକ ଓ ଔପନ୍ୟାସିକ । କବି ଭାବରେ ବଙ୍ଗଳା ଅପେକ୍ଷା ଓଡ଼ିଶାରେ ତାଙ୍କର ଅଧିକ ପ୍ରତିଷ୍ଠା । ତାଙ୍କର କବିତା ଲେଖା ଏବେ ପ୍ରାୟ 'ଛଡ଼ା' ମଧ୍ୟରେ ସୀମାବଦ୍ଧ ରହିଅଛି । ବଙ୍ଗଳାରେ ସେ ପ୍ରାୟ ୭୦ ଖଣ୍ଡ ପୁସ୍ତକ ରଚନା କରିଛନ୍ତି ।

ବଙ୍ଗଳା ତୁଳନାରେ ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ଅକିଞ୍ଚିତ୍‌କର । କବିତା, ପ୍ରବନ୍ଧ, ଚିଠିପତ୍ର ମିଶାଇ ସେ ପ୍ରାୟ ତିନିଶତ ପୃଷ୍ଠା ରଚନା କରିଛନ୍ତି ।

ଏ ସମସ୍ତ ପ୍ରାଥମିକ ରଚନା, କଲେଜରେ ପଢ଼ିଲାବେଳେ ଅଧିକାଂଶ ଲେଖିଛନ୍ତି । ତେଣୁ ଏଥିରେ ପୋଖତ ଲେଖମାର ସ୍ପର୍ଶର ଅଭାବ ଅନୁଭୂତ ହୁଏ । ବହୁଦର୍ଶିତା ଓ ସୂକ୍ଷ୍ମ ଅନୁଭୂତିର ଚିହ୍ନ ବିରଳ । ତରୁଣ ଜୀବନର ଉଦ୍‌ବେଳ ଉଚ୍ଛ୍ୱାସ ମାତ୍ର ମୂର୍ତ୍ତି ହୋଇଅଛି ।

'ଦୟାନିଧି' ଛଦ୍ମନାମରେ ସେ ଢେଙ୍କାନାଳକୁ ଆସିଥିବା ଗୋଟିଏ ସର୍କସଦଳ ବିରୁଦ୍ଧରେ 'ଉତ୍କଳଦୀପିକା'ରେ ଖଣ୍ଡିଏ ପତ୍ର ଲେଖି ଛପାଇଥିଲେ । ଏହା ତାଙ୍କର ପ୍ରଥମ ଓଡ଼ିଆ ରଚନା । ସେତେବେଳକୁ ତାଙ୍କର ବୟସ ପନ୍ଦର ବର୍ଷ ମାତ୍ର । ତାର ବର୍ଷକ ପରେ ତାଙ୍କର ପ୍ରଥମ ଲେଖା 'ପ୍ରବାସୀ'ରେ ପ୍ରକାଶିତ ହୋଇଥିଲା । କିଶୋର ବୟସରେ ଢେଙ୍କାନାଳରେ ଥିଲାବେଳେ ସେ 'ପ୍ରଭା' ନାମକ ଖଣ୍ଡିଏ ହାତଲେଖା ପତ୍ରିକାର ସମ୍ପାଦକ ହୋଇଥିଲେ ଓ ଓଡ଼ିଆ ନାଟକ ରଚନା ଓ ଅଭିନୟ ଉଦ୍ୟମ କରିଥିଲେ ।

ଅଠର ବର୍ଷ ବୟସରେ ସେ ଓଡ଼ିଆରେ ସାହିତ୍ୟ ଲେଖା ଆରମ୍ଭ କଲେ; ମାତ୍ର ବାଇଶି ବର୍ଷ ବୟସରେ ଓଡ଼ିଆ ସାହିତ୍ୟରୁ ବିଦାୟ ନେଲେ । ୧୯୨୨ରୁ ୧୯୨୬ ମଧ୍ୟରେ ସେ ଯାହାକିଛି ଲେଖିଥିଲେ, ତାହା 'ଉତ୍କଳସାହିତ୍ୟ', 'ସହକାର', 'ସବିତା' ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିଲା । ବାରଗୋଟି କବିତା, ବାଇଶିଟି ପ୍ରବନ୍ଧ, ସ୍ୱପ୍ନ ନାମକ ଗୋଟିଏ ଗଳ୍ପ, କେତେକ ଚିଠିପତ୍ର— ଏତିକିମାତ୍ର ତାଙ୍କର ରଚନା । 'ସବୁଜ ସାହିତ୍ୟ ସମିତି' ତରଫରୁ ପ୍ରକାଶିତ 'ସବୁଜ କବିତା'ରେ ତାଙ୍କର ସାତଗୋଟି କବିତା ପ୍ରକାଶିତ ହୋଇଥିଲା । ସେ ପ୍ରଥମ ଓଡ଼ିଆ 'ବାରୋଆରି' ଉପନ୍ୟାସ 'ବାସନ୍ତୀ'ର ଆଦ୍ୟ ତିନିଗୋଟି ପରିଚ୍ଛେଦ ରଚନା କରିଥିଲେ । ବିଲାତରେ ଥିଲାବେଳେ ସେ କବି ପଦ୍ମଚରଣ ପଟ୍ଟନାୟକଙ୍କ 'ପଦ୍ମପାଖୁଡ଼ା'ର ସମାଲୋଚନା ଲେଖିଥିଲେ ।

'ଉତ୍କଳସାହିତ୍ୟ'ର 'ଯୁଗବାଣୀ' ବିଭାଗରେ ସେ ବିଶ୍ୱସାହିତ୍ୟ ଓ ସାହିତ୍ୟିକମାନଙ୍କ ସମ୍ପର୍କରେ ଆଲୋଚନା କରୁଥିଲେ । ତାଙ୍କ ଛଦ୍ମନାମ ଥିଲା 'ଶ୍ରୀସବୁଜ' । ୧୯୩୦ରେ 'ଯୁଗବାଣୀ' ସବୁଜ ସାହିତ୍ୟ ସମିତିର ସ୍ୱତନ୍ତ୍ର ମୁଖପତ୍ର-ରୂପେ ପ୍ରକାଶ ଲାଭକଲା । ୧୯୨୬ ପରେ ଏହି ସମିତି ସହିତ ଅନ୍ନଦାଶଙ୍କରଙ୍କର କୌଣସି ସମ୍ପର୍କ ନ ଥିଲା ।

୧୯୨୩ରେ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କ ନିକଟକୁ ଲିଖିତ ତାଙ୍କର ଖଣ୍ଡିଏ ପତ୍ର ପ୍ରକାଶ ପାଇଥିଲା । ସେଥିରେ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ସେକାଳ ମନୋଭାବ ବ୍ୟକ୍ତ ହୋଇଅଛି । ସେ ବଙ୍ଗଳାରେ କି ଓଡ଼ିଆରେ ଲେଖିବେ, ତାଙ୍କର ଚିତ୍ତ ଦୋଳାୟିତ ହୋଇଥିଲା । ତାଙ୍କ ଛାତ୍ରଜୀବନର

ସାହିତ୍ୟିକ ଉଦ୍ୟମ, ସଂକଳ୍ପ ଓ ଓଡ଼ିଆରେ ଲେଖିବାକୁ ଆତ୍ମପ୍ରତ୍ୟୟର ଅଭାବ ଏହି ପତ୍ରରେ ସ୍ପଷ୍ଟତର ହୋଇଅଛି—"ଅନେକ ଦିନ ଲେଖିବାର ଅଭ୍ୟାସ—ବିଶେଷତଃ ଓଡ଼ିଆ ଲେଖିବାର ଛୁଟି ଦେଇଥିଲି । ବାପ୍ପାଙ୍କ ଆପଣମାନଙ୍କ ଉପରେ ରାଗ ହୋଇଥିଲି । ବଙ୍ଗଳାଚର୍ଚ୍ଚା କଲେଜକୁ ଆସି ବିଶେଷଭାବରେ ଆରମ୍ଭ କରିଦେଲି ।

ବଙ୍ଗଳା ଚର୍ଚ୍ଚା କରୁ କରୁ ମନେ ହେଲା – ଓଡ଼ିଆକୁ ଭୁଲିଯିବାଟା ଭୁଲ ହେବ । କାରଣ ଯେତେବେଳେ ମୁଁ ଓଡ଼ିଶାବାସୀ ବଙ୍ଗାଳୀ । ସେ ଦେଶର ମାଟିକୁ ମୁଁ ଭଲ ପାଏଁ । I. A ପରୀକ୍ଷାପାଇଁ ବ୍ୟସ୍ତ ଥିଲି । ତଥାପି 'ଖେଳଘର'ଟା ଲେଖି ଆପଣଙ୍କୁ ପଠାଇଦେଲି । ଆମ୍ଭେମାନେ କେତେଜଣ କଲେଜ ପଢ଼ୁଆ•ବନ୍ଧୁ 'Nonsense Club' ଦଳ ବୋଲି ଗୋଟିଏ ଦଳ କରିଥିଲୁ ଏବଂ ହାତଲେଖା ବହୁଭାଷାର କାଗଜଟିଏ ଚଳାଉଥିଲୁ । ଯେତେବେଳେ ସେ କାଗଜକୁ ଡ଼ିସେମ୍ବରରେ ଭାଙ୍ଗିଦେଲୁ ଅଉ ସାହିତ୍ୟଚର୍ଚ୍ଚାର ବାଟ ରହିଲା ନାହିଁ । ମାସିକ ପତ୍ରକୁ ଲେଖା ପଠାଇବାକୁ ହେଲା, ବିଶେଷତଃ ଓଡ଼ିଆ ମାସିକ ପତ୍ରକୁ । ମୋର ଲେଖାଟି ଆପଣ ପ୍ରକାଶ କଲେ ଦେଖି ଓଡ଼ିଆଙ୍କ ଉପରେ ଗୋଟାଏ ପ୍ରତ୍ୟୟ ଆସିଲା । ମୁଁ ତ ଭାବିଥିଲି ଅଭ୍ୟାସ ବିନା ଓଡ଼ିଆ ଲେଖିବା ଧରଣ ଭୁଲିଯିବି । ଠିକ୍ ଏଇ ସମୟରେ ପ୍ରବନ୍ଧଟିଏ ଲେଖି କୋଡ଼ିଏ ଟଙ୍କା ପୁରସ୍କାର ପାଇଲି । ଭାବିଲି—ଓଡ଼ିଆଲେଖା ହେଳା କରିଲେ ଚଳିବ ନାହିଁ । ଓଡ଼ିଶାର ଭବିଷ୍ୟତ ଆମ୍ଭେମାନେ ହିଁ ଗଢ଼ିବୁ । ସୌଖୀନଭାବରେ ଇଂରେଜୀ ବା ବଙ୍ଗଳା ଲେଖିପାରେ । ମୋର ଇଂରେଜୀ ଲେଖା ଆପଣ Ravenshavianର ପ୍ରତି ସଂଖ୍ୟାରେ ଦେଖିଥିବେ; କିନ୍ତୁ seriously ଲେଖିବାକୁ ହେବ ଓଡ଼ିଆରେ ।"

କିନ୍ତୁ ଅନ୍ନଦାଙ୍କ ଓଡ଼ିଆରେ ଲେଖିବା ସଂକଳ୍ପ ବେଶୀ ଦିନ ରହିଲା ନାହିଁ । ପରିସ୍ଥିତି ତାଙ୍କର ଗତିମୁଖ ବଦଳାଇ ଦେଲା । ସେ ବଙ୍ଗଳାରେ ନିଯୁକ୍ତି ପାଇଲେ, ବଙ୍ଗଳାସାହିତ୍ୟ ଓ ସାହିତ୍ୟିକମାନଙ୍କ ସଙ୍ଗେ ନିବିଡ଼ଭାବେ ସଂପୃକ୍ତ ହେଲେ । ସେ ପ୍ରଭାବ ଏଡ଼ିବା ଲାଗି ପ୍ରଚେଷ୍ଟା କରିବାର କୌଣସି କାରଣ ନ ଥିଲା । ବଙ୍ଗସାହିତ୍ୟରେ ପ୍ରତିଷ୍ଠା ଅର୍ଜନ ସହଜ ବିଷୟ ନ ଥିଲେ ବି 'ପଥେ ପ୍ରବାସେ' ଲେଖି ତାଙ୍କୁ ତାହା ମିଳିଗଲା । ଓଡ଼ିଶାର ଚିନ୍ତାର ସ୍ତର ଓ ସାହିତ୍ୟିକ ମାନ ସେଭଳି ଉଚ୍ଚ ନ ଥିଲା । ତାଙ୍କ ସାହିତ୍ୟିକ ଉଚ୍ଚାକାଂକ୍ଷା ଚରିତାର୍ଥ କରିବାଲାଗି ଓଡ଼ିଶାର ପରିସର ଅତି ସଙ୍କୀର୍ଣ୍ଣ ଥିଲା, ଯତ୍‌ସାମାନ୍ୟ ଲେଖି ସେ ସୁଖ୍ୟାତ ହୋଇ ପାରିଥିଲେ । ଯଶ ପ୍ରତିଷ୍ଠାଲାଗି ସେଭଳି କଠୋର ସାଧନାର ପ୍ରୟୋଜନ ହେଉ ନ ଥିଲା । ପୁଣି ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ନ ଥିଲା । ଭାରତବର୍ଷରେ ଓଡ଼ିଆଭାଷା ଓ ସାହିତ୍ୟର ସେଭଳି ମର୍ଯ୍ୟାଦା ନ ଥିଲା । ବଙ୍ଗଳା ପରି ଓଡ଼ିଶାରେ

ଅନ୍ନଦାଶଙ୍କର କଣ ବିପୁଳ ଧନ ଓ ଯଶର ମାନର ଅଧିକାରୀ ହୋଇପାରିଥାନ୍ତେ ? ତାଙ୍କ 'ସବୁଜ' ସାଥୀମାନଙ୍କ ମଧ୍ୟରୁ କେହି ବା ଅର୍ଥାଭାବ ଲାଗି ସାହିତ୍ୟ ତ୍ୟାଗ କରିଛନ୍ତି, କେହି ବା ପାଠ୍ୟପୁସ୍ତକ ରଚନାରେ ଆତ୍ମନିୟୋଗ କରିଛନ୍ତି । ବୈକୁଣ୍ଠଙ୍କୁ ଛାଡ଼ିଦେଲେ କାହାରି ସାଧନା ଅବ୍ୟାହତ ରହିନାହିଁ; କିନ୍ତୁ ସବୁଜ ସଖାମାନଙ୍କ ମଧ୍ୟରେ ସେ ହୋଇଛନ୍ତି ଦରିଦ୍ରତମ, ପ୍ରତିଷ୍ଠା ଅର୍ଥ-ପ୍ରାପ୍ତିରୁ ବଞ୍ଚିତର ।

ଓଡ଼ିଆରେ ଲେଖିବା କାହିଁକି ଛାଡ଼ିଲେ ପଚାରିଲେ ଅନ୍ନଦାବାବୁ କହନ୍ତି, "ଆତ୍ମପ୍ରତ୍ୟୟର ଅଭାବ । କାଳନ୍ଦୀ ଖାଣ୍ଟି ଓଡ଼ିଆ; ତା ସଙ୍ଗେ ପ୍ରତିଯୋଗିତାରେ ମୁଁ ପାରି ଉଠିଥାନ୍ତି କେମିତି ?"

ତାଙ୍କର ଧାରଣା ଜନ୍ମିଲା ଯେ ସେ ସ୍ୱ-ବକ୍ତବ୍ୟକୁ ଭଲଭାବେ ବଙ୍ଗଳାରେ ପ୍ରକାଶ କରିପାରିବେ ।

ଓଡ଼ିଆ ତ୍ୟାଗ କଲେ ବୋଲି ସ୍ୱ-ଜନ୍ମଭୂମି ଓଡ଼ିଶା ପ୍ରତି ଓ ଓଡ଼ିଆ ପ୍ରତି ତାଙ୍କର ପ୍ରୀତି ଊଣା ହୋଇନାହିଁ । ସେ ଓଡ଼ିଆଙ୍କୁ ପ୍ରାଣ ଭରି ଭଲପାନ୍ତି, ଏକମାତ୍ର ବଙ୍ଗାଳୀ, ଯେ ଶୁଦ୍ଧଭାବରେ ଓଡ଼ିଆ କହିପାରନ୍ତି । କୌଣସି ଓଡ଼ିଆକୁ ବହି ଖଣ୍ଡିଏ ଦେଲେ ସେ ଓଡ଼ିଆରେ ଲେଖି ଉପହାର ଦିଅନ୍ତି । ଓଡ଼ିଆମାନଙ୍କ ନିକଟକୁ ଓଡ଼ିଆରେ ଏବେ ବି ପତ୍ର ଲେଖନ୍ତି । ସାରା ଜୀବନ ବଙ୍ଗଳାରେ ଲେଖି ବି ସେ ବଙ୍ଗାଳୀ ହୋଇପାରି ନାହାନ୍ତି, ସେମାନଙ୍କ ସହିତ ମିଶି ଯେପରିକି ଅମିଶା ରହିଛନ୍ତି । ପ୍ରତିଷ୍ଠିତ କେତେକ ବଙ୍ଗୀୟ ସାହିତ୍ୟିକ ତାଙ୍କୁ 'ଉଡ଼େ' ଆଖ୍ୟା ଦେଇଛନ୍ତି । କବି ରାଧାମୋହନ ଗଡ଼ନାୟକ ତାଙ୍କର ଏହି ଦୀକ୍ଷାନ୍ତର ଗ୍ରହଣକୁ କଟାକ୍ଷ କରି ଲେଖିଛନ୍ତି—

'କୁଞ୍ଜବନ କୋଇଲି ତୁମେ
କୁଆର କୋଳେ ଯତନେ ବଢ଼ି,
ଗିଆନ ଧନ ପାଇଲାକ୍ଷଣି
ଗୋତ୍ର ଭୂଲି ଗଲ ହେ ଉଡ଼ି ।'

ଉତ୍କଳ-ସାହିତ୍ୟ-କ୍ଷେତ୍ରରୁ ଅନ୍ନଦାଶଙ୍କରଙ୍କ ବିଦାୟ ଅତି ଦୁଃଖଦାୟକ ଘଟଣା । ଏଥିରେ କେହି କେହି ଉତ୍କଳପ୍ରେମୀ ଆଘାତପ୍ରାପ୍ତ ହୋଇଛନ୍ତି ! ଏ କଟାକ୍ଷ ତାରି ପ୍ରତିଧ୍ୱନି ।

ଏହି ପ୍ରତିଭାଶାଳୀ ଲେଖକ ରାଧାନାଥ ଓ ରାମଶଙ୍କରଙ୍କ ପରେ ଓଡ଼ିଆ ସାହିତ୍ୟର ଦାରିଦ୍ର୍ୟ ଦୂର କରିବେ ବୋଲି କେତେକ ଭରସା ରଖିଥିଲେ । ତାହା ହୋଇପାରିଲା ନାହିଁ । ତଥାପି ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପାଦିତ 'ସହକାର'ରେ

ଲେଖିଲାବେଳେ ଯେଉଁ 'ବଙ୍ଗୋତ୍କଳ' ଛଦ୍ମ ନାମ ବ୍ୟବହାର କରୁଥିଲେ ତାହା ସତ୍ୟ ହୋଇ ରହିଲା । ତାଙ୍କ ଜୀବନର ଆଦ୍ୟ ଭାଗ ଓଡ଼ିଶାରେ, ଶେଷଭାଗ ବଙ୍ଗଳାରେ ଚିରସ୍ମରଣୀୟ ହୋଇ ରହିଲା । ସେ ହେଲେ ଓଡ଼ିଶା ଓ ବଙ୍ଗଳାର ଶ୍ରେଷ୍ଠ ଯୋଗସୂତ୍ର, 'ବଙ୍ଗୋତ୍କଳ' ମଧ୍ୟରେ ଦୁଇ ସାହିତ୍ୟ, ଭ୍ରାତୃତ୍ୱର ଶ୍ରେଷ୍ଠ ରାଖୀ-ବନ୍ଧନ ।

ତାଙ୍କ ଗଦ୍ୟ ଓ ପଦ୍ୟ ଏକ ଶ୍ରେଣୀର ଚିନ୍ତାର ବାହକ । ଉଭୟରେ ସେ ସ୍ୱରଣ । ଜାତୀୟ ନିଷ୍କ୍ରିୟତା ଓ ସାମାଜିକ ଅଥର୍ବତା ଦୂର କରିବା ଲାଗି ସେ ପ୍ରୟାସ କରିଛନ୍ତି । ଜୀବନକୁ କର୍ମମୁଖର କରିବାଲାଗି 'ପ୍ରଳୟ ପ୍ରେରଣା'ରେ ସେ ପାଞ୍ଚଜନ୍ୟ ବଜାଇଛନ୍ତି । ସ୍ଥିତିଶୀଳତାର ନିରୋଧ, ସ୍ଥବିରତାର ଧ୍ୱଂସ ତାଙ୍କର କାମନା । ଜାତୀୟ ଆତ୍ମାକୁ ଗତାନୁଗତିକତାର କବଳରୁ ମୁକ୍ତ କରିବା ଲାଗି ତାଙ୍କ ସାଜିବାକୁ ହୋଇଛୁ ଝଞ୍ଜା ରୂପେ । ଯେତେ ବିରୋଧ, ବୈଷମ୍ୟ, ଯେତେ ଅନାଚାର ଅବିଚାର ସେ ସମାଧି ଦେବାକୁ ଚେଷ୍ଟା କରିଛନ୍ତି, ପ୍ରତିଷ୍ଠିତ କରିବାକୁ ଚାହିଁଛନ୍ତି ନାରୀର, ଜନନୀର, ଭଗିନୀର ମର୍ଯ୍ୟାଦା ।

'ଦାସୀ ନୁହଁ, ନୁହଁ ଦାସୀ, ନୁହଁ ତୁମେ ଚିର ବନ୍ଦିନୀ'
'ସମାଜ ମାନିବ ନାହିଁ, ଲୋକମତ ଦଳିବ ଚରଣେ ।'

ଏ ସମାଜ ପଙ୍ଗୁ, ପକ୍ଷାଘାତଗ୍ରସ୍ତ, ଏ ଲୋକମତ କୁହୁଡ଼ିଆଛନ୍ନ । ତେଣୁ କବି ତା ବିରୁଦ୍ଧରେ ବିପ୍ଳବର ଅଗ୍ନିବୀଣା ବଜାଇଛନ୍ତି । ସେଲୀଙ୍କ 'Ode to 'West Wind'ର Make Me Thy Lyre' ପରି ସେ ବ୍ୟକ୍ତ କରିଛନ୍ତି —'ମୋତେ କର ବଂଶୀ ତବ ବଜାଇବ ଭୈରବରାଗିଣୀ । ରବୀନ୍ଦ୍ରନାଥଙ୍କ 'ନିର୍ଝରେର ସ୍ୱପ୍ନଭଙ୍ଗ' କବିତାର ଛାୟା ଏହା ଉପରେ ସ୍ପଷ୍ଟ ।

'ସୃଜନ ସ୍ୱପ୍ନ', 'ପ୍ରଳୟ ପ୍ରେରଣା' ମଧ୍ୟରେ ଭାବାତ୍ମକ ବିରୋଧ ଥିଲା ପରି ମନେ ହୁଏ । ସତେ ଯେପରି ଗୋଟିଏ କ୍ରିୟା, ଅନ୍ୟଟି ପ୍ରତିକ୍ରିୟା; ଗୋଟିଏ ଦୁର୍ଦ୍ଧର୍ଷ ଗତି, ଅନ୍ୟଟି ନିର୍ଜୀବ ସ୍ଥିତି । 'ସେ ଦିନ ମୋର ଛଦମ ଭୂଷା', 'ପ୍ରଳୟ କଥା ପ୍ରଳାପ ସମ', 'ଧ୍ୱଂସଲୀଳା ରହୁ ଗୋ ଦୂରେ', 'ମିଥ୍ୟା ମୋହ ଦିନ ସେ'ରେ ଏହା ପ୍ରକାଶିତ । ଜୀର୍ଣ୍ଣ, ପୁରାତନର ଧ୍ୱଂସ, ନୂତନସର୍ଜନ, ଜୀବନର ଦୁଇଟି ଦିଗ । ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗଦେଇ ପ୍ରଳୟ ଘଟେଇବା କବି ପକ୍ଷରେ ସମ୍ଭବ ନୁହେଁ । ସେ ବିପ୍ଳବର ନେତୃତ୍ୱ ନେଇ ନ ପାରନ୍ତି; ସେ ବିଜନତାପ୍ରେମୀ, ସ୍ୱପ୍ନ-ବିଳାସୀ କବି ମାତ୍ର । ଏ ଚେତନା ତାଙ୍କର ଜାଗ୍ରତ ହୋଇଅଛି ।

'ଘଡ଼ିକନ ଥରେ ଗଲେ ଆଉ ଆସେନା' ସେ କାଳର ଗୋଟିଏ ଶ୍ରେଷ୍ଠ ଗୀତିକବିତା । ଏହା ଯେପରି କରୁଣ ସେହିପରି ମଧୁର । ହରାଇବାର କାରୁଣ୍ୟ

ପ୍ରାପ୍ତିର ମାଧୁରୀକ ଶତଗୁଣିତ କରିଅଛି । ଯେପରି କୋମଳ କାନ୍ତ ପଦଯୋଜନା, ସେହିପରି ଭାବକୁ ଘେନିଲା ଭଳି ଲଳିତ ମଧୁର ଛନ୍ଦ । ଯେପରି ଯୌବନ ଓ ପ୍ରଣୟର ଚେତନା, ସେହିପରି ମର୍ମଚ୍ଛେଦୀ ବିଚ୍ଛେଦ ଓ ମୃତ୍ୟୁର ଯାତନା । ଏହି କବିତାଟି କେହି ଥରେ ପଢ଼ି ତୃପ୍ତ ହୁଏ ନାହିଁ, ଥରେ ପଢ଼ିଲେ ଜୀବନରେ କେବେ ବିସ୍ମୃତ ହୋଇଯାଏ ନାହିଁ ।

'ଯଉବନ ଥରେ ଗଲେ ଆଉ ଆସେନା
ବିଧୁର ପରାଣପୁରେ ଝୁରେ ବାସନା ।
ପରଥମ ପ୍ରଣୟ ଗୋ ସମରରଙ୍ଗୀ
ବିରହ ଦୀରଘ ଶ୍ୱାସ ମରମଭଙ୍ଗୀ ।
ବରଷକେ ଥରେ ଆସେ ମଧୁ ଚଇତ
ବିରହିଣୀ ଧରଣୀର ପ୍ରାଣ ଦଇତ ।
ଜଗତେ ତ ହଜେନା କିଛି ହଜେ ଜୀବନେ
ବାହାରେ ବେଦନା ନାହିଁ, ବେଦନା ମନେ ।'

ଅନ୍ନଦାଙ୍କ ଓଡ଼ିଆ କବିତା ମଧ୍ୟରେ ଏଇଟି ସର୍ବଶ୍ରେଷ୍ଠ, ଯାହାକୁ କାଳ କଳଙ୍କିତ କରିପାରିନାହିଁ; ଶିଶିରସ୍ନାତ ସଜ ଫୁଲ ପରି ଏହା ଏବେ ଝଟକୁଛି ।

ସବୁଜ ପତ୍ର, ଗୋଲାପ ପତ୍ର, ଆସ୍ମାନପତ୍ରର ଅବତାରଣା ମନକୁ ରୂପପରୀ-କଥା ସ୍ତରକୁ ଘେନିଯାଏ । ସ୍ୱପ୍ନ ଏ ଜାତୀୟ କବିତାରେ ଏକ ଅରୁଚିକର ବିଳାସ ହୋଇପଡ଼ିଛି, କଳ୍ପନା ଭରରେ ଭାରାକ୍ରାନ୍ତ ଏ କବିତା ଏ ଯୁଗରେ ଅଚଳ ।

'ଫୁଟିଅଛି ଯଉବନ ଫୁଲ ମୋର ଅଙ୍ଗେ
କେଉଁ ଫୁଲ ସରି ଏହା ସଙ୍ଗେ ?'

ଉଚ୍ଛଳ ଯୌବନ ପ୍ରତି ତରୁଣତରୁଣୀଙ୍କି ସଚେତନ କରେଇବା ରୋମାଣ୍ଟିକ୍ ଯୁଗର ଏକ ସ୍ୱାଭାବିକ ଗୀତ—

'ସବୁ ତ ରହିବ, ଆହା ନ ଥିବ ମୁଁ ଏକା ଗୋ
ଏ ମଧୁ ଧରଣୀ ମୋର ଥରଟିଏ ଦେଖା ଗୋ ।'

ଦୁର୍ଲ୍ଲଭର ଲାଭ, ପ୍ରାପ୍ତକୁ ହରାଇବାର ଶଙ୍କା କରୁଣତାର ସୂତ୍ରରେ ମଧୁରତାକୁ ଗୁନ୍ଥି ଦେଇଅଛି ।

କବିଙ୍କ ମନରେ ଦ୍ୱନ୍ଦ୍ୱ ଜାତ ହୋଇଅଛି—କବି ହେବେ ନା ହେବେ କର୍ମୀ । ପରୋକ୍ଷ ନା ପ୍ରତ୍ୟକ୍ଷଭାବରେ ଦେଶ ଓ ଜାତିର ସେବା କରିବେ ? ପତିତ ମଥିତ ଦେଶ ନାନାଭାବରେ ତାଙ୍କର ସେବା ଲୋଡ଼ୁଥିବାବେଳେ ଅଳସ ସ୍ୱପ୍ନରେ ନିମଜ୍ଜିତ ହୋଇ ରହିବା ତାଙ୍କ ପକ୍ଷରେ ଏକ ଅନ୍ଧ ବିଳାସ । ବାସ୍ତବ ଜଗତର

ଆହ୍ୱାନ ଏଡ଼ି ଯିବାକୁ ସେ ଚାହାନ୍ତି ନାହିଁ । ଅନ୍ତରରେ ପୀଡ଼ିତ ପ୍ରତି ସମବେଦନା ଯେପରିକି ବ୍ୟାକୁଳ ହୋଇ ଉଠିଛି—

'ସୁଦୂରପିଆସୀ ମୁଁ, ସଖି, ଅସୀମ ପିପାସୁ
ମୁଁ କି ପାରେ କମଳର କକ୍ଷ ପୃଷ୍ଠେ ବସି ?
× × ×
ପାସୋରିବି ଦୂରେ ଫିଙ୍ଗି ଅଳସ କବିତା
ବାମ କରେ ପୋଛି ଦେବି ଶୋକ, ଆନ କରେ
ଭାଙ୍ଗିବି, ଗଢ଼ିବି ବିଶ୍ୱ, ବଞ୍ଚେ ଅବା ମରେ ।'

କବିଙ୍କ ମନରେ ନେତୃତ୍ୱ ଓ କବିତ୍ୱର, ସେବା ଓ ସ୍ୱପ୍ନର ସଂଘର୍ଷ ଅତି ଚମତ୍କାର ଭାବେ ରୂପାୟିତ ହୋଇଅଛି । ସେ ବାଛି ନେଇଛନ୍ତି ଏକ ସ୍ଥିର, ଶାନ୍ତ ଜୀବନ, ବାତ୍ୟା ବିକ୍ଷୋଭରୁ ଦୂରରେ । ତେଣୁ ପ୍ରକୃତି ହୋଇଛି ତାଙ୍କର ସଙ୍ଗିନୀ । ବିଶ୍ୱପ୍ରକୃତି ସଙ୍ଗେ ମିଶିବାର ଉନ୍ମାଦନା 'ଏ ଜୀବନ ଦେଲା ମୋତେ କିଏ'ରେ ପ୍ରକାଶିତ ହୋଇଅଛି । ନିତ୍ୟନବ ଅନୁଭୂତିଲାଭର କ୍ଷୁଧା ତାଙ୍କୁ ବିଚଳିତ କରିଛି । ଏ ବିଶାଳ ଜଗତର ଏକ ଆହ୍ୱାନ, ବହୁ ଜୀବନ ଆସ୍ୱାଦନ ଲାଗି ଏକ ଗଭୀର ବ୍ୟାକୁଳତା, ବହୁ ସଙ୍ଗେ ଏକୀଭୂତ ହେବାର ଏକ ଉନ୍ମାଦନା ।

'ଏକ ପ୍ରାଣ କାନ୍ଦି ଉଠେ ବହୁ ପ୍ରାଣ ପାଇଁ
ବହୁ ପ୍ରାଣ ଦେବି କିଏ ? ବହୁ ପ୍ରାଣ କାହିଁ ?'
'ବହୁ ଜୀବନର ବହୁ ବିଚିତ୍ର ମଦିରା,
ପାନ ଅଭିଳାଷେ ଝୁରେ ଶିରା ଉପଶିରା,
ପ୍ରାଣ କ୍ଷୁଧା ଲେଢ଼େ ପ୍ରାଣ ସୁଧାର ବିସ୍ମୃତି
ପ୍ରାଣତୃଷା ତୃପ୍ତି ଚାହେଁ ଅଜସ୍ର ପାନୀୟ
ଏ ଲାଳସା, ଏ ଜୀବନ ଦେଲା ମୋତେ କିଏ ?'

'ସବିତା' ଉଦ୍‌ବୋଧନମୂଳକ କବିତା । ଏଥିରେ ତନ୍ଦ୍ରାଳସ୍ୟ ତ୍ୟାଗ କରି ଆଲୋକର ପୃଥିବୀ ଗଢ଼ିବା ଲାଗି ସେ ତରୁଣତରୁଣୀଙ୍କି ଆହ୍ୱାନ କରିଛନ୍ତି । 'କୌଣସି ପ୍ରିୟା ପ୍ରତି କୌଣସି ପ୍ରିୟ'ରେ କବି ଆନନ୍ଦବାଦୀ ହୋଇଛନ୍ତି । ଜରା ମୃତ୍ୟୁ ଓ ବ୍ୟାଧି ମଧ୍ୟରେ ସେ ଆନନ୍ଦର ସୁରଧୁନୀ ପ୍ରବାହିତ ହେବାର ଦେଖି-ପାରିଛନ୍ତି । ଏହି ଦର୍ଶନ ତାଙ୍କ ବଙ୍ଗଳା କବିତା, ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମଧ୍ୟରେ ପ୍ରକାଶ ପାଇଅଛି । ଦୁଃଖଶୋକ, ଜରାବ୍ୟାଧିର ସଂସାର, ଚିର ଅଶ୍ରୁରେ ଆପ୍ଲୁତ, କ୍ଷୀଣ, ମଳିନ । କାବ୍ୟ କବିତାରେ ପୁଣି ଏହାକୁ ରୂପାୟିତ କରି ଲାଭ କଣ ? ପାଠକ ସନ୍ତାପିତ ହେବ ମାତ୍ର । ଧୂଳି, ପଙ୍କର ଆବର୍ଜନା ମଧ୍ୟରେ ଚିର ଆନନ୍ଦର

ଚିନ୍ମୟ ମୂର୍ତ୍ତି ଅଙ୍କନ କରିବା କବିର କାର୍ଯ୍ୟ । ବସ୍ତୁତଃ ଏହା ଜୀବନର ଲକ୍ଷ୍ୟ । ଆନନ୍ଦରୁ ଜଗତର ଜନ୍ମ, ଆନନ୍ଦରେ ତାର ପ୍ରବାହ, ଆନନ୍ଦରେ ତାର ବିଲୟ । ଅନ୍ନଦାଶଙ୍କର ଏଇ ଆନନ୍ଦ ଦର୍ଶନରେ ବିଶ୍ୱାସୀ ।

ସେ ଯୌବନ, ପ୍ରଣୟ ଓ ସୌନ୍ଦର୍ଯ୍ୟର ପୂଜାହାରୀ । ତାଙ୍କ ପ୍ରାଣର ଉଦ୍‌ବେଳ ଅର୍ଘ୍ୟ ସେ ଢାଳି ଦେଇଛନ୍ତି—

'ଅଧୀର ଆକୁଳ ଚିତ୍ତ ଯୌବନ ବିଜୟ ଗୀତ ଗାଏ'

ଉଚ୍ଛ୍ୱସିତ ତରୁଣ ଅନ୍ତର ତାଙ୍କର ଆକାଶ ପରି ଦିଗ୍‌ଦିଗନ୍ତେ ପ୍ରସାରିତ ହୋଇପଡ଼ିଛି । ରୂପାୟିତ ହୋଇଛି ମଳୟ ମର୍ମର ପରି ଅନ୍ତର୍ଗତ ଆନନ୍ଦ ।

'ମରମ ସଙ୍ଗୀତ ମୋର ଆଜ
ଶତତନ୍ତ୍ରୀ ବିଶ୍ୱବୀଣା ବକ୍ଷେ ଉଠେ ଶତ ତାନେ ବାଜ ।'

ହୃଦୟର ହିଲ୍ଲୋଳ ଅବାରିତ ଗତିରେ ପ୍ରବାହିତ, ଯେପରି ସ୍ୱଚ୍ଛନ୍ଦ ସେହି-ପରି ଦୁର୍ଦ୍ଦମ । ଆତ୍ମବିସ୍ମୃତି ସଙ୍ଗେ ସଙ୍ଗେ ଆତ୍ମବିସ୍ତୃତି ଯେପରିକି ଏଥିରେ ଛନ୍ଦାୟିତ ହୋଇଅଛି । କବି ଆତ୍ମାର ଏକ ବିରାଟ ସାର୍ବଜନୀନ ରୂପ ହୃଦୟକୁ ବିମୁଗ୍ଧ କରେ ।

କବିତାପାଠ ପରେ ଚିରତାରୁଣ୍ୟର ପ୍ରଲେପ, ଚିର ସବୁଜଶ୍ରୀ ଯେପରିକି ଅନ୍ତରରେ ଲିପ୍ତ ହୋଇଯାଏ, ଅଗ୍ନିଶିଖାରେ । ଯେପରି ଆତ୍ମା ଉଦ୍ଦୀପ୍ତ ହୋଇ-ଉଠେ । ବିଶ୍ୱ ପ୍ରତି କବିର ଆତ୍ମା ଯେପରିକି ଉନ୍ମୁଖୀ, ସୂର୍ଯ୍ୟମୁଖୀ ଏକ ଅନନ୍ତ ଉଜ୍ଜ୍ୱଳ ସୂର୍ଯ୍ୟଶ୍ରୀକି ଅନାଇ ରହିଅଛି ।

ଗଦ୍ୟ ରଚନାରେ ତାଙ୍କ କବିତାର ଛବି ସ୍ପଷ୍ଟତର ହୋଇଅଛି । ଗଦ୍ୟ ସତେ ଯେପରି କି ତାଙ୍କ କବିତାର ଏକ ବିଶ୍ଳେଷଣ । କେଉଁଠି ବା ଗଦ୍ୟ ପଦ୍ୟ ପରସ୍ପରର ପରିପୂରକ । ଗଦ୍ୟରେ ଅନ୍ନଦାଶଙ୍କରଙ୍କ କାବ୍ୟାଦର୍ଶ, ଜୀବନଦର୍ଶନ ଓ ସମାଜସଂସ୍କାରପ୍ରବୃତ୍ତି ସ୍ପଷ୍ଟତର ରୂପ ପାଇଅଛି ।

'ସାହିତ୍ୟିକା'ରେ ପ୍ରକୃତ ସମାଲୋଚନା କାହାକୁ କହନ୍ତି, ଲେଖକ ବୁଝାଇଛନ୍ତି । ତାଙ୍କ ମତରେ ସମାଲୋଚନାର ଅର୍ଥ ଦୋଷନିର୍ଦ୍ଦେଶ ବା ଗୁଣନିର୍ଣ୍ଣୟ ନୁହେଁ, ନିନ୍ଦା ବା ପ୍ରଶସ୍ତି ନୁହେ । ଏହାର ଅର୍ଥ ରଚନାର ମର୍ମୋଦ୍‌ଭେଦ କରିବା; ସମାଲୋଚକ ବି ଜଣେ ସ୍ରଷ୍ଟା, ସୃଷ୍ଟିକାର୍ଯ୍ୟର ମୁଖ୍ୟ ସହାୟକ । ସେ କବିତାର ରସ ଗ୍ରହଣ କରେ, ତାକୁ ବିତରଣ କରେ । ମନ୍ଦ ସମାଲୋଚକ କୁତ୍ସା ରଟନା କରେ ମାତ୍ର ।

କିନ୍ତୁ ସମାଲୋଚନାରେ ଲେଖକ ସ୍ରଷ୍ଟାସ୍ତରକୁ ଉନ୍ନୀତ ହୋଇପାରି ନାହାନ୍ତି । ସୃଷ୍ଟିର ଉପାଦାନରେ ନିର୍ମିତ ତାଙ୍କ 'ବସନ୍ତ ଗାଥା' ଆଉ ଗୋଟିଏ

ସୃଷ୍ଟି ହୋଇପାରି ନାହିଁ । ଉଦ୍ଧୃତିବହୁଳ ଏହି ଦୀର୍ଘ ପ୍ରବନ୍ଧରେ ସେ କବିଙ୍କ ଜୀବନ ଦର୍ଶନ, କବିତାର ଛନ୍ଦ ଓ ବ୍ୟୁତ୍ପତ୍ତି ଦେଖାଇ ଅଛନ୍ତି । ପରିଶେଷରେ ସେ ରାଧାନାଥ ଯୁଗ କବିତା ବିଷୟରେ ସ୍ୱ-ଅଭିମତ ପ୍ରକାଶ କରିଛନ୍ତି, ଯାହା ଗ୍ରହଣ-ଯୋଗ୍ୟ ।

ଏ ଦେଶରେ 'ଚିଲିକା', 'ହିମାଚଳେ ଉଦୟୋତ୍ସବ' ଭଳି କବିତା ଅଛି । କିନ୍ତୁ ବିଶ୍ୱକବିମଣ୍ଡଳୀରେ ସ୍ଥାନ ଲଭିବାଭଳି କବି ନାହାନ୍ତି ।

'ପଦ୍ମପାଖୁଡ଼ା' ଏକ ପୂର୍ଣ୍ଣାଙ୍ଗ ସମାଲୋଚନା ନୁହେଁ, ଏହାକୁ 'ଶଲ୍ୟ' କହିଲେ ଚଳେ । କିନ୍ତୁ ଏଇ କ୍ଷୁଦ୍ର ପରିସର ମଧ୍ୟରେ କବି ପଦ୍ମଚରଣଙ୍କ ବୈଶିଷ୍ଟ୍ୟ ହୃଦୟଙ୍ଗମ କରିପାରିଛନ୍ତି । ମନେହୁଏ, ତାଙ୍କ କବିତାକୁ ସମାଲୋଚକ ଗୋଟିଏ ଚମ୍ପାଫୁଲ ସଙ୍ଗେ ତୁଳନା କରିଛନ୍ତି ।

'ତାର ଅଳଙ୍କାର ଜମକ ନାହିଁ, ତା ଶାଢ଼ୀ ଦେହରେ କାରିଗରି ନାହିଁ, ଅଳ୍ପ କେତୋଟି ରଙ୍ଗ, ସ୍ପଷ୍ଟ କେତୋଟି ରେଖା ମାତ୍ର; ନା ଅଛି କୌଶଳ, ନା ଅଛି ବାହୁଲ୍ୟ, ନା ଅଛି ବୈଚିତ୍ର୍ୟ, ଚମ୍ପାଫୁଲ ମନଟି ସେମିତି—ସେଥିରେ ଯୌବନର ଉନ୍ମାଦନା ନାହିଁ, କୈଶୋରର ସ୍ନିଗ୍‌ଧତା ଅଛି; ବୟସର ରୂପ ପଡ଼ି-ନାହିଁ । ମନେ ହୁଏ ଚିରକିଶୋରୀ । ପଦ୍ମଚରଣଙ୍କୁ ଯଦି ପ୍ରବୀଣ ପୁରୁଷ ବୋଲି ନ ଜାଣିଥାନ୍ତି, ତେବେ ଭାବନ୍ତି—ଏ କବିତାଗୁଡ଼ିକ କେଉଁ କିଶୋରର ଲେଖା, କେଉଁ କିଶୋରୀ ପାଇଁ ।'

'ସମର ଓ ସାହିତ୍ୟ' ପ୍ରବନ୍ଧରେ ଅତି ପ୍ରାଚୀନ ଯୁଗରେ ସମର କିପରି ସାହିତ୍ୟର ପ୍ରାଣ ଥିଲା, ମୃଗୟା କିପରି ଯୁଦ୍ଧ ଓ ଯୁଦ୍ଧ କିପରି ଏକ ପ୍ରକାର ମୃଗୟା ଥିଲା, ସେହି ଗଣମୃଗୟା ବା ଆଦିମ ପଦ୍ଧତିର ଯୁଦ୍ଧ କିପରି ଗୁହା ଚିତ୍ରରେ ଅଙ୍କିତ ହୋଇଅଛି, ତାହା ଲେଖକ ଦର୍ଶାଇଛନ୍ତି ।

ଐତିହାସିକ ଯୁଗ ରାଜ୍ୟବିସ୍ତାର ଓ ଉପନିବେଶ ସ୍ଥାପନର ଯୁଗ । ଏହି ସମୟରେ ରାମାୟଣ, ମହାଭାରତ, ଏଲିଆଡ଼୍, ଓଡ଼ିସୀ ପ୍ରଭୃତି ପୃଥିବୀର ଶ୍ରେଷ୍ଠ ସମରକାବ୍ୟଚତୁଷ୍ଟୟ ପ୍ରକାଶିତ ହୋଇଥିଲା । ମଧ୍ୟ ଯୁଗରେ ଚେଙ୍ଗିସ୍ ଖାଁ ମଧ୍ୟ-ଏସିଆରୁ ମଧ୍ୟ-ଇଉରୋପ ପର୍ଯ୍ୟନ୍ତ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ଏହି ଯୁଗରେ ପୃଥ୍ୱୀରାଜ ରାସୋ ଓ ରାଜସ୍ଥାନର ଚାରଣ ଗୀତମାନ ରଚିତ ହୋଇଥିଲା ।

ସଂସ୍କୃତ ନାଟ୍ୟସାହିତ୍ୟରେ ସମରର ସ୍ଥାନ ଗୌଣ; ପ୍ରେମ ଓ ସୌନ୍ଦର୍ଯ୍ୟ ମୁଖ୍ୟ ସ୍ଥାନ ଅଧିକାର କରିଥିଲା । ଆଧୁନିକ ଯୁଗରେ ଗୁଳି ବାରୁଦର ଉଦ୍ଭାବନ, ଶିଳ୍ପବିପ୍ଳବ, ଇଉରୋପୀୟ ଓ ବଙ୍ଗୀୟ କବିମାନଙ୍କର ସମରସାହିତ୍ୟର ସଂକ୍ଷିପ୍ତ ବିବରଣୀ ଦେବା ପରେ ଓଡ଼ିଶାରେ ସାରଳା ଦାସଙ୍କଠାରୁ ଆରମ୍ଭ କରି ବ୍ରଜନାଥ

ବଡ଼ଜେନାଙ୍କ ପର୍ଯ୍ୟନ୍ତ, ତାପରେ ମଦ୍ଧାସାନ୍ଦା, ଗୋଦାବରୀଶ ଓ ଅଶ୍ୱିନୀକୁମାରଙ୍କ କେତେକ ନାଟକର ସୂଚନା ଓ ଲଛମାରେ ଫକୀରମୋହନଙ୍କ ଯୁଦ୍ଧବର୍ଣ୍ଣନାର ସୂଚନା ଦେଇଅଛନ୍ତି । ଇଂରାଜୀ ଶୈଳୀରେ ଭାବ ପ୍ରକାଶ ଓ ବହୁ ଇଂରାଜୀ ଶବ୍ଦର ବ୍ୟବହାର ଯୋଗୁଁ ପ୍ରବନ୍ଧଟି ବିକଳାଙ୍ଗ ହେଲେ ମଧ୍ୟ ଉନ୍ନତ ଭାବସମ୍ଭାରରେ ଏହା ସମୃଦ୍ଧ ।

'ଭାରତର ଶିଳ୍ପ' ପ୍ରବନ୍ଧଟି Percy Brown ଙ୍କ 'Indian Painting', Havellଙ୍କ 'Indian Sculpture and Printing' ଅନୁସରଣରେ ଲିଖିତ । ଏଥିରେ ଲେଖକ ଭାରତୀୟ ଶିଳ୍ପର ଉତ୍ପତ୍ତି, ବିଭିନ୍ନ ଯୁଗରେ ବିଭାଗ କରି ଇଉରୋପୀୟ ଶିଳ୍ପ ସହିତ ଏହାର ତୁଳନାତ୍ମକ ଆଲୋଚନା କରିଛନ୍ତି । ଆଦି ଯୁଗ, ବୌଦ୍ଧ ଯୁଗ, ମଧ୍ୟ ଯୁଗ, ମୋଗଲ ଯୁଗ ଓ ରାଜପୁତ ଯୁଗ ଶିଳ୍ପର ବୈଶିଷ୍ଟ୍ୟ, ଆଧୁନିକ ଯୁଗରେ ପ୍ରାଚୀନ ଶିଳ୍ପର ପୁନରୁଦ୍ଧାର ପ୍ରୟାସରେ ଓ ପାଶ୍ଚାତ୍ୟ ଆଦର୍ଶର ଅନୁକରଣରେ କିପରି ଏ ଯୁଗର ଶିଳ୍ପ ସଂଗଠିତ ହୋଇଅଛି, ଉତ୍କଳୀୟ ଚିତ୍ର ଗୌରବ କିପରି ଅଜ୍ଞାତ ଓ ହାଭେଲ୍‌ଙ୍କ ଗ୍ରନ୍ଥରେ ତାର ଉଲ୍ଲେଖ ନାହିଁ, ତାହା ଲେଖକ ଉଲ୍ଲେଖ କରିଅଛନ୍ତି । ସୀତାବିଞ୍ଜର ପାଦଦେଶୀୟ ଭିତ୍ତିଚିତ୍ର ଅବଶ୍ୟ ସେତେବେଳକୁ ଆବିଷ୍କୃତ ହୋଇନାହିଁ ।

ଏହି ପ୍ରବନ୍ଧଟି ମୌଳିକ ଚିନ୍ତାର ମୁଦ୍ରା ବହନ କରେ ନାହିଁ; ଏହା ମୁଖ୍ୟତଃ ସମସାମୟିକ ଶିଳ୍ପ ଚିନ୍ତାର ଏକ ସଂକଳନ । କିନ୍ତୁ ଦୁରୂହ ଶିଳ୍ପତତ୍ତ୍ୱର ସେ ଯେ ଜଣେ ରସିକ, ତାହା ଏହି ପ୍ରବନ୍ଧର ରୂପାୟନରେ ସ୍ପଷ୍ଟ ହୋଇଅଛି ।

'ନର ଚକ୍ଷୁରେ ନାରୀ' ପ୍ରବନ୍ଧରେ ନାରୀକୁ କିପରି ଅର୍ଦ୍ଧେକ ମାନବୀ, ଅର୍ଦ୍ଧେକ କଳ୍ପନା କିମ୍ବା ଦେବୀ ବା ଦାନବୀ ରୂପେ ଚତ୍ରିତ କରାଯାଇଛି, ଯୁଗ ଯୁଗ ଧରି ନାରୀ ସହିତ ନର ବାସ କରୁଥିଲେ ବି ତାକୁ କିପରି ବୁଝି ପାରିନାହିଁ, ଲେଖକ ତାହା ବୁଝାଇଛନ୍ତି । ପ୍ରକୃତ ସ୍ୱାତନ୍ତ୍ର୍ୟ ଲାଭ କଲେ ଯାଇ ନାରୀ ହେବ ପୁରୁଷର ବାନ୍ଧବୀ, ସହଚରୀ ।

'ଏଲେନ୍‌କେଇ' ସ୍ୱିଡ଼େନର ସୁଲେଖିକା । ତାଙ୍କ ମତରେ ପ୍ରେମ ହେଉଛି ନାରୀ ସମସ୍ୟାର ମୂଳକଥା । ପ୍ରେମର ସ୍ୱାଧୀନତାରେ ନାରୀର ସ୍ୱାଧୀନତା । ପ୍ରେମର ପରିଣତି ମାତୃତ୍ୱ । ତାର ସହଜ ଓ ସ୍ୱାଭାବିକ ସାର୍ଥକତାରେ ନାରୀର ସାର୍ଥକତା ।

ସ୍ୱିଡେନର କେତେକ ଯୁବକ ଧର୍ମ ଓ ଯୌନ ନୀତି ସଂପର୍କରେ ଡାରଉଇନ୍‌ଙ୍କ ମତକୁ ସ୍ୱାଧୀନ ଭାବରେ ଆଲୋଚନା କରିବା ଅପରାଧରେ କାରାଦଣ୍ଡିତ ହୋଇଥିଲେ । ଏହି ଅନ୍ୟାୟ ଏଲେନ୍‌କେଇଙ୍କ ସୁପ୍ତ ଶକ୍ତିକୁ ଜାଗ୍ରତ କଲା । ଏହାହିଁ ତାଙ୍କୁ କଲା ନେତ୍ରୀ ଓ ଲେଖିକା ।

ଓଡ଼ିଶାରେ ନାରୀ ଜାଗରଣ ଉଦ୍ଦେଶ୍ୟରେ ଲେଖକ ଏଇସବୁ ପ୍ରବନ୍ଧ ଲେଖୁଥିଲେ । ଏହି ପ୍ରବନ୍ଧଟି 'Love and Marriage' ଗ୍ରନ୍ଥସ୍ଥିତ ହାଭ୍‌ଲକ୍ ଏଲିସ୍‌ଙ୍କ ଭୂମିକାର ଅନୁବାଦ, ସୁଖପାଠ୍ୟ ।

ନାରୀ ବାଲ୍ୟରେ ପିତାର କ୍ରୀଡ଼ନକ, ଯୌବନରେ ପତିର; ଚିର ଜୀବନ ସେ ଖିଆଲି ଖେଳର କଣ୍ଢେଇ । ଇବ୍‌ସନ୍‌ଙ୍କ 'ଡଲସ୍ ହାଉସ୍'ର ସାହାଯ୍ୟରେ ସେ ଲେଖିଛନ୍ତି, ଆମ ଦେଶର ନାରୀସମସ୍ୟାର ସମାଧାନରେ ଏହା ସହାୟକ ହେବ ବୋଲି ।

'ସମାଜ ସଂସ୍କାରର କ ଖ'ରେ ଅସ୍ପୃଶ୍ୟତା ଦୂରୀକରଣ, ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପ୍ରଭୃତି ତତ୍କାଳୀନ ଜାତୀୟ ସମସ୍ୟାର ଆଲୋଚନା କରିଛନ୍ତି ।

୧୯୬୪ ଡିସେମ୍ବର ମାସରେ ଲେଖକ ଶାନ୍ତିନିକେତନ ଯାତ୍ରା କରିଥିଲେ । ଦେଶୀ ବିଦେଶୀ ବହୁ ମନୀଷୀଙ୍କ ସହିତ ତାଙ୍କର ସାକ୍ଷାତ, ଗୁରୁ ଗୁରୁଦୀଙ୍କ କର୍ମତତ୍ପରତା, ଶାନ୍ତିନିକେତନ ମେଳା ଓ ସପ୍ତପର୍ଣ୍ଣୀତଳରୁ ତଳର ପ୍ରାର୍ଥନା ସମ୍ପର୍କରେ ଏକ ସୁନ୍ଦର ଭ୍ରମଣ କାହାଣୀ ଲେଖିଛନ୍ତି । ଏହା ତାଙ୍କର ପ୍ରଥମ ଭ୍ରମଣ କାହାଣୀ ହୋଇପାରେ, ଏ ଢଙ୍ଗରେ ତାଙ୍କ ପ୍ରତିଭାର ବିକଶିତ ରୂପ 'ପଥେ ପ୍ରବାସେ'ରେ ମିଳେ ।

'ଉତ୍କଳ ସାହିତ୍ୟ'ର 'ଯୁଗବାଣୀ' ବିଭାଗରେ ସେ ଆନାତୋଲ୍ ଫ୍ରାନ୍‌ସ, ହାର୍ଡ଼ି, ଜୋସେଫ୍‌କନ୍‌ରାଡ଼, ଯେଟ୍‌ସ୍, ରୁଡ଼୍ୟାର୍ଡ଼ କପ୍‌ଲିଙ୍ଗ୍, ରୋମାଁ ରୋଲାଁ, ମେଟରଲିଙ୍କ, ବାର୍ନାଡଶ୍ ପ୍ରଭୃତି ବିଶ୍ୱକବି ଓ ଲେଖକମାନଙ୍କ ସମ୍ପର୍କରେ ଆଲୋଚନା କରିଥିଲେ । ଏଇମାନଙ୍କ ଚିନ୍ତାରେ ତାଙ୍କ ଆଦ୍ୟ ସାହିତ୍ୟରଚନା ପୁଷ୍ଟ ହୋଇଥିଲା । 'ଯୁଗବାଣୀ'ରେ ସେ ଲେଖିଥିଲେ—"ଯେପରି ସମୁଦ୍ର ବହୁ ନଦୀର ପ୍ରାଣପ୍ରଦ ବାରି ପାନ କରି ହୁଏ ସାଗର, ସେହିପରି ଏ ଯୁଗର ମହାକବି ।" ବିଶ୍ୱସାହିତ୍ୟ ସହିତ ସମ୍ପର୍କ ନ ରଖି ଏ ଯୁଗରେ କେହି ମହାକବି ହୋଇ ପାରିବେ ନାହିଁ । ଜଣେ ବିଶ୍ୱକବି ବା ମହାନ୍ ଲେଖକ ହେବା ଅନ୍ନଦାଶଙ୍କରଙ୍କର ଉଚ୍ଚାକାଂକ୍ଷା ଥିଲା ଓ ସେଥିଲାଗି ସେ ବହୁ ଅଧ୍ୟୟନ ଓ ଅନୁଶୀଳନ କରୁଥିଲେ ।

'ଉତ୍କଳସାହିତ୍ୟ'ରେ ତାଙ୍କର ତିନିଖଣ୍ଡି ଖୋଲାଚିଠି ପ୍ରକାଶିତ ହୋଇଅଛି । ପ୍ରଥମ ଚିଠିଟି ୧୯୬୪ ମସିହା ସେପ୍‌ଟେମ୍ବର ୨୮ ତାରିଖରେ ଲେଖା । 'ପ୍ରଭାତୀ ତାରା' ସମ୍ବୋଧିତା; ବୋଧହୁଏ ଏକ ପ୍ରତୀକନାମ, ନାରୀ ଜାଗରଣର ସୂଚକ । ପତ୍ରର ତନ୍ମୟତା ଏଥିରେ ନାହିଁ, ଏହାକୁ ଏକ ପ୍ରବନ୍ଧ ବୋଲିଯାଇ ପାରେ । ଆଧୁନିକ ଯୁଗବାଣୀର ବାହକ କବି ସ୍ମରଣ ପାଲଟି ଯାଇଛନ୍ତି—

"ତପସ୍ୟା କରିବାକୁ ପ୍ରସ୍ତୁତ ହୁଅ, ପ୍ରଭାତ, ତପସ୍ୟା କରିବାକୁ ପ୍ରସ୍ତୁତ ହୁଅ । ଜୀବନରେ ତପସ୍ୟାର ସ୍ଥାନ କେତେ ବଡ଼, ତାହା ମୁଁ କ୍ରମଶଃ ବୁଝିପାରୁଚ ।"[১]

"ସ୍ଥିରହୋଇ ଭାବ, କେଉଁ ମନ୍ତ୍ର ତୁମ ଜୀବନକୁ ନିୟନ୍ତ୍ରିତ କରିବ—ସାମ୍ୟ, ମୈତ୍ରୀ, ସ୍ୱାଧୀନତା ନା self-realisation, ନା ସମାଜ ସଂସ୍କାର ।"

"ଆପାତତଃ ମୋର କାର୍ଯ୍ୟ ନାରୀସ୍ୱାତନ୍ତ୍ର୍ୟ ଓ ନାରୀର ଅଧିକାର ସମ୍ବନ୍ଧରେ ଲୋକମତ ଗଠନ କରିବା । ସାହିତ୍ୟ ସାହାଯ୍ୟରେ ଓଡ଼ିଆ, ବଙ୍ଗଳା ଓ ଇଂରେଜୀ ଭାଷାରେ ଏହି କାର୍ଯ୍ୟ ମୁଁ ଅବସରକ୍ରମେ ସୃଷ୍ଟି କରୁଚ ।"

"ଗଳ୍ପ ଉପନ୍ୟାସ ସାହାଯ୍ୟରେ Dickens ପ୍ରଭୃତି ସ୍ୱଦେଶର ତଥା ସମାଜର ଅନେକ ଉପକାର କରିପାରିଥିଲେ । 'Problem Novel' ବା ସମସ୍ୟାମୂଳକ ଉପନ୍ୟାସ ଅନ୍ୟାନ୍ୟ ଭାଷାରେ ବାହାରୁଚି । ଅନ୍ୟାନ୍ୟ ଦେଶର ନରନାରୀ ଏହିସବୁ Problem ବିଷୟରେ ଚିନ୍ତା କରୁଛନ୍ତି । ଓଡ଼ିଶାରେ ତୁମେ ଯଦି ପ୍ରେରଣାମୂଳକ ଗୋଟିଏ ସାହିତ୍ୟ ସୃଷ୍ଟି କରିପାରି, ତେବେ ତୁମେ ଅମର ହୋଇଯିବ ।"

ଲେଖକ ଏହି ପତ୍ରରେ 'ଆଲୋକକୁମାର' ଛଦ୍ମନାମ ଗ୍ରହଣ କରିଛନ୍ତି । ନାରୀ ଓ ସମାଜର ବିଭିନ୍ନ ସମସ୍ୟା ପ୍ରତି ଲେଖକଙ୍କ ମନୋଭାବ ଓ ତାଙ୍କ ଲେଖକ ଜୀବନର ଯୋଜନା ସ୍ପଷ୍ଟ ରୂପ ପାଇଅଛି ।

ଦ୍ୱିତୀୟ ପତ୍ରଟି ୧୯୨୪ ମସିହା ଅକ୍ଟୋବର ଅଠର ତାରିଖରେ ଲେଖା; ସମ୍ବୋଧ 'ବଜ୍ରବାଦଲ', ବୋଧହୁଏ ବୈକୁଣ୍ଠନାଥ । ବିଷୟ—ବିବାହର ଆଦର୍ଶ । ତୃତୀୟ ପତ୍ରଟି ୧୯୨୫ ରେ ଲେଖା, ସ୍ଥାନ କପିଳାସ ପାହାଡ଼ । ମାସିକ ପତ୍ରିକାର ସୂଚୀପତ୍ରଟି ପଢ଼ି ଲେଖକ ଓଡ଼ିଆ ସାହିତ୍ୟର ଗତିପ୍ରଗତି କଳନା କରିଛନ୍ତି । ପ୍ରକାଶିତ ଶହେଡ଼ନୋଟି ରଚନା ମଧ୍ୟରୁ ଏକାବନଟି ପଦ୍ୟ । ଅତ୍ୟଧିକ କବିତା ଦେଖି ଆଲୋଚକ ବିଚଳିତ ଓ ବ୍ୟଥିତ ହୋଇ ଲେଖିଛନ୍ତି—

"ବନ୍ଧୁ, ତୁମେ ଯଦି ଭାବୁଥାଅ, ଦେଶରେ କାବ୍ୟଚର୍ଚ୍ଚାର ପ୍ରାଧାନ୍ୟର ଅର୍ଥ ସୌନ୍ଦର୍ଯ୍ୟବୋଧର ଆଧିକ୍ୟ—ତାହାହେଲେ ତୁମେ ଭ୍ରାନ୍ତ—ତୁମେ ସ୍ୱପ୍ନବିଳାସୀ ।"

କଳକାରଖାନା, ଚିମିନିର ଧୂମ, ଷ୍ଟିମାରର ଘର୍ଘରରେ ଜୀବନ ସଂଗ୍ରାମ ତୀବ୍ର ହେବା ସଙ୍ଗେ ସଙ୍ଗେ ଗଦ୍ୟ ବଢ଼ିବ, ସ୍ୱପ୍ନ କମିବ । ଯାହାସବୁ ପ୍ରକାଶିତ ହୁଏ ତାହା ପଦ୍ୟ ନା କବିତା ? ଅଧିକାଂଶ ପଦ୍ୟର ଛନ୍ଦ ପଙ୍ଗୁ, ଭାବ ଦୁର୍ଗୁଣ ! ପଢ଼ିଲେ ମନରେ ଚକ୍ର ପଡ଼େ ନାହିଁ, କିମ୍ବା ହୃଦୟ ରଙ୍ଗ ଧରେନାହିଁ—କାନରେ

ସ୍ୱର ଲାଗିରହେ ନାହିଁ । ଲେଖକ ପଦ୍ୟ ଲେଖି କେଉଁ ସୁଖ ? ପାଠକର ପଦ୍ୟ ପଢ଼ି କେଉଁ ଆନନ୍ଦ ?''

"ଯଦି ଛନ୍ଦବୋଧ ଥାଆନ୍ତା, ଓଡ଼ିଆ କବିତା ଚତୁର୍ଥ ଶ୍ରେଣୀର ନ ହୋଇ ଅନ୍ତତଃ ଦ୍ୱିତୀୟ ଶ୍ରେଣୀର ହୁଅନ୍ତା ।''

'ଖୋଲା ଚିଠି'ରେ ଲେଖକ ପରିସ୍ଥିତିର ପ୍ରଭାବରେ ମ୍ରିୟମାଣ ବନ୍ଧୁଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଛନ୍ତି ଓ ଭବିଷ୍ୟତ ଓଡ଼ିଶାର ଉଜ୍ଜ୍ୱଳତମ ଚିତ୍ର ଦେଖି-ପାରିଛନ୍ତି—ଅସଂଖ୍ୟ ବିଶ୍ୱବିଦ୍ୟାଳୟ, ଅସଂଖ୍ୟ କାରଖାନାର ଚିମିନି, ବିସ୍ତୀର୍ଣ୍ଣ Agricultural Farm !

ତତ୍‌କାଳୀନ ଓଡ଼ିଆ କବି ଓ କବିତା ଉପରେ ଅନ୍ନଦାଶଙ୍କର ଉଚ୍ଚ ଧାରଣା ପୋଷଣ କରି ନାହାନ୍ତି—ସାଧନାର ଅଭାବ, ଭାବର ଦୈନ୍ୟ ଓ ଛନ୍ଦର ତ୍ରୁଟି ଯୋଗୁଁ ଓଡ଼ିଆ କବିତା ନିମ୍ନ ସ୍ତରର ହେଉଅଛି ।

ଅନ୍ନଦାଶଙ୍କର ରୋମାଣ୍ଟିକ, ବାସ୍ତବବାଦୀ କବି । ଧୂସର ବୟସରେ ବି ସେ ସବୁଜ ରହିଛନ୍ତି, ଚିର ସବୁଜ, ଚିର ତାରୁଣ୍ୟର ପୂଜାହାରୀ, ପ୍ରାଣପ୍ରାଚୁର୍ଯ୍ୟରେ ଭରା, ଉତ୍ସାହର ପରିପୂର୍ଣ୍ଣ ଉତ୍ସ, ନବ ନବ ସର୍ଜନରେ ବିଳାସୀ, ଚିର ସଂଗ୍ରାମୀ, କର୍ମତତ୍ପର, ବଳିଷ୍ଠ, ସତେଜ ପ୍ରାଣସ୍ଫୂର୍ତ୍ତିର ଜ୍ୱଳନ୍ତ ପ୍ରବାହ—ଯାହା ନୂତନ ସମାଜ ଗଠନ ଲାଗି ପ୍ରେରଣା ଦିଏ, ମାନବକୁ ନବ ନବ ଭାବରେ ଶିକ୍ଷିତ ଓ ଦୀକ୍ଷିତ କରେ, ସ୍ୱପ୍ନ ଏହି ପ୍ରାଣର ନୀଡ଼, କିନ୍ତୁ ମାଟିର ପୃଥିବୀ ତାର ବିଚରଣ ଭୂମି; ସେ ବନ୍ଦୀକି ମୁକ୍ତ କରେ, ଜମାଟବନ୍ଧା ଅନ୍ଧକାର ଗହ୍ୱରରୁ, ଲଲାଟରେ ଚିର ମୁକ୍ତିର ମୁକୁଟ ପିନ୍ଧାଇ ଦିଏ, ଚିରସଂଗ୍ରାମ ଓ ଚିର ବିଜୟର ତିଳକ ଲଗାଇଦିଏ, ଜ୍ଞାନପିପାସୁ, ସୌନ୍ଦର୍ଯ୍ୟଲିପ୍ସୁ ମୁମୁକ୍ଷୁ ଆତ୍ମା; ଆନନ୍ଦ ତାର ପଥେ ପଥେ, ପଦେ ପଦେ, ସବୁଜର ଅଗଣିତ ପୁଷ୍ପପରି, ଅମାବାସ୍ୟାର ଦୀପାବଳୀ ମହୋତ୍ସବ ପରି ।

—*—

# କୁନ୍ତଳାକୁମାରୀଙ୍କ ଉପନ୍ୟାସ : କାଳ ଓ ତାର କଳନା

"ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ । ଉପାଧାନରେ ଈଷତ୍ ଆନତକପଣ୍ଡ ଅନୁ ଏକ ଦୃଷ୍ଟିରେ ଶେଫାଳୀକୁ ଅନାଇଅଛି । ଉଭୟେ ଏକାକୀ, ମାତ୍ର ପରସ୍ପରର କି ସମ୍ବନ୍ଧ ଉଭୟେ ଅଜ୍ଞାତ । ଭ୍ରାତା ଭଗିନୀ ତୁଲ୍ୟ ବା ତତୋଽଧିକ ପରସ୍ପର ପ୍ରତି ଅନୁରକ୍ତା ଅନୁ ଜାଣେ । ସେ ଶେଫାଳୀର ଭ୍ରାତା ନୁହେଁ, ଶେଫାଳୀ ବିଶେଷ କିଛି ଜାଣେ ନାହିଁ । ଶେଫାଳୀର ଜ୍ଞାନଶୂନ୍ୟ ସ୍ୱଭାବଗତ ବିଶେଷ ଦୋଷ, ସେ ବଡ଼ କ୍ରୋଧୀ । କ୍ରୋଧ ସମୟରେ ଯାହା ମୁହଁରେ ଆସେ ତାହା ସେ କହିଯାଏ । ମାତ୍ର ସେତିକି । ଦୁଇଦଣ୍ଡ ପରେ ସବୁ ଭୁଲିଯାଏ । ଅନୁ ତଦ୍‌ବିପରୀତ, ଶାନ୍ତ ଓ ଦୃଢ଼ ।"

"ଆଜି ବଡ଼ ଅନ୍ଧାରୁ ଝିପିରି ଝିପିରି ଝଡ଼ି କରିଛି, ବେଳ ଦଶଘଡ଼ି ହେଲାଣି, ଛାଡ଼ିବାକୁ ନାହିଁ, ଆକାଶ ଅନ୍ଧାର କରି କଳାହାଣ୍ଡିଆ ମେଘ ଉଠେଇଛି । କାନ୍ଥରେ ଗୋବର ଗାରଟି ମୋଟିକରି ଟାଣି ଦେଇ ଗୋବରହାଣ୍ଡି ରଖୁ ରଖୁ ରସକଳା ରଘୁକୁ ଅନାଇ କହିଲା, ପୁଅ, ଏ ବର୍ଷ କଣ କେଳୁଣୀ ହାତରେ ଅଛୁ ?" (ରଘୁ ଅରକ୍ଷିତ, ପୃ: ୧)

'ଭ୍ରାନ୍ତ' କୁନ୍ତଳାକୁମାରୀଙ୍କ ପ୍ରଥମ ଉପନ୍ୟାସ । ଏହାର ଭାଷା ଗୁରୁଗମ୍ଭୀର ପ୍ରବନ୍ଧର ଭାଷା, ସଂସ୍କୃତ ଶବ୍ଦ ବହୁଳ, ପ୍ରୟାସକ୍ଲିଷ୍ଟ । 'ଭ୍ରାନ୍ତ' ରୁ ରଘୁଅରକ୍ଷିତ ପର୍ଯ୍ୟନ୍ତ ଲେଖିକାଙ୍କ ଉପନ୍ୟାସ ସାଧନାର କଳନା ଉକ୍ତ ଦୁଇଟି ଉଦ୍ଧୃତିରୁ କରିହୁଏ । ବିକାଶ ସ୍ପଷ୍ଟ । ରଘୁଅରକ୍ଷିତର ଭାଷା ସରଳ, ସ୍ୱତଃସ୍ଫୂର୍ତ୍ତି ଓ ସ୍ୱାଭାବିକ ।

କୁନ୍ତଳାକୁମାରୀ ମୁଖ୍ୟତଃ କବି, ଗୀତିକବି । ଉପନ୍ୟାସ ରଚନା ପ୍ରୟାସ ତାଙ୍କର ଦୀର୍ଘକାଳ ସ୍ଥାୟୀ ନୁହେଁ, ମାତ୍ର ଦଶବର୍ଷ ମଧ୍ୟରେ ଏହା ସୀମିତ । ଜୀବନର ଶେଷଭାଗ ପର୍ଯ୍ୟନ୍ତ ସେ ଏହି ସାଧନାକୁ ଅକ୍ଷୁଣ୍ଣ ରଖି ନ ଥିଲେ । କାବ୍ୟକବିତା ତାଙ୍କର ଏକାନ୍ତ ଅନ୍ତରର, ଉପନ୍ୟାସ ବାହ୍ୟିକ ସଂସ୍କାର ବିସ୍ତାର ପ୍ରତିରୂପ ।

ସେ ପାଞ୍ଚଖଣ୍ଡ ମାତ୍ର ଉପନ୍ୟାସ ଲେଖିଛନ୍ତି । ସେ ସମସ୍ତର ପ୍ରଥମ ସଂସ୍କରଣର କାଳ ଜାଣିବାର ଉପାୟ ନାହିଁ । ୧୯୨୩ରେ ଭ୍ରାନ୍ତ, ୧୯୨୫ ରେ ନଅତୁଣ୍ଡୀ ପ୍ରକାଶିତ । କାଳୀବୋହୂର ତୃତୀୟ ସଂସ୍କରଣ, ପରଶମଣିର ଚତୁର୍ଥ ସଂସ୍କରଣ କୁନ୍ତଳାଙ୍କ ବିୟୋଗ ପରେ ୧୯୪୦ ରେ ହୋଇଅଛି । ୧୯୨୮ ବେଳକୁ ତାଙ୍କର ସୁବୃହତ୍ ଓ ସର୍ବଶ୍ରେଷ୍ଠ ଉପନ୍ୟାସ ରଘୁ ଅରକ୍ଷିତ ପ୍ରକାଶିତ ହୋଇ ସାରିଲାଣି ।

ଭ୍ରାନ୍ତର ଦ୍ୱିତୀୟ ସଂସ୍କରଣ (୧୯୨୮)ରେ ଏହାର ବିଜ୍ଞାପନ ଛପା ହୋଇଅଛି, ବିଜ୍ଞାପନରେ ବଡ଼େଇ କୁହାଯାଏ । ଏଥିରେ ତାର ବ୍ୟତିକ୍ରମ ଘଟି-ନାହିଁ । ଏହାର ଭାଷାରେ ବଙ୍ଗଳାବାକ୍ୟ ଗଠନର ପ୍ରଭାବ ସ୍ପଷ୍ଟ । ବିଜ୍ଞାପନକୁ ଲଘୁଭାବରେ ନେଲେ ବି ଲେଖିକାଙ୍କ ହାତ ଏଥିରେ ନାହିଁ କିମ୍ବା ତାଙ୍କ ଆତ୍ମବିଶ୍ୱାସର ଅପ୍ରତ୍ୟକ୍ଷ ସଙ୍କେତ ଏଥିରୁ ମିଳେ ନାହିଁ କହିବା ଯଥାର୍ଥ ହେବ ନାହିଁ—"ଏହାର ବିଶେଷତ୍ୱ କିଣ ଏକ କଥାରେ କହିବାକୁ ଗଲେ ଆଜିପର୍ଯ୍ୟନ୍ତ ଯେତେ ଓଡ଼ିଆ ଉପନ୍ୟାସ ଲେଖା ହୋଇଅଛି, ସେମାନଙ୍କ ମଧ୍ୟରେ ଏହା ଛତ୍ରପତି ସମ୍ରାଟ ବୋଲିବାକୁ ତିଳେମାତ୍ର ସନ୍ଦେହ ଆସିବ ନାହିଁ ।"

ନଅତୁଣ୍ଡୀ ପାଠ କରିବା ଲାଗି ବିଜ୍ଞ ପାଠକମାନଙ୍କୁ ବ୍ୟଙ୍ଗାତ୍ମକଭାବେ ନିଷେଧ କରାଯାଇଛି । ପ୍ରକୃତରେ କି ପାଠୁଆ କି ଅପାଠୁଆ ସମସ୍ତଙ୍କୁ ଏହା ଏକ ଆହ୍ୱାନ । ଉପକ୍ରମରେ ଲେଖାଅଛି—

ପାଠୁଆ ଲୋକଙ୍କୁ ପଢ଼ିବା ମନା,
ଘର ପୋଡ଼ିଗଲା ପଛକୁ ଅନା,
ଧୋରେ ବାଇଆ ଧୋ,
ଯୋଉ କିଆସରେ ଗହଳ ଧାନ ତୁଁ
ସେଇ କିଆରରେ ଶୋ ।

ନଅତୁଣ୍ଡୀ ଗୁଚ୍ଛା ଓଡ଼ିଆଣୀ, ମଫସଲିଆଣୀ । ତାର କିଛି ଗୁଣ ଥିଲେ ଆଦର ପାଇବ, ନୋହିଲେ ଝାଡ଼ୁ ପାହାର ।

ହସ ଅପାଠୁଆ ହସ
ପାଠୁଆ, ଦୋଷ ଖୋଜି ବୁଲି ବସ ।

କୁନ୍ତଳାଙ୍କ ଉପନ୍ୟାସ ଦିନେ ଆଦରଣୀୟ ହୋଇଥିଲା । ସମାଜର ବିପୁଳ ପରିବର୍ତ୍ତନ ଘଟିଛି । ଓଡ଼ିଆ ଉପନ୍ୟାସର ମଧ୍ୟ ଯଥେଷ୍ଟ ଅଗ୍ରଗତି ହୋଇଛି । ଏବେ ହୁଏତ ତାଙ୍କ ଉପନ୍ୟାସ ସେହିପରି ଆଦର ପାଇ ନ ପାରେ । କିନ୍ତୁ ତାଙ୍କ ଉପନ୍ୟାସ ପାଠ ପୂର୍ବରୁ କେତୋଟି କଥା ମନେ ରଖିବାକୁ ହେବ ।

କୁନ୍ତଳା ନାରୀ, ଔପନ୍ୟାସିକ ପ୍ରତିଭାର ପୂର୍ଣ୍ଣାଙ୍ଗ ବିକାଶର ସୁଯୋଗ ତାଙ୍କ ଜୀବନରେ ମିଳି ନାହିଁ । ପ୍ରାଥମିକ ଚେଷ୍ଟାରେ ସେ ଯାହା କିଛି କରିଛନ୍ତି, ଓଡ଼ିଆ ସମାଜ ଭିତରେ ବେଶି ଦିନ ରହିବାର ସୁବିଧା ମଧ୍ୟ ସେ ପାଇନାହାନ୍ତି । ତେଣୁ ଏହି ସମାଜର ସର୍ବାଙ୍ଗୀନ ଚିତ୍ରଣ ତାଙ୍କ ପକ୍ଷେ ସମ୍ଭବ ନୁହେଁ । ନାନା ଅତ୍ୟାଚାରରେ ନିପୀଡ଼ିତା ଓଡ଼ିଆ ନାରୀ ପ୍ରତି ତାଙ୍କର ସହାନୁଭୂତି ସ୍ୱାଭାବିକ । ଜୀବନରଙ୍ଗମଞ୍ଚର ସେ ଜଣେ ମୂକ ଦର୍ଶକ ନୁହନ୍ତି, ଅଭିନେତ୍ରୀ । ତେଣୁ ତାଙ୍କ

ସଂସ୍କାର ଏକ ଚିନ୍ତା ନୁହେଁ, ବାସ୍ତବ ପ୍ରୟାସ । ବାସ୍ତବ କ୍ଷେତ୍ରରେ ଯେଉଁ ସଂଗ୍ରାମ ସେ କରିଛନ୍ତି, ଉପନ୍ୟାସରେ ତାକୁ ରୂପ ଦେଇଛନ୍ତି । ଉପନ୍ୟାସ ନ କହି ସ୍ୱାଧୀନତାକାଳର ସଂସ୍କାର ପ୍ରୟାସର ଇତିହାସ କହିଲେ ଚଳିବ । ତଥାପି ନିରପେକ୍ଷଭାବରେ ବିଚାର କଲେ ସାହିତ୍ୟର ଇତିହାସରେ ତାଙ୍କ ଉପନ୍ୟାସର ଯେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଅଛି, ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।

କୁନ୍ତଳାକୁମାରୀଙ୍କ ଗଦ୍ୟ ଭାଷା ଅସ୍ୱାଦ୍ୟ ଲାଗିପାରେ, ପ୍ରକାଶ ଭଙ୍ଗୀରେ ସ୍ଥାନେ ସ୍ଥାନେ ଏହା ବଙ୍ଗଳା ବା ହିନ୍ଦୀ ପରି ହୋଇଛି । ତାଙ୍କ ଜୀବନର ଇତିହାସ ଜାଣିଲେ କେହି ଏଥିରେ ବିସ୍ମିତ ହେବେ ନାହିଁ । କୁନ୍ତଳାଙ୍କ ଜନ୍ମ ୧୯୦୦ ଖ୍ରୀଷ୍ଟାବ୍ଦରେ; ଜନ୍ମସ୍ଥାନ ବସ୍ତର ଷ୍ଟେଟ୍ । ତାଙ୍କ ପିତା ଦାନିଏଲ୍ ସାବତ ବର୍ମାରେ ଜଣେ ଡାକ୍ତର ହୋଇଥିଲେ । କୁନ୍ତଳାଙ୍କ କୈଶୋର ବର୍ମାରେ ବିତିଲା । ତେରବର୍ଷ ବୟସରେ ସେ କଟକ ଆସିଲେ । ୧୯୨୧ ରେ ଏଲ୍. ଏମ୍. ପି. ପାସ୍ କଲେ । କଟକ ଆସିବା ଆଗରୁ ସେ ଓଡ଼ିଆଭାଷା ଜାଣି ନ ଥିଲେ । ୧୯୨୭ ବେଳକୁ ସେ ଦିଲ୍ଲୀଯାତ୍ରା କରିଥିଲେ । ଗୋଟିଏ ଭାଷା ଶିଖି ସେହି ଭାଷାରେ ଗ୍ରନ୍ଥ ରଚନା କରି କୃତିତ୍ୱ ଅର୍ଜନ କରିବା ଏକ ଦୁଃସାଧ୍ୟ ବ୍ୟାପାର । ସେ କିପରି ପ୍ରତିଭାଶାଳିନୀ ଥିଲେ, ତାଙ୍କ ଭାଷାପ୍ରୀତି ଓ ଦେଶପ୍ରୀତି କେତେ ନିବିଡ଼ ଥିଲା, ଏହି ଘଟଣାରୁ ହିଁ ଜଣାଯାଏ । ତେଣୁ ତାଙ୍କ ସାହିତ୍ୟ ବିଷୟରେ ଜାଣିବା ଆଗରୁ ତାଙ୍କ ଜୀବନ କାହାଣୀ ଜାଣିବା ଆବଶ୍ୟକ ହୋଇଥାଏ ।

କୁନ୍ତଳା ନିଜ ଉପନ୍ୟାସରେ ମୁଖ୍ୟତଃ ଉଚ୍ଚ ମଧ୍ୟବିତ୍ତ ବା ନିମ୍ନ ମଧ୍ୟବିତ୍ତ ପରିବାରର ଚିତ୍ର ଅଙ୍କନ କରିଅଛନ୍ତି । ତାଙ୍କ ଜମିଦାର ଶୋଷକ ନୁହନ୍ତି, ସଂସ୍କାରକ ।

"ନୂଆ ନୂଆ ଜମିଦାର, ଲୋକେ ଭାବିଥିଲେ କୋଟ ପେଣ୍ଟଲୁନ୍ ପିନ୍ଧି ମୁଣ୍ଡରେ ପଲମଟା ପୋଷ ହୋଇଥିବେ ପରା । ଶୁଣିଥିଲେ ଭାରି ପଢ଼ାଳି ଲୋକ, କିନ୍ତୁ ଦେଖିଲାବେଳକୁ ଜମିଦାର ପିନ୍ଧିଛନ୍ତି ଖଣ୍ଡେ ଖଦି; ସେ ପୁଣି ଅଣ୍ଟୁ ଲୁଚିବାକୁ ନାହିଁ, ଦେହରେ ଗୋଟିଏ ମୋଟରା ଚଦର, ଗୋଡ଼ରେ ପୁଣି ଭଙ୍ଗ ଅମଳର ଚଟି । ହାତରେ କିନ୍ତୁ ସୁନା ମୁଦିଟି ଚକ୍‌ଚକ୍ ଦିଶୁଥାଏ ଏକା । କିନ୍ତୁ ଯେତେ-ହେଲେ ହାକିମ, ଲୋକେ ଲମ୍ବ ଲମ୍ବ ଗୋଡ଼ ତଳେ ପଡ଼ିଲେ । ସଲାମି ଭେଟି ଥୋଇଲେ । ହେଲେ ଜମିଦାର କିଛି ଛୁଇଁଲେ ନାହିଁ, ସବୁ ଜିନିଷ ଫେରେଇ ଦେଲେ ।" (ପୃ: ୨୭, ନଅରୁଣୀ)

ବହୁ ଶସ୍ୟଉତ୍ପାଦନ, ବସ୍ତ୍ରବୟନ, ଗୋପାଳନ, ଅସ୍ପୃଶ୍ୟତା ନିବାରଣ ପ୍ରଭୃତି ଗାନ୍ଧିଜୀଙ୍କ ଆଦର୍ଶପ୍ରଚାର ବେଳେ ବେଳେ ପ୍ରତ୍ୟକ୍ଷ ହୋଇ ଯାଇଅଛି । କୁନ୍ତଳା ଭୁଲି ଯାଇଛନ୍ତି ଯେ ସେ ଉପନ୍ୟାସ ଲେଖୁଛନ୍ତି ।

ଜମିଦାର କହିଲେ, "ଧର ଗୋଟିଏ କଥା, ଆମେ ହେଲୁ ଓଡ଼ିଆ, ପଖାଳଖିଆ, ଆମର ବାପ ଜେଜେବାପ ଅମଳର ଲୋକେ କଣ ମୋଟ ଖାଇ ମୋଟ ପିନ୍ଧି ସଂସାର କରୁ ନ ଥିଲେ, ସେତେବେଳେ ଟଙ୍କାକୁ ପନ୍ଦ୍ରଶ ସେର ଚାଉଳ ମିଳୁଥିଲା, ଟଙ୍କାକୁ ଘିଅ ବି ତନସେର, ଏବେ କାଲକୁ ଟଙ୍କାକୁ ଚାରିସେର ସରୁ ଚାଉଳ ମିଳିବା କଷ୍ଟ । କିଆଁ ଏମିତି ହେଲା ? ଆମ ଦେଶରେ କଣ ଧାନ ଫସଲ ହେଉ ନାହିଁ ନା କପା ଫଳୁ ନାହିଁ ? ଆମ ପୋଖରୀରେ କଣ ମାଛ ନାହିଁ ନା ଆମ ଗୁହାଳରେ ଗାଈ ନାହିଁ ? ଅଛି ସବୁ, ହେଲେ ଆମ ଆଖିଟା ହେଲାଣି ଦୁଷୁରି, ଆମେ ହେଲୁଣି ବାବୁ ଆଉ ଅଲଗୁଆ । ଆମ ଦେଶର କୋଟିଏ ଲୋକ ଯଦି ବାବୁଆନା ଛାଡ଼ନ୍ତେ, କହନ୍ତେ ନାଁ ଆମେ ହାତେ ଅରଜିମୁଁ, ହାତେ ଖାଇମୁଁ, ହାତେ ଲୁଗା ବୁଣିମୁଁ, ହାତେ ପିନ୍ଧିବୁଁ; ଆମେ ଆଉ ପରଦୁଆରକୁ ଚାହିଁବୁନୁଁ, ଆମେ ଆମ ଭିତରେ କଜିଆଗୋଳ କରିବୁନୁଁ, ଗାଈ ହେଲେ ଗୋମାତା, ତାଙ୍କ ଦୁଧ ଖାଇ ଆମେ ବଢ଼ିଛେଁ, ତାଙ୍କୁ ଯତନରେ ପାଳିବୁଁ । ତେବେ କଣ ଘିଅ ଦୁଧରେ ଘର ଭରନ୍ତା ନାହିଁ ?". "ହେଇଟି ଦେଖ, ଏଇ ଯୋଉ ହାଡ଼ି, ପାଣ, ମୋଚି, ଚମାରଙ୍କୁ ଆମେ ଗ୍ରେଟ ଜାତି କହୁଛେଁ, ତାଙ୍କୁ ଟାଳି ଛୁଇଁଦେଲେ ମାରି ହୋଇ ଯାଉଛେଁ, ଖ୍ରିଷ୍ଟିଆନବେଳକୁ ତାଙ୍କ କାମଟା କିଏ ତୁଲନ୍ତା ? ସେମାନେ ତାଙ୍କ କାମ ନ କଲେ ତ ଆମ ସଂସାର ଚଳନ୍ତା ନାହିଁ । ଆମର ଏତେ ଉପକାରୀ ମଣିଷଙ୍କୁ ଆମେ ଜାତି ପାଟକରୁ ଅଲଗା ରଖି ଛୁଆଁ ଛୁଆଁ ରଡ଼ି ଛାଡ଼ିଲେ ହବ ? ଏଇଟା ବିଧାତା ସହିବଟି ?" (ପୃ: ୬୭, ନଅରୁଣ୍ଡୀ)

ଜଗନ୍ନାଥ କବିରାଜ, ଜମିଦାର କୃଷ୍ଣଚନ୍ଦ୍ର, ସ୍ୱାମୀ ସଦାନନ୍ଦ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ହରିହର ଗ୍ରେଟରାୟ, ଲଛମନଜି, ତାରକ ଡାକ୍ତର କୁନ୍ତଳାଙ୍କ ଉଦ୍ଦେଶ୍ୟ-ସିଦ୍ଧିର ନିମିତ୍ତ; ଏମାନେ ଜାତିଭେଦ, କୁସଂସ୍କାର, ନାରୀନର୍ଯ୍ୟାତନା ଦୂର କରିବା ଲାଗି ସାରାଜୀବନ ପ୍ରୟାସ କରି ଆସିଛନ୍ତି । ତାଙ୍କ ଜାତୀୟଜୀବନ ଆଦର୍ଶର ମୂର୍ତ୍ତି ପ୍ରତୀକ ଏମାନେ, ତାଙ୍କ ଧର୍ମ ଧାରଣାର ଧାରକ, କର୍ମଯୋଗର ସାଧକ ମଧ୍ୟ ଏମାନେ, ହେଲେହେଁ ଚରିତ୍ର ନିତାନ୍ତ ପ୍ରତ୍ୟକ୍ଷ ହୋଇପଡ଼ିଛି, ଉପନ୍ୟାସର କଳା-ହାନି ଘଟିଛି ।

ସରଳାଦେବୀ ଯଥାର୍ଥରେ ଲେଖିଛନ୍ତି—

"ମନେହୁଏ, ଲେଖିକା ଉପନ୍ୟାସର ମଧ୍ୟଦେଇ ତାଙ୍କର ରାଜନୀତିକ ବକ୍ତୃତା ଦେଉଛନ୍ତି ବା ନାରୀଶିକ୍ଷା, ସ୍ୱାସ୍ଥ୍ୟ, ନାରୀଙ୍କ କର୍ତ୍ତବ୍ୟ, ଦାମ୍ପତ୍ୟ ଜୀବନର ଆଦର୍ଶ କଥାମାନ କହୁଛନ୍ତି ।"

"ଉତ୍କଳର ଅଶିକ୍ଷିତ ନାରୀସମାଜ ଉପରେ ତାଙ୍କ ଉପନ୍ୟାସମାନଙ୍କର ପ୍ରଭାବ ଏଡ଼ିବାର ସାଧ୍ୟ କାହାର ନାହିଁ । ଶିକ୍ଷିତ ନରସମାଜ ଉପରେ ମଧ୍ୟ ତାଙ୍କ

ପ୍ରବନ୍ଧର ଓ ଗଦ୍ୟର ପ୍ରଭାବ ପଡ଼ିଥିଲା ଏବଂ ଯେତେଦିନ ପର୍ଯ୍ୟନ୍ତ ଜନସମାଜର ଆଭ୍ୟନ୍ତରୀଣ ଉନ୍ନତି ନ ଘଟିଛି ଓ ସାମାଜିକ ବାତାବରଣର ପୂର୍ଣ୍ଣ ପରିବର୍ତ୍ତନ ନ ହୋଇଛି ସେତେ ଦିନଯାଏ ତାଙ୍କ ଉପନ୍ୟାସର ପ୍ରଭାବ ମଧ୍ୟ ପଡ଼ିବ, କାରଣ ଉପନ୍ୟାସ ବା ଗଦ୍ୟ ସାହିତ୍ୟ ସବୁ ଦେଶରେ ସବୁ କାଳରେ 'ବର୍ତ୍ତମାନ' ସମାଜର ମାନସିକତାକୁ ଲକ୍ଷିତ କରାଇ ଦିଏ ।"

ଲୋକମାନଙ୍କୁ ଶିକ୍ଷାଦେବା, ସଂସ୍କାର ବଳରେ ଜୀବନକୁ ଉନ୍ନତ ଓ ଶ୍ରୀସମ୍ପନ୍ନ କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । 'ପାଠ ପଢ଼ିଲେ ଝିଅ ବିଧବା ହୁଅନ୍ତି' ଭଳି ଅନ୍ଧବିଶ୍ୱାସ ଦୂରକରିବା, କଳିଅଖୋରଣୀ ମଫସଲିଆଣୀର ପ୍ରଚୁର ଅବସରକୁ କାର୍ଯ୍ୟରେ ଲଗାଇବା, ପରିସ୍ଥିତିର ଦାସ ନ ହୋଇ ବ୍ୟକ୍ତିତ୍ୱ ବଳରେ ତାକୁ ବଦଳାଇ ଅନୁକୂଳ କରିବା, ପତ୍ନୀକୁ ପ୍ରକୃତ ସହଧର୍ମିଣୀ କରିବା ପ୍ରୟାସ ତାଙ୍କ ଉପନ୍ୟାସରେ ରୂପାୟିତ ହୋଇଅଛି ।

ନିମ୍ନ ମଧ୍ୟବିତ୍ତ ପରିବାରରେ ଅଭାବବୋଧ ତୀବ୍ର; ପୁଅ ମଣ୍ଡିକୁ ଆଶା, ଏଣେ ତେଲ ଘଡ଼ିକୁ ଆଶା । ଗଣ୍ଠିରେ ନ ଥାଇ ଧନ, ଏଣେ ପୁଅ ବାହାକରି ମନ । ଏଥିରେ ପୁରୁଷ ସ୍ୱେଚ୍ଛାଚାରୀ, ହୃଦୟହୀନ; ସ୍ତ୍ରୀ ଅସହାୟା । ବ୍ୟବସାୟରେ ହୀନ ବଣିକ ବୃତ୍ତି, ବନ୍ଧୁତାର କାରବାରରେ ହିସାବକିତାପ; ହାତେମାପି ଗୃହଖଣ୍ଡେ ଗ୍ରହିବା କର୍ତ୍ତବ୍ୟ । ହଲିଲା ପାଣିକି ଗୋଡ଼ ବଢ଼େଇବା ଅପରାଧ, ଗଡ଼ିଲା ଶଗଡ଼ରେ ହାତ-ଦେବା ଦୁଷ୍କର୍ମ । ଜୀବନ ଅର୍ଥ ଜଞ୍ଜାଳ, ନାରୀ ପକ୍ଷରେ କଥା କହିବା ପାପ, ଜବାବ ଦେବା ମହାପାପ । ନୁଆଁଣି ଆଡ଼କୁ ପାଣି ବୋହିଯାଏ । ମଧ୍ୟବିତ୍ତ ସମାଜର ବଧୂ ଲଳିତା; ତାଙ୍କ ଶାଶୁଙ୍କ ନାମ ମୋହିନୀ, ନଣନ୍ଦଙ୍କ ନାମ ରମା-ସୁନ୍ଦରୀ; ଲଳିତା ଉପରେ ଏ ଉଭୟଙ୍କ ଅତ୍ୟାଚାର ଉତ୍ପୀଡ଼ନ ହୋଇଅଛି । ସେ ସ୍ୱାମୀ ବଂଶୀଧରଙ୍କ ସ୍ନେହ ମଧ୍ୟ ପାଇନାହିଁ । 'ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି'; ଲଳିତା ମନକୁ ଅକାଠ କରି ସବୁ ସହିଛି । ତାର ଅସୀମ ଧୈର୍ଯ୍ୟ ଓ ସହିଷ୍ଣୁତା ଶାଶୁ ଓ ନଣନ୍ଦଙ୍କୁ ଶେଷରେ ଅଭିଭୂତ କରିଛି । ସେଦିନର ଅନାଦୃତ ପ୍ରସ୍ତରଖଣ୍ଡ ହୋଇଛି ପରଶମଣି । ଏଇ ଯୁଗାନ୍ତକାରୀ ବ୍ୟକ୍ତିତ୍ୱର ମହନୀୟ ସ୍ପର୍ଶରେ ଉଭୟ ସୁବର୍ଣ୍ଣ ହୋଇଯାଇଛନ୍ତି । କୁନ୍ତଳା ଏହି ଉପନ୍ୟାସରେ ଗୋଟିଏ ଅଭିନବ ଆଭିମୁଖ୍ୟ ଦେଖାଇଛନ୍ତି—ନାରୀର ଶତ୍ରୁ ପୁରୁଷ ନୁହେଁ, ନିଜେ ନାରୀ । ନାରୀର ଅଧୋଗତିର କାରଣ ନାରୀ, ନାରୀର ନାରୀ ଉପରେ ଅତ୍ୟାଚାର ମାତେ ଆତ୍ମଘାତ । ଶିକ୍ଷା ଓ ଆତ୍ମସଂଗଠନ ବଳରେ ତହିଁରୁ ନିଷ୍କୃତି ସମ୍ଭବ ।

କେବଳ ଆନନ୍ଦ ଦେବା ତାଙ୍କ ଉପନ୍ୟାସର ଲକ୍ଷ୍ୟ ନୁହେଁ । କଳା ଲାଗି କଳାରେ ସେ ବିଶ୍ୱାସିନୀ ନୁହଁନ୍ତି । ତାଙ୍କ ଉପନ୍ୟାସ ଉଦ୍ଦେଶ୍ୟମୂଳକ । ଜୀବନ ଲାଗି ସେ କଳାକୁ ବେଳେ ବେଳେ ବଳି ଦେଇଅଛନ୍ତି । ତାଙ୍କ ମତରେ ଜୀବନ

ପାଇଁ କଳା; ଆଗେ ଜୀବନ, ପରେ କଳା । ଜୀବନକୁ ସୁନ୍ଦର, ମଧୁର କରିବା ତାଙ୍କର ଉଦ୍ଦେଶ୍ୟ ।

ଲକ୍ଷ୍ମୀ କାଳୀବୋହୂ, ସେ ବାଳଶ୍ରୀ ବିଧବା ହେଲି ମାତ୍ର ଦଶବର୍ଷ ବୟସରେ । ଲେଖିକା ସମାଜକୁ ପଚାରିଛନ୍ତି— ଲକ୍ଷ୍ମୀ ନାରୀତ୍ୱ, ମାତୃତ୍ୱରୁ କାହିଁକି ବଞ୍ଚିତ ? ସେ କାହିଁକି ନିରାଶ୍ରୟ, ନିଃସଙ୍ଗ ? ଜଗତର ଭୋଗ କାହିଁକି ତା ଲାଗି ମନା ?

ଲକ୍ଷ୍ମୀ ମାଆଙ୍କୁ ମଧ୍ୟ ପଚାରିଛନ୍ତି—ନିଜେ ବୃଦ୍ଧବୟସରେ ପାଟଆ, ସିନ୍ଦୂର, ମହମ, କଜ୍ୱଳ, ଅଳତା ଛାଡ଼ିନାହିଁ । ପାନ ରଙ୍ଗରେ ଅଧର ରଙ୍ଗାଇଛି, ହାତ ପଟେଇ ହଳଦୀକାଠୁଆ, ତେଲଙ୍ଗରୁଆ ନ ହେଲେ ଗାଧୁଆ ଚଳୁ ନାହିଁ । ସର୍ବାଙ୍ଗ ଅଳଙ୍କାରର ମଧୁର ରୁଣୁଝୁଣୁରେ ଭରପୂର । ତୁମ୍ଭର କଡରେ ଠିଆ ହୋଇଥିବା ବିଧବା ଝିଅଟିର ହୃଦୟଭେଦୀ ଦୀର୍ଘନିଶ୍ୱାସ ତୁମ୍ଭଙ୍କୁ ଶୁଭୁନାହିଁ କି, ଆଖିପତାରୁ ଓହଳିଥିବା ଲୁହଟୋପିକି ତୁମ ଆଖିକୁ ଦିଶୁନାହିଁ କି ?

କୁଳସ୍ତ୍ରୀମାନଙ୍କୁ କୈଫିୟତ୍ ମାଗିଛନ୍ତି—ରୋହିମାଛ, ଇଲିସି ଶୁଖୁଆ, ଚାମ୍ପଡ଼ା ପୋଡ଼ା ନ ହେଲେ ଭାତ ରୁଚୁନାହିଁ । ଅଥଚ ତୁମର ନଣନ୍ଦଟି, ତୁମର ଝିଉଜଟି ବେଳାଏ ଅରୁଆ ମୁଠାକୁ ସମ୍ବଳ କରି ପଡ଼ିଛି । ନିର୍ଦ୍ଦୟ ସମାଜ, ହସ ନାହିଁ, ରୋଦନ କର । ତୁମ ଦଶଲକ୍ଷ ବିଧବାର କୋଡ଼ିଏ ଲକ୍ଷ ଆଖିରୁ ଲୁହ ଝରୁଛି । ଧରି ରଖିଲେ ମହାନଦୀ ପୂରି ଯିବଟି । (ପୃ: ୧୪, କାଳୀବୋହୂ)

ଲେଖିକା ବାଲ୍ୟବିବାହର ବିଷମୟ ପରିଣତି ଦେଖାଇଛନ୍ତି; ବାଲ୍ୟବିଧବା ହୋଇ ନାନା ଦୁଷ୍କର୍ମ କରିବା ଅପେକ୍ଷା ପୁଣି ନୈତିକ ଜୀବନଯାପନ ଶ୍ରେୟସ୍କର ।

ଯେପରି ନଅତୁଣ୍ଡୀରେ ସେହିପରି କାଳୀବୋହୂରେ ଲେଖିକା ପାଠକ-ପାଠିକାଙ୍କ ସଙ୍ଗେ ଆଳାପ କରି ଚାଲିଛନ୍ତି । ଉତ୍କଳର ଏକୀକରଣ, ଓଡ଼ିଶାର ଶିଳ୍ପ, ବାଣିଜ୍ୟ, ସାହିତ୍ୟର ଉନ୍ନତି, ଜାତିଭେଦ ଦୂରୀକରଣ, ମାନବ ମାନବ ମଧ୍ୟରେ ପ୍ରୀତିସମ୍ପାଦନ, ନାରୀ ଜାତିର ଉନ୍ନତ ବିଧାନ ପ୍ରଭୃତିର ସଚେତନ ପରିବେଷଣ ବିସ୍ୱାଦ୍ୟ ହୋଇଛି ।

ଜମିଦାର ପରିବାରରୁ ନିମ୍ନସ୍ତରର ସ୍ତ୍ରୀ ଚରିତ୍ର ଚୟନରେ କୁନ୍ତଳା ସିଦ୍ଧ-ହସ୍ତତାର ପରିଚୟ ଦେଇଛନ୍ତି । ମୁଖ୍ୟତଃ ଦୁଇ ଶ୍ରେଣୀ ତାଙ୍କ ଉପନ୍ୟାସରେ ଦେଖାଯାନ୍ତି—ଶିଷ୍ଟ ନଇଲେ ଦୁଷ୍ଟ । ଯେ ଦୁଷ୍ଟ ସେ ପରିବେଶର ପରିବର୍ତ୍ତନରେ ଶିଷ୍ଟ ହୋଇପାରେ, କିନ୍ତୁ ଦୁଷ୍ଟତା ଶିଷ୍ଟତା ସହିତ ମିଶି ରହିପାରେ ନାହିଁ । ଯେ ଗୁଣୀ ସେ ଗୁଣୀ; ଯେ ଦୁର୍ଗୁଣ ସେ ଦୁର୍ଗୁଣ । ଏ ଦିଗରେ କୁନ୍ତଳା ଫକୀର-ମୋହନଙ୍କୁ ଅନୁକରଣ କରିଛନ୍ତି ।

'ରଘୁ ଅରକ୍ଷିତ'ର ରସକଳା, ସରସ୍ୱତୀ, ପିତେଇନାନୀ, ତାରାମଣି, 'ଭ୍ରାନ୍ତି'ର ଇନ୍ଦୁମୁଖୀ, 'କାଳୀବୋହୂ'ର ଶାନ୍ତିଲତା ଉତ୍ତମ ଶ୍ରେଣୀର ସ୍ତ୍ରୀ, ଦୟା ଓ କୋମଳତାର ଆଧାର । ଏମାନଙ୍କ ତ୍ୟାଗ, ସହିଷ୍ଣୁତା ଯୋଗୁଁ ସଂସାର ବାସ-ଯୋଗ୍ୟ, ଉପଭୋଗ୍ୟ । ଯୂଥିକା, ଗେହ୍ଲୀ, ରମାସୁନ୍ଦରୀ, ଶଙ୍କରୀ, ତମାଳିନୀ ଉକ୍ତ ଶ୍ରେଣୀର ଠିକ୍ ବିପରୀତ । ସ୍ୱାର୍ଥସିଦ୍ଧି ଲାଗି ଯେ କୌଣସି ଅକର୍ମ କରିବାକୁ ସେମାନେ ପ୍ରସ୍ତୁତ ।

ନାରୀ ଚରିତ୍ରର ବିକାଶ ଲାଗି କୁନ୍ତଳାଙ୍କ ଉପନ୍ୟାସରେ ପୁରୁଷ ଚରିତ୍ର ଆବଶ୍ୟକ ହୋଇଛି, ତାର ଶୌର୍ଯ୍ୟବୀର୍ଯ୍ୟ, ଗୌରବଗରିମାର ଚିତ୍ର ଏଥିରେ ଦୁର୍ଲଭ । ରଘୁନାଥ ଭାଗ୍ୟହସ୍ତର କ୍ରୀଡ଼ନକ; ବିପଦ ଓ ବାଧାବିଘ୍ନକୁ ଜୟ କରିବାର ଶକ୍ତି ତାର ନାହିଁ । ଅନଙ୍ଗମୋହନର ପୌରୁଷ ମଧ୍ୟ ବିକଶିତ ହୋଇନାହିଁ । ସାମାନ୍ୟ ବିଷୟ ସମ୍ଭାଳି ନ ପାରି ସେ ଅଯଥା ବିପଦକୁ ବରଣ କରିଅଛି । ବିମ୍ବାଧର ଚରିତ୍ରରେ କୌଣସି ବୈଶିଷ୍ଟ୍ୟ ଫୁଟିନାହିଁ । 'କାଳୀବୋହୂ'ର ମିଶ୍ରେ ନାମକୁ ମାତ୍ର ଧାର୍ମିକ, ସମାଜପତି; ସେ ନିତାନ୍ତ ଲମ୍ପଟ । ଜ୍ୟୋତିଷ ଓ ଡାକ୍ତର ନାରୀର ସତୀତ୍ୱନାଶରେ ନିପୁଣ । ଶେଖର ଚୌଧୁରୀ ଲୋଭୀ । ସଚ୍ଚିଦାନନ୍ଦର ସଚ୍ଚିଦାନନ୍ଦ ପ୍ରବୃତ୍ତି ଜାତ କରିବାକୁ ସମର୍ଥ ହୋଇନାହିଁ । ପୁରୁଷ ଚରିତ୍ରଗୁଡ଼ିକ ସ୍ତ୍ରୀମାନଙ୍କ ପରି ପ୍ରଭାବିତ ହୁଏ, ଯେପରିକି ସେମାନଙ୍କର ଜୀବନୀଶକ୍ତି ନାହିଁ, ପ୍ରାଣ ପ୍ରାଚୁର୍ଯ୍ୟ ତ ଦୂରର କଥା । ଅତ୍ୟଧିକ ଆଶାବାଦିତା ଓ ସଚେତନ ବିଷୟ ଚିତ୍ରଣ ବେଳେ-ବେଳେ ଚରିତ୍ରର ସ୍ୱାଭାବିକତା ନଷ୍ଟ କରିଦେଇଛି ।

'ନଅରୁଣ୍ଡୀ' ଗୋଟିଏ ଲୋକଗଳ୍ପ ନୁହେଁ, ଲୋକଗଳ୍ପର କୌଣସି ଆଙ୍ଗିକ ବା ପ୍ରବୃତ୍ତି ଏଥିରେ ବ୍ୟବହୃତ ହୋଇନାହିଁ । କେବଳ କଥା ଶେଷର ବଚନିକା ଟିକିଏ ବଦଳେଇ ଲେଖିକା ପ୍ରକାଶ କରିଛନ୍ତି—

ମୋ କଥାଟି ସରିଲା
ଫୁଲଗଛଟି ମଲା
ହଇଲୋ, ଫୁଲଗଛ, ତୁ କିଆଁ ମଲୁ ?
ତତେ ଏତେ ଯତନ କରି ପାଣିଦେଇ ବଢ଼େଇ ଥିଲି
ଫୁଲଗଛ କହିଲା—ମୋର ଦୋଷ କଣ ?
ମୋତେ ପରା କାଳୀଗାଈ ଖାଇଲା ।
ହଇଲୋ କାଳୀଗାଈ, ତୋତେ ପାଳଗଦା ଅଣ୍ଟିଲା ନାହିଁ ?
କୁଣ୍ଡାତୋରାଣି ଅଣ୍ଟିଲା ନାହିଁ ?
× × ×
ହଇରେ ଧୂଳିଆ ଜନ୍ଦା "ବିଷ୍ଣୁ ଗୁପତ
ତୋତେ ମୋର କୋଟିଦଣ୍ଡବତ । ଇତ୍ୟାଦି ।

ବାଳୋପଯୋଗୀ କାହାଣୀରେ ହୁଏତ ଏଭଳି ବଚନକାର ପ୍ରୟୋଜନ ଅଛି; ଏଠି ଏହା କ୍ଷୁଦ୍ରଗଳ୍ପ ବା ଉପନ୍ୟାସର ବାତାବରଣ ସୃଷ୍ଟିରେ କୌଣସି ସାହାଯ୍ୟ କରେ ନାହିଁ, ବରଂ ଅବାନ୍ତର ବୋଧହୁଏ ।

ଭ୍ରାନ୍ତି, ନଅରୁଣ୍ଡୀ, କାଳିବୋହୂ, ପରଶମଣି ଆକାରରେ ଅତି କ୍ଷୁଦ୍ର, ଏଗୁଡ଼ିକୁ କ୍ଷୁଦ୍ରଗଳ୍ପ କୁହାଯାଇପାରେ। କିନ୍ତୁ ବହୁ ଘଟଣାର ସଂଘାତରେ ଏହାର ସଂହତି ବ୍ୟାହତ ହୋଇଅଛି । ବୃହତ୍ତମ ସତ୍ୟକୁ କ୍ଷୁଦ୍ରତମ ବିନ୍ଦୁରେ, ଗୋଟିଏ ମାତ୍ର ସତ୍ୟକୁ ମୁହୂର୍ତ୍ତିର ବିନ୍ଦୁରେ ଆବଦ୍ଧ କରିବାର ପ୍ରୟାସ ଏଥିରେ ନାହିଁ । ଉପନ୍ୟାସର ବୃହତ୍ତ କଳ୍ପନା, ଯୋଜନା, ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ବହୁ କ୍ରିୟା ଅକ୍ରିୟାର ତୀବ୍ର ପ୍ରତିକ୍ରିୟା ଓ ପରିଣତି, ଚରିତ୍ରର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ଏଥିରେ ନାହିଁ । ଉପନ୍ୟାସପାଠର ତୃପ୍ତି ଏଥିରୁ ମିଳେ ନାହିଁ ।

'ରଘୁ ଅରକ୍ଷିତ' ପ୍ରକୃତରେ ତାଙ୍କର ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ । ସ୍ଥାନ ଓ କାଳର ବ୍ୟାପ୍ତି, ବହୁ ଚରିତ୍ରର ସମାବେଶ ଓ ପୂର୍ଣ୍ଣାଙ୍ଗ ଚିତ୍ରଣ, ଘଟଣାର ଘାତ-ପ୍ରତିଘାତ ଓ ଜଟିଳ ସମାରୋହ ତଥା ପରିବେଷଣରେ ନାଟକୀୟ ରୀତିର ବ୍ୟବହାର ଯୋଗୁଁ ଏହା ଖଣ୍ଡିଏ ସାର୍ଥକ ଉପନ୍ୟାସ ହୋଇ ପାରିଛି । 'ରଘୁ ଅରକ୍ଷିତ'ର ନାୟକ ରଘୁ ଅନାଥ । ଭାଗ୍ୟବଳରେ ସେ ବଡ଼ଲୋକ ହୋଇଛି । ପତ୍ନୀ ମାୟାକୁ ହରାଇ ସେଦିନର ପ୍ରେମିକ, ଦିବାକରର ସ୍ତ୍ରୀ କିନ୍ତୁ ବିଧବା ସୀତାକୁ ବିଭା ହେବାକୁ ଚେଷ୍ଟା କରିଛି, ସଫଳ ହୋଇପାରି ନାହିଁ । ଶ୍ୟାମଳିକା ସହିତ ବିବାହ ପ୍ରସ୍ତାବରେ ମଧ୍ୟ ସେ ଅସମ୍ମତ ହୋଇଛି । ଶେଷରେ ସେ ଦେଶସେବା ବ୍ରତ ବରଣ କରିଅଛି । 'ବନ୍ଦେମାତରଂ' ମନ୍ତ୍ରରେ ସେ ଦୀକ୍ଷିତ । ଭାରତ ସେବାରେ ଆତ୍ମୋତ୍ସର୍ଗ କରିବା ଲାଗି ସେ ପ୍ରସ୍ତୁତ । କିନ୍ତୁ ଲଛମନ୍‌ଜି ତାଙ୍କୁ ଚେତେଇ ଦେଇଛନ୍ତି—ଫେରିଯାଅ ତୁମେ ସେହି ନୀଳାଚଳ ଅଞ୍ଚଳ ପୁଣ୍ୟ ଉତ୍କଳ ଭୂମିକୁ, ସେହି ତୁମର ମାଆ, ସେହି ତୁମର ସେବା ପାଇବାର ଯୋଗ୍ୟ । ତାହାର ଦୁଃଖ-ଦୁର୍ଦ୍ଦଶା ଦୂର କରିବା ତୁମର ସର୍ବାଦୌ କର୍ତ୍ତବ୍ୟ ।

ମୁସଲମାନ କର୍ମୀ ଅବଦୁଲ୍ ଅଜିଜ୍ ମଧ୍ୟ କହିଛନ୍ତି—ଏଠି ଅନେକ କର୍ମୀ, ଏଠି ଅନେକ ଦେଶ ଲାଗି ସର୍ବସ୍ୱ ପଣ କରି ବସିଛନ୍ତି । ତୁମେ ସେହି ଦରିଦ୍ର ଓଡ଼ିଶାକୁ ଫେରିଯାଅ । ନିଜ ମା କଥା ଆଗେ ଭାବ ।

ସର୍ବଭାରତୀୟ ସେବା ଛାଡ଼ି ଉତ୍କଳ ସେବା କରିବାକୁ ସେ କାହିଁକି ଯିବ ? ଅନ୍ୟମାନେ କାହିଁକି ଯିବେ ନାହିଁ । ଆଞ୍ଚଳିକତା ବା ଲୌକିକତାର ଭାବ ତ ତାଙ୍କ ମନରେ ନାହିଁ ।

ଲଛମନ୍‌ଜି ଏହାର ତାତ୍ପର୍ଯ୍ୟ ବୁଝାଇଛନ୍ତି, "ଆମ୍ଭେମାନେ ନିଖିଳ ଭାରତର କର୍ମୀଦଳ, ଆସମୁଦ୍ର ହିମାଚଳ ଆମ୍ଭମାନଙ୍କର କର୍ମଭୂମି, ତୁମେ ଓଡ଼ିଶାର ଲୋକ,

ତାହାର ଅବସ୍ଥା, ତାହାର ଦୁଃଖଦୁର୍ଦ୍ଦଶା ତୁମେ ଆମଠୁଁ ଭଲ ଜାଣ, ସେଇଠି ଯାଇ କାମ କର ।”

ପ୍ରାଚୀନ ଉତ୍କଳର ଗୌରବ, ବର୍ତ୍ତମାନ ଜାଗ୍ରତ ଭାରତରେ ଉତ୍କଳର ସ୍ଥିତି ବିଷୟରେ ମଧ୍ୟ ଲେଖିକା ସଚେତନ ହୋଇଅଛନ୍ତି ।

“ମୁଁ ଓଡ଼ିଶାର ଦଶା ସ୍ୱଚକ୍ଷୁରେ ଦେଖିଛୁ । ଯେଉଁ ଦେଶରେ ଦିନେ କଳିଙ୍ଗ ସମ୍ରାଟ ଖାରବେଳ ଭାରତର ଛତ୍ରପତି ହୋଇଥିଲେ, ଯେଉଁ ଦେଶରେ ଅଛିଁ ଜଗନ୍ନାଥଦେବଙ୍କର ପବିତ୍ର ବିଗ୍ରହ ସମ୍ମୁଖରେ ପ୍ରତ୍ୟେକ ହିନ୍ଦୁସ୍ଥାନବାସୀ ନତଜାନୁ, ସେ ଦେଶ ହୋଇଛି କୁଲିଙ୍କ ଦେଶ ! ସେ ଦେଶର ଲୋକଙ୍କୁ ଅନ୍ୟାନ୍ୟ ଦେଶର ଲୋକେ କିତାନ୍ତ ତାଚ୍ଛଲ୍ୟ କରନ୍ତି ।”

ବର୍ମା, ବଙ୍ଗଳା ଓ ଉତ୍କଳୀୟ ଜୀବନର ଚିତ୍ରଣ ବାସ୍ତବ ହୋଇଅଛି । ଲେଖିକାଙ୍କ ବ୍ୟାପକ ଜୀବନ ଚର୍ଚ୍ଚାର ସୁସ୍ପଷ୍ଟ ଆଲେଖ୍ୟ 'ରଘୁ ଅରକ୍ଷିତ'ରୁ ମିଳେ । ରଘୁ ଦେଶର ବହୁ ଅରକ୍ଷିତ ଓ ଅରକ୍ଷିତାଙ୍କୁ ରକ୍ଷା କରିବା ଲାଗି ଯେପରି କି ସ୍ୱାଧୀନତା ଆନ୍ଦୋଳନର ମହାସ୍ରୋତରେ ଝାସ ଦେଇଛି । ସ୍ୱାଧୀନତା ବିନା ଭାରତୀୟ ନରନାରୀଙ୍କ ଅଗଣିତ ସାମାଜିକ ସମସ୍ୟାର ସମାଧାନ ସମ୍ଭବ ନୁହେଁ, ଏ ବିଶ୍ୱାସ ତାର ଜନ୍ମିଛି । 'ରଘୁ ଅରକ୍ଷିତ' ଯେପରି ସମାଜସଂସ୍କାରମୂଳକ, ସେହିପରି ଖଣ୍ଡିଏ ରାଜନୀତିକ ଉପନ୍ୟାସ ।



## ‘ସାଳନ୍ଦୀ’ କାବ୍ୟ ଓ କବି ଚନ୍ଦ୍ରମଣି : ଏକ ସମୀକ୍ଷା

ବହୁ କାବ୍ୟର କବି, ତଥାପି ଉପେକ୍ଷିତ କବି ଚନ୍ଦ୍ରମଣି । ତାଙ୍କ କାବ୍ୟର ଦରଦୀ ସମାଲୋଚକ ଏବେ ବି ଜଣେ ବାହାରି ନାହିଁ । ତାଙ୍କର ସମସ୍ତ କାବ୍ୟ, ଉପନ୍ୟାସ, ଗଳ୍ପ, ଭ୍ରମଣକାହାଣୀ ଓ ଜୀବନଚରିତର ଜଣେ ବିଦଗ୍ଧ ପାଠକ ଏବେ ଓଡ଼ିଶାରେ ବିରଳ । ଚନ୍ଦ୍ରମଣି ଅବହେଳିତ, ପରିତ୍ୟକ୍ତ, ଯଦି ବା ତାଙ୍କ ଗ୍ରନ୍ଥାବଳୀ ଶ୍ରେଷ୍ଠ ଗ୍ରନ୍ଥାଗାର ମଣ୍ଡନ କରେ, ପଢ଼ି ପଢ଼ି ଜୀର୍ଣ୍ଣ, କୀଟଭକ୍ଷ ହୁଏ, ବହୁ ବ୍ୟବହାରରେ ମଳିନ, ଛିନ୍ନ ହୁଏ ନାହିଁ । ସେ ଦିନର ରାଜପୂଜ୍ୟ କବି ଆଜି ବିସ୍ମୃତପ୍ରାୟ, ସେ ମାନସ-ମନ୍ଦିରରେ ଭକ୍ତିପ୍ରୀତିର ଅର୍ଘ୍ୟ ପାଉ ନାହାନ୍ତି, ନିରାକାର ପରି ଉପାସ୍ୟ ମାତ୍ର ହୋଇଛନ୍ତି । ତାଙ୍କ ନାମରେ ତାଙ୍କ ଜନ୍ମସ୍ଥାନ ନିକଟବର୍ତ୍ତୀ କଲେଜଟି ମଧ୍ୟ ନାମିତ ହୋଇନାହିଁ । ଏଥିଲାଗି ସେହି ଅଞ୍ଚଳର ମନୀଷୀମାନଙ୍କ ମନରେ ଗ୍ଲାନି ନାହିଁ । ବୋଧହୁଏ ଏଠି ଶିକ୍ଷା ଅଛି, ଦୀକ୍ଷା ନାହିଁ; ମନ ଅଛି, ମନନ ନାହିଁ; ବିଭବ ଅଛି, ଜାତୀୟଚେତନା ନାହିଁ; ସାଧନା ଅଛି, ସିଦ୍ଧିର ସଙ୍କେତ ନାହିଁ । ଆଲୋକର ଉଜ୍ଜ୍ୱଳତା ଯେତିକି ବଢ଼ୁଛି, ଚନ୍ଦ୍ରମଣି ସେତିକି ଗାଢ଼ ଅନ୍ଧକାର ଭିତରକୁ ଠେଲିହୋଇ ଯାଉଛନ୍ତି । ସେ ଭୁବନେଶ୍ୱରର ଖରଖିଆ ବୈଦ୍ୟନାଥଙ୍କ ପରି; ପୂଜକ ଚୋପାଏ ପାଣି, ଗୋଟାଏ ବେଲପତ୍ରୀ ଫୋପାଡ଼ି ଦେଇ କର୍ତ୍ତବ୍ୟ ଶେଷ କରିଅଛି । ବୈଦ୍ୟନାଥ ବିଚଳିତ ହୋଇ-ନାହାନ୍ତି, ସେମିତି ଖରବର୍ଷା ଖାଇ ପଡ଼ିଛନ୍ତି । ତାଙ୍କ ଉପରେ କାଳି ବୋହି-ଯାଉଛି । ଆଜୀବନ ଦୁଃଖୀ, ମୃତ୍ୟୁପରେ ବି ତାଙ୍କ ଭାଗ୍ୟରେ କୌଣସି ପରିବର୍ତ୍ତନ ଘଟିନାହିଁ ।

ବହୁ ପଂକ୍ତିଭୋଜନ ଦେଇ ଆଜି ଅପାଙ୍‌କ୍ତେୟ, କବି ଚନ୍ଦ୍ରମଣିଙ୍କ ଜୀବନୀ ତାଙ୍କ କାବ୍ୟ ଅପେକ୍ଷା ମହତ୍ତର, ବିଶ୍ୱଜଗତର ପାଠ୍ୟ । ସାଳନ୍ଦୀ ନଦୀର ବାଲୁକା ଶଯ୍ୟାରେ ବସି ଚନ୍ଦ୍ରକିରଣରେ, କେବେ ବା ବାଇଗବା ଫଳ ଜାଳି ସେଇ ଆଲୋକରେ ସେ ପୁସ୍ତକ ଅଧ୍ୟୟନ କରିଛନ୍ତି । ପୋଷ୍ଟ ଅଫିସ୍‌ର ଛପା ଫର୍ମ ସେର ଛ’ ପଇସାରେ କିଣି ସେ କବିତା ଲେଖିଛନ୍ତି । ବ୍ୟବହାର କରିଛନ୍ତି ବାଉଁଶ କାଠିର କଲମ, ପାଚିଲା ପୋଇ ପତ୍ରର ରସ କିମ୍ବା ଲାଉପତ୍ର ରସ, ହାଣ୍ଡିକଳା କାଳି; ଲେଖିପଢ଼ି ବସିଲେ ସେ ନିତ୍ୟକର୍ମ ଭୁଲିଯାନ୍ତି । ମାତ୍ର ଭର୍ଣ୍ଣାକୁଲାର୍ ପାସ୍ । ଏକକ ଯୋଗ୍ୟତାରେ ଲେଖିବା କଳ୍ପନା, ତହିଁରେ ପ୍ରତିଷ୍ଠା ଅର୍ଜନ କରିବା ସାଧନା ବାତୁଳତା କିମ୍ବା ଏକ ଦୁଷ୍କର ତପସ୍ୟା । ଅକାଳ ପିତୃବିୟୋଗ, ବିକଟ

ଦାରିଦ୍ର୍ୟ, ଦୁରାରୋଗ୍ୟ ରୋଗ ତାଙ୍କ ପଥେ ପଥେ, ପଦେ ପଦେ କଣ୍ଟକ ନିକ୍ଷେପ କରିଥିଲା । ମୁନିଋଷି ଯେଉଁ ତପସ୍ୟାକୁ ଭୟ କରନ୍ତେ, ଚନ୍ଦ୍ରାମଣି ତାହା କରି-ଯାଇଛନ୍ତି । କଠୋର ସାଧନା ତାଙ୍କ କବିଜୀବନର ଭୂମିକା; ଏହା ସାଧକ-ମାନଙ୍କର ପ୍ରଥମ ପାଠ୍ୟ ।

ରୋଗଶଯ୍ୟାରେ ସେ କାବ୍ୟରଚନା କରିଛନ୍ତି । କାବ୍ୟଚର୍ଚ୍ଚା, କାବ୍ୟ-ରଚନା ତାଙ୍କର ଶୟନରେ ସ୍ୱପ୍ନ, ଜାଗରଣରେ ଚିନ୍ତା, ବ୍ୟାଧିରେ ଔଷଧ, ଦୁଶ୍ଚିନ୍ତାରେ ପରମ ଶାନ୍ତି । ତାଙ୍କ ଭଙ୍ଗାଜୀବନକୁ ସେ ଅଧିକ ଭାଙ୍ଗିଛନ୍ତି, ପୁଣି ଗଢ଼ିଛନ୍ତି ନିପୁଣ ଭାସ୍କର ପରି । ତେଣୁ ଆଜି ଅଗଣିତ 'ଗଣ' ମଧ୍ୟରେ ସେ ଜଣେ ନମସ୍ୟ, ଉପାସ୍ୟ ଜୀବନଶିଳ୍ପୀ । ରାଧାନାଥଯୁଗର ଶେଷ କବିବର ରୂପାୟିତ କରିଛନ୍ତି ଅମର ଭାରତୀ ଆଥା । କିନ୍ତୁ ଭୁଲି ଯାଇଛନ୍ତି ନିଜ ଜୀବନର ସେହି ଅମୂଲ୍ୟ ଉପାଦାନ ।

ସେ ଜଣେ ଭ୍ରମଣକାରୀ, ଠିକ୍ ରାଧାନାଥଙ୍କ ପରି । ତାଙ୍କର ମୁଖ୍ୟ କାବ୍ୟ-ଗୁଡ଼ିକ ଭ୍ରମଣ-କାହାଣୀ । ସେ ବୁଲି ବୁଲି ଉତ୍କଳର ବନ, ପର୍ବତ, ନଦୀ, ହ୍ରଦ ଦେଖିଛନ୍ତି । ସେମିତି ହୁଏତ ତାଙ୍କର ଗୋଟିଏ ଟିପାଖାତା ଥିଲା । ପାହାଡ଼ ପର୍ବତର ନାମ, ତରୁଲତା ଓ ପକ୍ଷୀମାନଙ୍କର ନାମ, ସ୍ଥାନର ଚଳଣି, ବିଶିଷ୍ଟ ବ୍ୟକ୍ତିଙ୍କ କୀର୍ତ୍ତି ସେଥିରେ ସେ ଟିପି ରଖୁଥିଲେ । ରାଜା, ଜମିଦାରମାନେ ସୁଦୃଶ୍ୟ, ଦୁର୍ଗମ ସ୍ଥାନମାନଙ୍କରେ ଭ୍ରମଣ ଲାଗି ତାଙ୍କୁ ହାତୀ ଦେଉଥିଲେ, ସାଥୀ ଓ ରସଦ ଯୋଗାଉଥିଲେ । ରାଜାଙ୍କ କୀର୍ତ୍ତି କୀର୍ତ୍ତିତ ହେବ, ଅନ୍ତତଃ ଉତ୍ସର୍ଗପତ୍ରରେ । ରାଜ୍ୟର ଦୃଶ୍ୟ ଭାବିଲୋକରେ ବିଚିତ୍ର ଛନ୍ଦରେ ଫୁଟିବ ମଞ୍ଜୁଳତର ରୂପରେ, ଅମର ହେବ ମର୍ମେ ମର୍ମେ । ସ୍ୱାର୍ଥରେ ପରମାର୍ଥ ସାଧନ କାହାର କାହାର ଉଦ୍ଦେଶ୍ୟ ଥିଲା । ପାରମ୍ପରିକ ବଦାନ୍ୟ ଆଭିଜାତ୍ୟର ଗୋଟିଏ ଲକ୍ଷ୍ୟ ଥିଲା ସଂସ୍କୃତି ଓ ଭାରତୀର ସାଧକଙ୍କୁ ଉତ୍ସାହଦାନ । ତେଣୁ ପବିତ୍ର ସାହିତ୍ୟପ୍ରୀତିରେ ହୁଏତ କେହି କେହି କବିପୋଷଣ କରୁଥିଲେ । ଗଡ଼ଜାତର ସେକାଳ ରାଜାମାନେ ସାହିତ୍ୟକୁ ବଞ୍ଚେଇ ରଖିବା କଥା ଅତ୍ୟୁକ୍ତି ନୁହେଁ, ଗମ୍ଭୀର ସତ୍ୟ ।

ଚନ୍ଦ୍ରାମଣି କାବ୍ୟରଚନା ଲାଗି ଗୋଟିଏ ଯୋଜନା ପ୍ରସ୍ତୁତ କରିଥିଲେ, ଏହା ରାଧାନାଥୀ । ଅଖ୍ୟାତ ଅଞ୍ଚଳକୁ ପ୍ରଖ୍ୟାତ କରାଇବେ, ଅପରିଚିତ ଦୃଶ୍ୟକୁ ଲୋକଲୋଚନଗୋଚରକୁ ଆଣିବେ, ଖ୍ୟାତି-ଗ୍ରନ୍ଥରେ ଗାର ନ ପଡ଼ିବା ଅପବାଦ ଦୂର କରିବେ । ରାଧାନାଥଙ୍କ ପରେ କାହାଣୀ କିମ୍ବଦନ୍ତୀରୁ କିମ୍ବା ଉତ୍କଳର ପ୍ରାକୃତିକ ଦୃଶ୍ୟରୁ ଯାହା ବାକି ରହିଗଲା, ସେ ତାକୁ ନିଜ କାବ୍ୟର ବିଷୟରୂପେ ବାଛିଲେ । ରାଧାନାଥଙ୍କ ଶୈଳୀ, ତାଙ୍କର ଆଦର୍ଶ, ରାଧାନାଥୀ ଗୁମ୍ଫ ତାଙ୍କର ଗୁମ୍ଫ । ରାଧାନାଥଙ୍କ ଶିଷ୍ୟ ସେ । ରାଧାନାଥଙ୍କ ଅବିକଳ ଭାବଧାରା ସେ ପ୍ରକାଶ

କରି ଯାଇଛନ୍ତି ନିର୍ବିକାର ଭାବରେ । ରାଧାନାଥଙ୍କ ଭାବକୁ ସେ ଏଭଳି ଆତ୍ମସାତ୍ କରିଥିଲେ ଯେ ସେ ହୋଇଥିଲା ତାଙ୍କ ଘରୋଇ ସମ୍ପତ୍ତି । ରାଧାନାଥୀ ଭାବକୁ ନିଜର ବୋଲି ପରିବେଷଣ କରିବାରେ ତାଙ୍କର ସଙ୍କୋଚ ବା ଗ୍ଲାନି ନ ଥିଲା କିମ୍ବା ଏହାକୁ ସେ ଏକ ଅପରାଧ ବୋଲି ମନେ କରି ନ ଥିଲେ । ସେ ସେହି ଭାବକୁ ବିସ୍ତୃତତର କରିଥିଲେ । ତହିଁରେ ଯୋଗ କରିଥିଲେ ନବ ନବ ଦୃଶ୍ୟ, ନବ ନବ ଭାବପ୍ରସଙ୍ଗ, ସେହି ସମୁଦ୍ରରେ ବହୁ ନୂତନ ତରଙ୍ଗ । ରାଧାନାଥଙ୍କ ପ୍ରଭାବ କିପରି 'ସାଳନ୍ଦୀ'ରେ ପ୍ରତିଫଳିତ ହୋଇଅଛି, ତାହାର କିଞ୍ଚିତ ସଙ୍କେତ ଏଠାରେ ଦିଆଗଲା ।

ସେହି ବଂଶୀ କାହିଁ ଏହି କଥା ଯଦି
ଏକାମ୍ରେ ପୁଚ୍ଛିବି ଯାଇ,
ପ୍ରତିଧ୍ୱନି ଛଳେ କାନନେ ଦେଉଳ
ପ୍ରତିବାଣୀ ଦେବ କାହିଁ ?
—'ପାର୍ବତୀ', ରାଧାନାଥ

ପୁଷ୍ପଲତାବ୍ରାତେ ପଚାରିଲି ଯାଇ
ଶ୍ରୀବଂଶୀବଲ୍ଲଭ ଗଲେ ଆହା କାହିଁ ?
ନ ପାଇଲି କିନ୍ତୁ ଉତ୍ତର ତାହାର
ତହୁଁ ପ୍ରତିଧ୍ୱନି ଆକାଶ-କୁମାରୀ
ଉତ୍ତରିଲା ଏହା ମହାଶୂନ୍ୟେ ଥାଇ
ଶ୍ରୀବଂଶୀବଲ୍ଲଭ ଗଲେ ଆହା କାହିଁ ।
—'ସାଳନ୍ଦୀ', ଚନ୍ଦ୍ରମଣି

ଦେଖ ଅଗ୍ରତେ ନୀଳ ସରସୀ ଜଳେ
ପଡ଼ି ମଣ୍ଡୂକ କ୍ରୂର ଅହି କବଳେ
ବିକଳେ ରାବୁ ରାବୁ ଊର୍ଦ୍ଧ୍ୱେ ଉଡ୍ଡୀନ
ଉତ୍ପୁଙ୍କି କଙ୍କି ଶିଶୁ ଦେଲା ଗିଳିଣ
କାଳ କବଳେ ସିନା ଏ ରୂପେ ଭାଇ
ନିରତେ ନର ଧାରି ହେଉଣି ଥାଇ ।
—'ତୁଳସୀସ୍ତବକ', ରାଧାନାଥ

ଦସ୍ୟୁ ବଣିକକୁ ମାରେ ବାତ୍ୟା ଯଥା
ବୁଡ଼ାଇ ଜଳଧିଜଳେ
କାଳ ସେହିରୂପେ ଜେତା ବିଜେତାକୁ
ପୂରାଏ ନିଜ କବଳେ ।
—'ପାର୍ବତୀ', ରାଧାନାଥ

ଭ୍ରମୁ ଭ୍ରମୁ ବନେ ସାଳନ୍ଦୀ ତୋ ତୀରେ,
ଦେଖିଲି ପଡ଼ିଛୁ କାଠଟିଏ ନୀରେ ।
ମାଛ ଏକ ତାକୁ ଖୁମ୍ପି ଖାଉଁ ଖାଉଁ,
ଟାଣି ନେଲା ନଭେ ଚଲି ଆସି କାହୁଁ ।
କେତାବକେତାଙ୍କୁ ଏହିରୂପେ କାଳ,
ନିଏ ଅଲକ୍ଷ୍ୟରେ ଗ୍ରାସି କାଳବେଳ ।

—'ସାଳନ୍ଦୀ', ଚନ୍ଦ୍ରମଣି

ଭାଗ୍ୟଦୋଷେ ଅଙ୍ଗ ଅଜ୍ଞାନ ଶର୍ବରୀ,
ଅନ୍ଧାରେ ଅଭାଗୀ ରହିଛୁ ଆବରି ।
ପାହିଲାଣି ଏବେ ତାମସୀ ଯାମିନୀ,
ଫୁଟିବ ଉଜ୍ଜ୍ୱଳ ଆଶା-କମଳିନୀ ।

—'ଚିଲିକା', ରାଧାନାଥ

ନାହିଁ ସେ ଗୌରବ ନାହିଁ ସେ ସୁଖ୍ୟାତ,
ଆଚ୍ଛାଦିଛୁ ଏବେ ତାକୁ ଦୁଃଖବାତ ।
ବଜାଇଲେ ସାଳନ୍ଦୀ ଶୁଭ ଶଙ୍ଖଧ୍ୱନି,
ଶୁଣି ତାହା ଜାଗୁ ଉତ୍କଳ-ଅବନୀ ।

—'ସାଳନ୍ଦୀ', ଚନ୍ଦ୍ରମଣି

ଭାରତୀ-ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଆହା ଥରେ ମାତ୍ର ଧାୟି ।

—'ଚିଲିକା', ରାଧାନାଥ

ସୌନ୍ଦର୍ଯ୍ୟପିପାସୁ କେଉଁ ବାଣୀଭୃତ୍ୟ,
ହେରି ଏହା ହର୍ଷେ ନ କରିବ ନୃତ୍ୟ ?

—'ସାଳନ୍ଦୀ', ଚନ୍ଦ୍ରମଣି

'ବାଣୀଭୃତ୍ୟ' 'ଭାରତୀ-ଭକତ'ର ଏକ ଅନୁକରଣ, 'ସୌନ୍ଦର୍ଯ୍ୟପିପାସୁ' 'ରୂପପାୟୀ'ର ଗଦ୍ୟାବକୃତ । ବାଗ୍‌ଦେବୀ ମଧ୍ୟ ଶ୍ରେଷ୍ଠ କବିର ବଶ୍ୟା ହୁଅନ୍ତି, କବି ତାଙ୍କର ଭାବଭୋଳ ଭକ୍ତ, ଭୃତ୍ୟ ନୁହେଁ ।

'କବି ପ୍ରାୟେ ସଦା କୋଳାହଳ-ଦ୍ୱେଷୀ'

—'ଉର୍ବଶୀ', ରାଧାନାଥ

'କୋଳାହଳ-ଦ୍ୱେଷୀ କବି ବାସସ୍ଥଳ'

—'ସାଳନ୍ଦୀ', ଚନ୍ଦ୍ରମଣି

ଚିରଦିନ ଦୁଃଖ-ପ୍ରହାରେ ଜର୍ଜର,
ପଟ୍ଟଶିଷ୍ୟ ମୁହିଁ ଦୁଃଖ-ଗୁରୁଙ୍କର ।
ଗ୍ରହ ଭାଗ୍ୟ ମୋର ସିଦ୍ଧିତ ପାଷାଣେ,
ଏ ଜୀବନ ଗଢ଼ା ଅନ୍ୟ ଉପାଦାନେ ।

—'ଚିଲିକା', ରାଧାନାଥ

ଜନ୍ମଦୁଃଖୀ ମୁହିଁ ନିତାନ୍ତ ଅଜ୍ଞାନ,
କେମନ୍ତେ କରିବି ତୋ ମହିମା ଗାନ ?
ଦୁଃଖ ଏକା ମୋର ବାଲ୍ୟ ସହଚର,
ଯୌବନରେ ହେଲା ସଖା ପ୍ରିୟତର ।
ରୋଗ ଶୋକେ ଦେହ ପଡ଼ିଅଛି ଥକି,
ଦୁଃଖ-ବଜାରେ ମୁଁ ପ୍ରଧାନ ଗହକି ।
ଦୁଃଖ-ସିଂହାସନେ ଚକ୍ରବର୍ତ୍ତୀ ପଣେ,
ନଥିବ ସୃଷ୍ଟିରେ ମୋହିପରି ଜଣେ ।

—'ସାଳନ୍ଦୀ', ଚନ୍ଦ୍ରମଣି

ଚନ୍ଦ୍ରମଣି ଅଠଗ୍ଳଶ ଖଣ୍ଡ କାବ୍ୟ ଲେଖିଛନ୍ତି । ସେଥିମଧ୍ୟରୁ ଏକ-ଚତୁର୍ଥାଂଶ ପ୍ରକୃତି କାବ୍ୟ; ମେଘାସନ, ଗଙ୍ଗାମଭ୍ରମଣ, ଗୁମୁସର, ଧବଳେଶ୍ୱର ଦର୍ଶନ, ଉତ୍କଳ-କମଳା, ପ୍ରକୃତିପେଟିକା, ଉଦ୍ୟାନଖଣ୍ଡ, ସୁରଙ୍ଗୀ କାବ୍ୟ, ସିଂହରାଜ, ମହେନ୍ଦ୍ର, ମହୋଦଧି, ସାଳନ୍ଦୀ ପ୍ରଭୃତି ପଦ୍ୟରେ ରଚିତ ହେଲେ ମଧ୍ୟ ଗୋଟିଏ ଗୋଟିଏ ଭ୍ରମଣ-କାହାଣୀ; ତାଙ୍କ ଟିପାଖାତାରୁ ରୂପାନ୍ତରିତ । କଳାତ୍ମକ ଦୃଷ୍ଟିରୁ କାବ୍ୟରେ ଯାହା ବାଦ ପଡ଼ିବାର କଥା, କବି ତାହା ବାଦ୍‌ଦେଇ ନାହାନ୍ତି । ଫଳରେ କାବ୍ୟର ଗୁରୁତ୍ୱହାନି ହୋଇଛି ।

ସୁଚଳଦେବଙ୍କ 'ଚନ୍ଦ୍ରୋତ୍ପଳା', ଲୋଚନପ୍ରସାଦ ପାଣ୍ଡେଙ୍କ 'ମହାନଦୀ' ଓ ରାଧାନାଥଙ୍କ 'ଚିଲିକା' ଅନୁକରଣରେ 'ସାଳନ୍ଦୀ' ରଚିତ । ଏହାର ରଚନାକାଳ ୧୯୧୧ ମସିହା । ଏହାର ଭାବତରଙ୍ଗ, ଦର୍ଶନଦୃଷ୍ଟି 'ଚିଲିକା' ରୀତିରେ ରୂପାୟିତ । ଦୃଶ୍ୟସଜ୍ଜା ଗୋଟିଏ ସିନେମା ରିଲ୍ ପରି, ଫଟୋଗ୍ରାଫିରେ ଅଭ୍ୟାସ ପାଠକର ପରିଚୟ ମିଳେ । ଏହି ଭୌଗୋଳିକ ଦୃଶ୍ୟ ପଟୁଆରରେ ନିପୁଣ କଳାକାରର କୃତିତ୍ୱ ଅଳ୍ପ, ରେଖା ରଙ୍ଗର ଚିତ୍ରସମାବେଶରେ ଛବିର ଗମ୍ଭୀରତା ବିରଳ । ହେଲେ ବି, ରୂପାଙ୍କନରେ କବିଙ୍କ ପ୍ରୀତି ଓ ନିବିଡ ଆନ୍ତରିକତା ପ୍ରକାଶ ପାଇଛି । 'ଚିଲିକା' ରାଧାନାଥଙ୍କ ଶୈଶବର ଖେଳସାଥୀ ନୁହେଁ, ବାର୍ଦ୍ଧକ୍ୟର ସେବିକା ନୁହେଁ, ଯୌବନର ସଖୀ ମାତ୍ର । ସାଳନ୍ଦୀ ଚନ୍ଦ୍ରମଣିଙ୍କର ପଡ଼ୋଶିନୀ, ବାଲ୍ୟ-ସହଚରୀ, ଯୌବନରେ ପ୍ରିୟା, ବାର୍ଦ୍ଧକ୍ୟରେ ଆଶ୍ୱାସଦାୟିନୀ । ତେଣୁ ତାର ଚିତ୍ର

ମନପ୍ରାଣଦେଇ ଆଙ୍କିବା କବିଙ୍କ ପକ୍ଷରେ ସ୍ୱାଭାବିକ । ରାଧାନାଥଙ୍କ ଦୃଷ୍ଟିରେ ସାଲନ୍ଦୀ ଉତ୍କଳର କାଳନ୍ଦୀରୂପିଣୀ, ବନ୍ଧୁ ପ୍ରୀତି-ସ୍ମୃତିରେ ମଧୁର । ଚନ୍ଦ୍ରମଣି ସାଲନ୍ଦୀର ଉତ୍ପତ୍ତିସ୍ଥଳରୁ ପତନସ୍ଥଳ ପର୍ଯ୍ୟନ୍ତ ତୀରବର୍ତ୍ତୀ ଦୃଶ୍ୟମାନଙ୍କର ପୂର୍ଣ୍ଣାଙ୍ଗ-ଚିତ୍ର ଅଙ୍କନ କରିଛନ୍ତି । ତାଙ୍କ ଦୃଷ୍ଟିରେ କେତେବେଳେ ସେ ଶାନ୍ତଶୀଳା, କେତେବେଳେ ଭୈରବୀ ।

ସାଲନ୍ଦୀ ମେଘାସନର କନ୍ୟା, ଗଡ଼ଜୋଳ ଓ କର୍ଣ୍ଣିଆଳୀ ଏହାର ଉପ-ନଦୀ, ନଦୀରୂପେ ପ୍ରବାହିତ ହୋଇ ସେ ନିଜେ ମଧ୍ୟ ଶେଷରେ ବୈତରଣୀର ଗୋଟିଏ ଉପନଦୀ ହୋଇଅଛି । କବି ପ୍ରଥମେ ଏହାର ଉତ୍ପତ୍ତିସ୍ଥଳର ବର୍ଣ୍ଣନା କରିଛନ୍ତି । ଏହା 'ତୁଳସୀସ୍ତବକ'ର ଅନୁରୂପ ।

ଦେବଭୋଗ୍ୟ ଫଳ ପାଚି ବୃନ୍ତୁ ଝଡ଼ି
ତୋହ୍ୱ ଜଳେ ପଡ଼ି ଯାଉଅଛି ସଡ଼ି ।
ଅପ୍ରସିଦ୍ଧ ଦେଶେ ଯଥା ମହାଜନ
ସୁପ୍ରତିଭା ନଷ୍ଟ ହୁଏ ଅକାରଣ ।

ସାଲନ୍ଦୀ ତୀରରେ ନାଗେଶ୍ୱର, ଚମ୍ପକ, କୁରୁବକ, ଆମ୍ର, ଅଙ୍କୋଲ ଆଦି ବୃକ୍ଷ; କୋହ୍ଲମାନଙ୍କର ପଲ୍ଲୀ; ବନବାଳାମାନଙ୍କର କେଶମଣ୍ଡନ, ଜଳକେଳି, ସ୍ନାନାନ୍ତେ ଜଳଘଟ ଘେନି ଲୀଳାୟିତ ଗତିରେ ଯାତ୍ରା; ଚିତଳ, ରୋହିତ, କଇଁଆଦି ମତ୍ସ୍ୟ ଓ କୁମ୍ଭୀରାଦିଙ୍କ କ୍ରୀଡ଼ା; ବରାହ ଓ ମୃଗଙ୍କ ଜଳପାନ; ଶିକାରୀଙ୍କ ଶିକାର ଦୃଶ୍ୟ ବର୍ଣ୍ଣନା କବିଲେଖନୀର ଯାଦୁସ୍ପର୍ଶରେ ଜୀବନ୍ତ ହୋଇଅଛି । ବନ୍ୟା-ଆବର୍ତ୍ତ ବର୍ଣ୍ଣନାରେ ଉପମା ଅତୀବ ମନୋରମ—

କର୍ମ ଆବର୍ତ୍ତରେ ପଡ଼ି ଜୀବ ଯଥା
ଘୂରି କଷ୍ଟକାଳ ହରାଏ ତା ସତ୍ତା ।
ଭାସିଯାଏ ସ୍ରୋତେ କେତେ ଆବର୍ଜନା
ପ୍ରାଣ-ସ୍ରୋତେ ଯଥା ଅସଂଖ୍ୟ ଘଟଣା ।

ବନ୍ୟାସ୍ରୋତରେ ପିମ୍ପୁଡ଼ିଙ୍କ ଭେଳା ଭାସିଯିବା ଦୃଶ୍ୟରେ ଏକତା ବଳରେ କିପରି ଅସାଧ୍ୟ ସାଧିତ ହୋଇପାରେ, କବି ଦେଖାଇଛନ୍ତି । 'ଚକୋର-ଦମ୍ପତି ଦିବା ଅଭିସାର'ରେ କିଛି ବୈଶିଷ୍ଟ୍ୟ ନାହିଁ । ଏହା ବୋଧହୁଏ ଚକ୍ରବାକ ଚକ୍ରବାକୀଙ୍କର ଦିବା-ଅଭିସାର ।

ତାପରେ ସାଲନ୍ଦୀକୁ ରଙ୍ଗମଞ୍ଚ କରି କବି ବିଭିନ୍ନ ଋତୁର ବିଭବ ସମ୍ଭାର ବର୍ଣ୍ଣନା କରିଛନ୍ତି । ଶରତର କାଶ, ହେମନ୍ତର ଷଣ, ଶିଶିରର ସର୍ଷପ, ବସନ୍ତର କିଂଶୁକ ଓ ଅଶୋକ-ଭୂଷାରେ ବିଭୂଷିତା ପ୍ରକୃତିର ଯୌବନଶ୍ରୀ ଓ ନିଦାଘରେ

ତାର ଦିଗମ୍ବର ମୂର୍ତ୍ତି, ଶୁଷ୍କ ତପ୍ତ ବାଲୁକା ଓ ଘୂର୍ଣ୍ଣିବାୟୁ ମନରେ ଅଲିଭା ଗାରରେ ଅଙ୍କିତ ହୋଇଯାଏ ।

'ପବିତ୍ର ସୁନ୍ଦରରୁ ସୁନ୍ଦର ପାବନ' ଖଣ୍ଡରେ କବି ପ୍ରାକୃତିକ ଦୃଶ୍ୟ ସଙ୍ଗେ ସାଳନ୍ଦୀ ତୀରର ସୀତାକୁଣ୍ଡ, ବାଙ୍କେଶ୍ୱରଦିହର ନାମକ ସ୍ୱନାମପ୍ରସିଦ୍ଧ ଶିବଲିଙ୍ଗ, ଆରଡ଼ିର ଆଖଣ୍ଡଳମଣି, ଅଣିକାଖ୍ୟ ଗ୍ରାମର ଅଣିଜ, ଅସ୍ତଳମଠର ଧ୍ୱଂସାବଶେଷ ଓ ପୂର୍ବଗୌରବ ବର୍ଣ୍ଣନା କରିଅଛନ୍ତି ।

କବି ଦେବୀପୀଠରେ ବଳିଦାନର ବିରୋଧୀ । ତାଙ୍କ ଦୃଷ୍ଟିରେ ଯେଉଁ ପୂଜକ ବଳିବେଳେ ଛାଗଳମେଷାଦିଙ୍କର ପଦ ଟାଣି ଧରେ ଓ ଯେଉଁ କଣ୍ଟିଆଳ ତାକୁ ହତ୍ୟାକରେ, ଉଭୟେ ମନୁଷ ପଦବାଚ୍ୟ ନୁହନ୍ତି । ଯେଉଁ ହସ୍ତ ଜପ, ଯଜ୍ଞାଦି କର୍ମ କରେ, ସେହି ହସ୍ତ କିପରି ଜୀବହତ୍ୟା କରେ ? ଚଣ୍ଡୀପାଠ, ହୋମ-ଯଜ୍ଞ, ଶୀତଳ ଭୋଗରେ ମାତୃରୂପିଣୀ ଦେବୀ କଣ ତୁଷ୍ଟ ହେବେ ନାହିଁ ?

ପରିଶେଷରେ କବି ଭଦ୍ରକର ସୁପ୍ରସିଦ୍ଧ 'ଚଇନସଙ୍ଗୀତ' ବା 'ମୋଗଲ ତାମ୍‌ସା'ର ରଚୟିତା ଲୋକକବି ବଂଶୀବଲ୍ଲଭଙ୍କ କଥା ସ୍ମରଣ କରିଛନ୍ତି, 'ଧନ୍ୟ ରହେ ତୁମ୍ଭ ଜନ୍ମ ଶୁଭକ୍ଷଣେ' ଖଣ୍ଡରେ । ମୋଗଲ ଶାସକଙ୍କ ଅଦୂରଦର୍ଶିତା, ବିଳାସିତା, ଅତ୍ୟାଚାର ପାର୍ଶ୍ୱିଷାରେ ରଚିତ ଏହି ସବୁ ଗୀତରେ ରୂପ ସ୍ଥିତ । କବି ବଂଶୀବଲ୍ଲଭଙ୍କ ବିଚ୍ଛେଦରେ ବ୍ୟଥିତ ହୋଇ ଲେଖିଛନ୍ତି—ଜୀବନ କ୍ଷଣସ୍ଥାୟୀ ପୁଣି ଚିରନ୍ତନ । କୀର୍ତ୍ତିର୍ଯସ୍ୟ ସ ଜୀବତି । ବଂଶୀବଲ୍ଲଭ ଅମର । କବି ଚନ୍ଦ୍ରାମଣିଙ୍କର ପର୍ଯ୍ୟବେକ୍ଷଣ ଶକ୍ତି, ପୁଙ୍ଖାନୁପୁଙ୍ଖ ଅଙ୍କନ ଓ ରୂପଦାନଦକ୍ଷତା ଅପରିସୀମ । ନିଜ ଚଷମାଟି ଫିଙ୍ଗିଦେଇ ସେ ରାଧାନାଥଙ୍କ ବହୁ ଶକ୍ତିସମ୍ପନ୍ନ ଚଷମାରେ ଦୁନିଆକୁ ଦେଖିଲେ, ଫଳରେ ସେ ଦୃଷ୍ଟିଶକ୍ତି ହରାଇଲେ । ରାଧାନାଥ ବି ସେହିପରି ନିଜତ୍ୱ ହରାଇଥିଲେ ।

ତଥାପି କବିଙ୍କ ଗତି ସ୍ଥାନେସ୍ଥାନେ ବନ୍ୟସ୍ରୋତ ପରି ସ୍ୱଚ୍ଛନ୍ଦ, ସାବଲୀଳ । ଚୈତର ଉଷାପରି ତାଙ୍କ ଦୃଷ୍ଟି ଧୂଳି, ଧୂଅଁ ଓ କୁହେଳି ମୁକ୍ତ, ସାଳନ୍ଦୀର ଗଣ୍ଡଜଳ ପରି ତାଙ୍କର ପ୍ରବାହ ଗମ୍ଭୀର । ସେ ସେତେବେଳେ ପ୍ରକୃତରେ ଚନ୍ଦ୍ରାମଣି, ରସ ପିପାସା ଚରିତାର୍ଥ କରନ୍ତି, ହୃଦୟର ଜଡ଼ତା ଦୂର କରନ୍ତି ଯଦିବା ବହୁ ସମୟରେ ତାଙ୍କର ପଥଚଲା, ଅକାରଣ ଭୁଲ ସାର ହୋଇଥାଏ । ମନେହୁଏ, ସେ ଯେପରିକି ପଥହରା । ଶ୍ରୀମନ୍ଦିର ଦୂରେଇ ଯାଇଛି । ତଥାପି ଚଲାବାଧାକୁ ସେ ବାଧାରୂପେ ଗଣିନାହାନ୍ତି । ବହୁତ କିଛି ହଜାଇଲେବି, ନିଜେ ହଜିଲେବି ସେ ଖୋଜିବାରୁ

ବିରତ ହୋଇ ନାହାନ୍ତି । 'ତୁମ ମୁଖ୍ୟବ୍ରତ ତପ ଆଚରିବା' ତାଙ୍କ ପକ୍ଷରେ ସତ୍ୟ ।

ସ୍ଥାନେ, ସ୍ଥାନେ ରୂପାଙ୍କନରେ ସେ ସାର୍ଥକ ଶିଳ୍ପୀ । ଉଦାହରଣସ୍ୱରୂପ—

ବୃକ୍ଷ ବୃକ୍ଷାନ୍ତରେ ଛନ୍ଦିଦେଇ ସୂତା,
ନିର୍ମାଣେ ଦେବୀଙ୍କ ଚନ୍ଦ୍ରାତପଲତା ।
ବିନ୍ଦୁ ବିନ୍ଦୁ ତହିଁ ପଡ଼ିଣ ଶିଶିର,
ମୁକ୍ତା ଥୋପା ପ୍ରାୟ ଦିଶଇ ସୁନ୍ଦର ।
ନଗଣ୍ୟ କୀଟ ଏ ଲୂତା କ୍ଷୁଦ୍ରକାୟ,
କିନ୍ତୁ ଜୀବଗଣ୍ୟେ ବଳି ତନ୍ତୁବାୟ ।
× × · ×
ନାହିଁ ତ ର ଆନ ସ୍ପୃହା ରୁଚିରେ ଆଶ,
ମାନବେ କେବଳ ସିନା ରୁଚିଦାସ ।
'ସାଳନ୍ଦୀ'

ଚନ୍ଦ୍ରମଣି ବହୁଭାଷୀ । ପଲ୍ଲବସମ୍ଭାରରେ ଅନେକଥର ପୁଷ୍ପ ଲୁଚି ଯାଇଅଛି । ବର୍ଣ୍ଣନା ବହୁଳତାରେ ବ୍ୟଞ୍ଜନା ସ୍ଥାନ ପାଇନାହିଁ, ସେ ପାଠକଙ୍କ ଭାବିବା ଲାଗି କିଛି ରଖନ୍ତି ନାହିଁ । ସବୁ ଦୃଶ୍ୟ ନିରେଖି ଦେଖନ୍ତି, ମୂଳରୁ ଚୂଳ ପର୍ଯ୍ୟନ୍ତ ସବୁକଥା କହିଯାନ୍ତି । ଠିକେ ଠିକେ କହିବାର ବା ବହୁରୁ ଅପଲଟି ବାଛି କହିବାର ଅଭ୍ୟାସ ତାଙ୍କର ନାହିଁ । ବିଷୟ ବସ୍ତୁଚୟନରେ ମଧ୍ୟ ତାଙ୍କର କିଛି କଟକଣା ନାହିଁ । ବିଷୟର ମୂଲ୍ୟବୋଧିରେ ରୂପାଙ୍କନ ଆବଶ୍ୟକ । କିନ୍ତୁ ଚନ୍ଦ୍ରମଣିଙ୍କ ଦୃଷ୍ଟିରେ ଯେକୌଣସି ବିଷୟ କାବ୍ୟର ଉପଜୀବ୍ୟ ହୋଇପାରେ । ପଖାଳ ଠାରୁ କାଞ୍ଜି ଓ ସପୁଫଣି କଣ୍ଟା ପର୍ଯ୍ୟନ୍ତ ଯେ କୌଣସି ବିଷୟରେ ସେ କବିତା ଲେଖିଛନ୍ତି ଓ ଯେ କୌଣସି ବିଷୟ ବର୍ଣ୍ଣନାରୁ ନୀତିତତ୍ତ୍ୱ ବାହାର କରିଛନ୍ତି ।

କବିଙ୍କ ଲେଖନୀ ସ୍ରୋତପରି ଚାଲିଥାଏ ତ ଚାଲିଥାଏ । କେଉଁଠି ହୁଏତ ପ୍ରପାତ ସୃଷ୍ଟିକରେ, ସୃଷ୍ଟିକରେ ଗଭୀର ଗର୍ତ୍ତ । କିନ୍ତୁ ଏହାର ଅନ୍ତ କେଉଁଠି ? ହୁଏତ ପରିଶେଷରେ ସାଳନ୍ଦୀ ପରି ଗ୍ରାଧାନାଥୀ-ବୈତରଣୀ ଧାରରେ ମିଶିଯାଏ; ସାଗରକୁ ଯିବାର ସଂକଳ୍ପ ତାର ନ ଥାଏ । ସଂଯମର ଶ୍ରୀ ତାଙ୍କ ଲେଖାରେ ବିରଳ । ଗମ୍ଭୀରତା ଅଛି, ଗଭୀରତା ଅଳ୍ପ; ଶବ୍ଦ ପ୍ରୟୋଗରେ ଔଚିତ୍ୟ ବିଚାର କମ୍; ସାଧୁଶବ୍ଦ ସଙ୍ଗେ ଗ୍ରାମ୍ୟଶବ୍ଦ ମିଶିଯାଇ ଅଛି । ମାତ୍ରାଜ୍ଞାନ, ଅନୁପାତର ଧାରଣା ଅଭାବରୁ ତାଙ୍କ ରାଗିଣୀ ସ୍ଥାନେ ସ୍ଥାନେ ବେସୁରା ବାଜୁଛି । ବସ୍ତୁ-

ପ୍ରାଚୁର୍ଯ୍ୟରେ ସେ ଭରପୂର, ପ୍ରଚୁର ଚଳ, ଶିଳ ମଧ୍ୟରେ କୋଣାର୍କ ବା ଭୁବନେଶ୍ୱରର ମୂର୍ତ୍ତି ଲୁଚିଯାଇଛି । ମହାରଣା ଶିଳ୍ପୀ ହୋଇଛନ୍ତି ଅଳ୍ପ କେତୋଟି ସ୍ଥାନରେ, ମରୁଭୂମିରେ ଓଏସିସ୍ ପରି ସେହି ଖଣ୍ଡ-ସୌନ୍ଦର୍ଯ୍ୟ ଆସିଯାଇଛି । ଉପନ୍ୟାସ ଓ ଜୀବନ ଚରିତ ରଚନାରେ ଚନ୍ଦ୍ରମଣି ଯେତେ ମୌଳିକ, କାବ୍ୟ-କବିତା ରଚନାରେ ସେତେ ହୋଇପାରି ନାହାନ୍ତି ।

ତ୍ରୁଟିସତ୍ତ୍ୱେ ସେ କବି । ରାଧାନାଥ ପରିଧି ମଧ୍ୟରେ ରାଧାନାଥଙ୍କ ରାଜ୍ୟର ସେ ଏକ ଉତ୍ତୁଙ୍ଗ ପର୍ବତ, ଯେଉଁଥିରେ ନବ ନବ ଉଦ୍ଭିଦ ଅଛି, ନବ ନବ ପ୍ରାଣୀ ଅଛନ୍ତି । ରାଧାନାଥ ଯୁଗ-ସାହିତ୍ୟକୁ ବହୁ ଶାଖାୟିତ, ବହୁ ରୂପାୟିତ, ବହୁରଙ୍ଗରେ ତରଙ୍ଗାୟିତ କରିବାରେ ସେ ଅପ୍ରତିଦ୍ୱନ୍ଦ୍ୱୀ, ବହୁ ଅଜଣାକୁ ଜଣାଇବାରେ, ଅଶୁଣାକୁ ଶୁଣେଇବାରେ, ଅନନୁଭୂତକୁ ଅନୁଭବ କରେଇବାରେ ସେ ମହାନ୍, ସେ କବି ।



# କାନ୍ତସାହିତ୍ୟ ପରିଚୟ

ଲକ୍ଷ୍ମୀକାନ୍ତ କେବଳ ଦେଇ ଯାଇଛନ୍ତି ଅକାତରଭାବରେ ନିଜର ଯାହାକିଛି ପ୍ରିୟ ଥିଲା, ନିଜକୁ ନିଃଶେଷ କରି ଢାଳି ଦେଇ ଯାଇଛନ୍ତି ପ୍ରାଣର ଐଶ୍ୱର୍ଯ୍ୟ, ସେଥିରେ ସେ ଋଦ୍ଧିମନ୍ତ ଥିଲେ, ବହିଃ ରୂପ ବା ସମ୍ପଦ ଅବଲୁପ୍ତ ହେଉଥିଲାବେଳେ । 'ଦେଇଥିଲେ ପାଇ' ତାଙ୍କ ଜୀବନରେ କେବେ ଘଟିନାହିଁ । ଦେବାବେଳେ ପାଇବାର ଆକାଙ୍କ୍ଷା ସେ କେବେ ପୋଷଣ କରୁ ନ ଥିଲେ । ଦେବାହିଁ ଥିଲା ତାଙ୍କର ସଂକଳ୍ପ, ଇଚ୍ଛାକାଂକ୍ଷା । ଦେବାର ଅର୍ଥ ବଞ୍ଚିବା । ଦେବା ଲାଗି ସେ କେବଳ ବଞ୍ଚିଥିଲେ ଓ ତାଙ୍କ ବଞ୍ଚିବା ସାର୍ଥକ ହୋଇଥିଲା ।

ଦେଶ ତାଙ୍କୁ କିଛି ଦେଇନାହିଁ; ଧନ ବା ସମ୍ମାନ । ନିଜ ଭୂମିକାରେ ଅଭିନୟ ଶେଷ ନ ହେଉଣୁ ତାଙ୍କୁ ଚାଲିଯିବାକୁ ହୋଇଛି ଯବନିକାର ଅନ୍ତରାଳକୁ । ଜୀବନର ପୃଷ୍ଠପଟରେ ଯାହା କିଛି ତାଙ୍କର ତପସ୍ୟା; ସାଫଲ୍ୟ ବା ସିଦ୍ଧି ସେ ଦେଇ ଯାଇଛନ୍ତି ଦେଶବାସୀଙ୍କ ହାତରେ । ଶୂନ୍ୟହସ୍ତ ଓ ଶୂନ୍ୟ-ପ୍ରାଣରେ ତାଙ୍କର ବିଦାୟ ।

ରୋଗ ଆକ୍ରମଣ ଭୟରେ ଯୌବନର ଦୋସରମାନେ ଦୂରେଇ ରହିଛନ୍ତି, କେହି କେହି ବା ହୋଇଛନ୍ତି ଅଚିହ୍ନା ପରି ଉଦାସୀନ । ମାତ୍ର ଲକ୍ଷ୍ମୀକାନ୍ତ ମଧ୍ୟ ସଙ୍କୋଚରେ କାହା ନିକଟକୁ ସାକ୍ଷାତ୍ କରି ଯାଇ ନାହାନ୍ତି । ବନ୍ଧୁହୀନ, ଦାରିଦ୍ର୍ୟ ଓ ବ୍ୟାଧିମୟ ଜୀବନର ଯନ୍ତ୍ରଣା ସେ ଏକାକୀ ସହ୍ୟ କରିଛନ୍ତି । କିନ୍ତୁ ଘୋର ନିଃସଙ୍ଗତା ବା ବିକଟ ନିର୍ଜନତାର ସୁଯୋଗ ସେ ନେଇଛନ୍ତି । ରଚନା ହୋଇଛି ତାଙ୍କର ଏକମାତ୍ର ବିନୋଦନ । ସେ ହସିଛନ୍ତି, ଯେତେବେଳେ କାନ୍ଦିଥାନ୍ତେ । ସେ ହସାଇଛନ୍ତି ଯେତେବେଳେ ହାସ୍ୟାସ୍ପଦ ହେବାର କଥା । ଭଙ୍ଗା ଜୀବନର ଏଇ ମଧୁରତମ ରସ ବହୁ ଦୁର୍ଦ୍ଦଶାଗ୍ରସ୍ତ ଜାତି ପ୍ରାଣରେ ଭରି ଦେଇଛି ଗଭୀର ଆତ୍ମପ୍ରତ୍ୟୟ, ଦୁର୍ଦ୍ଧର୍ଷ ଅଗ୍ରଗତିର ପ୍ରେରଣା ।

କାନ୍ତକବିଙ୍କ ଜନ୍ମ ୧୮୮୮ ରେ, ମୃତ୍ୟୁ ୧୯୫୩ ରେ । ଲକ୍ଷ୍ମୀବାରରେ ଜନ୍ମ ବୋଲି ତାଙ୍କ ନାମ ଦିଆ ହୋଇଥିଲା ଲକ୍ଷ୍ମୀକାନ୍ତ; କିନ୍ତୁ ଜୀବନରେ ସେ କେବେ ଲକ୍ଷ୍ମୀକାନ୍ତ ହୋଇପାରି ନ ଥିଲେ । ବରଂ ହୋଇଥିଲେ ଲକ୍ଷ୍ମୀଛଡ଼ା । କାନ୍ଧରୁ ତାଙ୍କର ଲକ୍ଷ୍ମୀ ଛୁଡ଼ି ଚାଲି ଯାଇଥିଲେ, କଣ୍ଠରେ ତାଙ୍କ ସପତ୍ନୀ ସରସ୍ୱତୀ ବସିଲେ ବୋଲି ବୋଧହୁଏ ଅଭିମାନରେ । ବ୍ୟାଧି ତାଙ୍କ ଶରୀରର କାନ୍ତି ନିଭାଇ

ଦେଇଥିଲା, ମନକୁ କାନ୍ତତର କରିବା ପାଇଁ । ସେଇ ଚିର ଅମଳିନ ପୁଷ୍ପର କାନ୍ତି ତାଙ୍କ ରଚନାର ସ୍ତରେ ସ୍ତରେ ଫୁଟିଛି । ସେ କାନ୍ତକବି, ସାର୍ଥକନାମା ।

ଅଙ୍କଖାତାରେ ଅଙ୍କ ନ କଷି ସେ କବିତା ଲେଖିଥିଲେ, ଏଇ ଔଦ୍ଧତ୍ୟର ଶାସ୍ତି ତାଙ୍କୁ ଭୋଗ କରିବାକୁ ହୋଇଥିଲା । ଏଥିଲାଗି ସେ ଲାଭ କରିଥିଲେ ଦରଦୀ ଗୋପବନ୍ଧୁଙ୍କ ସମବେଦନା, ଅମୀରମନା ଫକୀରମୋହନଙ୍କ ସ୍ନେହାଶୀର୍ବାଦ । ସେଇ ସ୍ନେହ ବା ସମବେଦନାର ଉପଯୁକ୍ତ ପାତ୍ର ସେ ହୋଇଛନ୍ତି, ଜୀବନ ବିନିମୟରେ ତାର ମୂଲ୍ୟ ମଧ୍ୟ ଦେଇଛନ୍ତି ।

ରଙ୍ଗମଞ୍ଚରେ ନାୟୀ ଭୂମିକାରେ ତାଙ୍କ ଅଭିନୟ ଦେଖି ଦର୍ଶକମାନେ ସନ୍ଦେହ କରିଛନ୍ତି ବାରାଙ୍ଗନା ବୋଲି । ସେଇ ସୁଶ୍ରୀ ତରୁଣ ଲକ୍ଷ୍ମୀକାନ୍ତଙ୍କର ଶ୍ରୀହୀନ ହେବାର ବେଦନା ଅତି କରୁଣ । ସେ ସ୍ରଷ୍ଟା ବା ସୃଷ୍ଟିନିୟନ୍ତାଙ୍କ ବିରୋଧରେ ଏଥିଲାଗି ଅଭିଯୋଗ କରି ନାହାନ୍ତି । ନିଜ ଅପରାଧର ବୋଝ ଯେତେ ଭାରି ହେଉଥିଲେ, ନିଜେ ଅକୁଣ୍ଠ ଚିତ୍ତରେ ମୁଣ୍ଡାଇଛନ୍ତି । ଦୁଃଖକଷ୍ଟକୁ ସ୍ୱ ଅପକର୍ମର ପ୍ରାୟଶ୍ଚିତ୍ତରୂପେ ସେ ଗ୍ରହଣ କରିଛନ୍ତି । ନିଜ ଦୁଃଖ ଲାଗି ନିଜେ ଦାୟୀ ବା ଦୋଷୀ । ଭଗବାନଙ୍କୁ ସେ ଭାଗିଦାର କରି ନାହାନ୍ତି, ତାଙ୍କ ନିକଟରେ କିଛି ଦାବୀ ମଧ୍ୟ କରି ନାହାନ୍ତି । ସେ ହିସାବରେ ସେ ମାନବିକ ଓ ମାନବତାର କବି ରୂପେ ଫୁଟିଛନ୍ତି ।

ଧ୍ୱଂସରେ ହିଁ ସେ ନିଜକୁ ସୃଷ୍ଟି କରିଛନ୍ତି ଅନବଦ୍ୟ ରୂପେ । ବେଦନା ତାଙ୍କ ସୃଷ୍ଟିର ମୂଳ ଉତ୍ସ । ତେଣୁ ତାଙ୍କ ରଚନା ଏତେ କରୁଣ, ଏତେ କୋମଳ । କରୁଣତା ଓ କୋମଳତାର ମଧୁର ସମନ୍ୱୟ ଓଡ଼ିଶାରେ ଆଉ କାହାରି ଲେଖାରେ ଏପରି ଘଟିନାହିଁ ।

ସାହିତ୍ୟରଚନା ତାଙ୍କର ବିଳାସ ନ ଥିଲା, ଥିଲା ଜୀବନଦାୟୀ ମହୌଷଧ । ସଙ୍ଗୀତ ଆଉ ହାସ୍ୟରସିକତା ତାଙ୍କୁ ବଞ୍ଚାଇ ରଖିଥିଲା, ମୃତ୍ୟୁର ବିକଟ ପ୍ରଲୋଭନ ମଧ୍ୟରେ । କିନ୍ତୁ ସାହିତ୍ୟର କୌଣସି ଗୋଟିଏ ବିଭାଗ ମଧ୍ୟରେ ସେ ନିଜକୁ ସଙ୍କୁଚିତ କରିପାରି ନଥିଲେ । ଶରୀର ହୋଇଥିଲା ସେତିକି ସଙ୍କୁଚିତ, ମନ ହୋଇଥିଲା ସେତିକି ପ୍ରସାରିତ ଓ ଦୁର୍ଦ୍ଦମ । କବିତା, କ୍ଷୁଦ୍ରଗଳ୍ପ, ଏକାଙ୍କିକା, ପ୍ରବନ୍ଧ, ନାଟକ, ଉପନ୍ୟାସ ଓ ଶିଶୁସାହିତ୍ୟ ପ୍ରଭୃତି ସାହିତ୍ୟର ପ୍ରାୟ ସମସ୍ତ ଦିଗରେ ତାଙ୍କ ପ୍ରତିଭା ଶାଖାୟିତ ହୋଇଅଛି । କଳା ଦୃଷ୍ଟିରୁ ଉଚ୍ଚ କୋଟୀର ହେଉ ବା ନ ହେଉ, ଯେଉଁ ବିଷୟକୁ ଲକ୍ଷ୍ମୀକାନ୍ତଙ୍କ ଲେଖନୀ ସ୍ପର୍ଶ କରିଛି, ତାହା ସୁବର୍ଣ୍ଣ ରୂପରେ ଝଲସି ଉଠିଛି, ସରସ ଓ ସଜୀବ ହୋଇଛି । ଏହା ସ୍ୱୀକାର କରିବାକୁ ହେବ ।

**କବିତା—**

କାନ୍ତକବିଙ୍କଠାରେ ଲକ୍ଷ୍ମୀକାନ୍ତଙ୍କର ପ୍ରତିଷ୍ଠା; କିନ୍ତୁ ଉଚ୍ଚସ୍ତରର ଭାବାନୁଭୂତି, ଲାବଣ୍ୟଛଟା ବା ଗୁରୁଗାମ୍ଭୀର୍ଯ୍ୟ ତାଙ୍କ କବିତାରେ ଦୃଷ୍ଟିଗୋଚର ହୁଏ ହୁଏ ନାହିଁ । ଯୁଗ ବକ୍ଷରେ ସ୍ୱତନ୍ତ୍ର ସ୍ୱାକ୍ଷର ଲାଗି ଯେଉଁ ବଳିଷ୍ଠ କବିବ୍ୟକ୍ତିତ୍ୱ ଆବଶ୍ୟକ, ତାହା ତାଙ୍କର ନଥିଲା । ସେ କାବ୍ୟ ଲେଖି ନାହାନ୍ତି, କ୍ଷୁଦ୍ର କବିତାର ସଂଖ୍ୟା ସ୍ୱଳ୍ପ ।

ରାଧାନାଥଯୁଗ ଓ ତତ୍‌ପରବର୍ତ୍ତୀ ସତ୍ୟବାଦୀ ଓ ସବୁଜ ଯୁଗର ରୋମାଣ୍ଟିକ୍ ପ୍ରଭାବ ତାଙ୍କ କବିତାରେ ସ୍ପଷ୍ଟ । ଅତୀତର ଉଜ୍ଜ୍ୱଳ ଗୌରବ ପ୍ରକୃତିର କମନୀୟ କାନ୍ତି, ଶୈଶବ ଓ କୈଶୋରର ସ୍ମୃତି, ମାଧୁରୀ ଓ ସାହିତ୍ୟିକମାନଙ୍କ ବିଚ୍ଛେଦରେ ଶୋକୋଚ୍ଛ୍ୱାସ ରୋମାଣ୍ଟିକ୍ ଆଙ୍ଗିକରେ ସେ ପ୍ରକାଶ କରିଛନ୍ତି । ପରବର୍ତ୍ତୀ ଜୀବନରେ ସେ ଯୁଗର ଦାବୀ ଏଡ଼ି ନ ପାରି ମୁକ୍ତଛନ୍ଦ ବ୍ୟବହାର କରିଅଛନ୍ତି । କାନ୍ତକବିଙ୍କର ଭାଷା, ସରଳ, କୋମଳ । ଏଥିରେ ବୌଦ୍ଧିକ କ୍ଲିଷ୍ଟତା ନାହିଁ, ଅନୁଭୂତିର ସାବଲୀଳ, ସ୍ୱଚ୍ଛନ୍ଦ ପ୍ରକାଶ ଘଟିଅଛି ।

କବିଙ୍କ 'ବୈତରଣୀ' ଚନ୍ଦ୍ରାମଣିଙ୍କ 'ସାଳନ୍ଦୀ' ପରି; ଛନ୍ଦ ବା ବର୍ଣ୍ଣନାରେ କୌଣସି ବୈଚିତ୍ର୍ୟ ନାହିଁ । ବୈତରଣୀର ଉତ୍ପତ୍ତି, ତଟବର୍ତ୍ତୀ ଶୈଳମାଳା, ବନ ଓ ପକ୍ଷୀପନ୍ତି, ଲୌକିକ ଇତିହାସ ଓ ପ୍ରଚଳିତ କିମ୍ବଦନ୍ତୀ ପାରମ୍ପରିକ ରୀତିରେ କବି ବର୍ଣ୍ଣନା କରିଛନ୍ତି ।

କଲ୍ଲୋଳ'ର ଅଧିକାଂଶ କବିତା ଶୋକାତ୍ମକ । ଶ୍ମଶାନରେ ରାଧାନାଥ', 'ଶଶାନରେ ମଧୁସୂଦନ', 'ବ୍ୟାସକବି ଫକୀରମୋହନଙ୍କ ମହା ପ୍ରୟାଣ' କବିତାରେ ସମସାମୟିକ କମୀସ୍ଥାନ୍ କବି ଭାବରେ ସେ ଭକ୍ତିଅର୍ଘ୍ୟ ଅର୍ପଣ କରିଅଛନ୍ତି । ଗୋପବନ୍ଧୁ 'ସ୍ମୃତି ତର୍ପଣ' ଓ 'ଚନ୍ଦ୍ରାମଣି ସ୍ମରଣେ'ରେ ସେହିପରି ଉକ୍ତ ଅମର କବିମାନଙ୍କର ଗୁଣ କୀର୍ତ୍ତନ କରାଯାଇଛି । 'ବିବିଧ କବିତା'ର କବିତାଗୁଡ଼ିକ ବିଭିନ୍ନ ସମୟରେ ରଚିତ । ରାଜନୀତି ଓ ପ୍ରକୃତି ଚିତ୍ରଣଠାରୁ ୧୯୪୩ ମନ୍ୱନ୍ତର, ଶିଶୁର ହସ, ଶିଶୁର ଭାଷା, ଅଲିଅଳୀ କନ୍ୟା, ଭଗିନୀର ସ୍ନେହ ଓ ନବଜନ୍ମରେ ପିତାର ଆନନ୍ଦ ପର୍ଯ୍ୟନ୍ତ ବହୁ ଚିତ୍ତ ମଧୁର ଭାବଧାରା ଏଥିରେ ପ୍ରବାହିତ ହେଉଅଛି । ନାନା ଋତୁ ପୁଷ୍ପର ଏ ଗୋଟିଏ ଉଦ୍ୟାନ, କରୁଣ କୋମଳ କାକଳୀରେ ମୁଖରିତ ।

ଗୀତିକବିତାର ବ୍ୟକ୍ତିକ ଭାବୋଚ୍ଛ୍ୱାସ 'ଜୀବନ୍ମରଣ'ରେ ପ୍ରକାଶିତ ହୋଇଅଛି । ନବ ବସନ୍ତ ଆସି ତରୁଲତାରେ କିଶଳୟ ଓ ମଞ୍ଜରୀ ଭରି ଦେଇଛି, ଚତୁର୍ଦ୍ଦିଗ ଆଲୋକରେ ଉଜ୍ଜ୍ୱଳ ଓ ପ୍ରଫୁଲ୍ଲ; କିନ୍ତୁ ତାଙ୍କ ନିଜ ମଧ୍ୟରେ କୌଣସି

ପରିବର୍ତ୍ତନ ଆଣି ପାରିନାହିଁ । ଏକ ଶୁଷ୍କ, ରୁକ୍ଷ ତରୁ ପରି ଏହି ମନୋହର ସଂସାରରେ ସେ ରହି ଯାଇଛନ୍ତି—

ମାନ ମୋତେ ଛୁଇଁ ପାରିନାହିଁ ମୁଁ ଏକାକୀ,
ସାରି ବିଶ୍ୱେ ଏକା ପରି ରହିଗଲି ବାକୀ ।

'ଗଣେଶ ବିସର୍ଜନ' କବିତାରେ ସେହି ଉଚ୍ଛ୍ୱାସ ଜୀବନ୍ୟାସ ପାଇଛି ।

ଦୈନ୍ୟ ହାହାକାରେ ଫାଟି ଯାଉଅଛି ଛାତି,
ଉପବାସେ ନିଜ ଘରେ ପାହୁଅଛି ରାତି ।
ପୂର୍ଣ୍ଣ କରି ଦିନେ ସୁଦ୍ଧା ଖାଉନାହିଁ ଗ୍ରାସେ,
କାହିଁକି ଆସିଲ ଭଲ ଦରିଦ୍ର ଆବାସେ ?

ଜୀବନର ଘୋର ଦୁଃଖ ଦୁର୍ଦ୍ଦଶା ତାଙ୍କୁ ଦୁଃଖବାଦୀ କରିନାହିଁ । ସେ ଆନନ୍ଦର ଜୟ ଘୋଷଣା କରି ଯାଇଛନ୍ତି ।

କେହି କହେ ଏ ସଂସାର ଦୁଃଖର ଆଗାର,
ଜୀବନେ ରହିଛି ପୂରି ଦୈନ୍ୟ ହାହାକାର ।
ଅଶାନ୍ତିର ଗନ୍ତାଘର ଏ ଦୁନିଆ ଗୋଟି,
ଘେରି ରହିଛନ୍ତି ଅରିପଞ୍ଚ କୋଟି କୋଟି ।
ହିଂସା ଦ୍ୱେଷ ଜରା ବ୍ୟାଧି ମୃତ୍ୟୁ ଆଦି କରି,
ଅହର୍ନିଶ ଚଉପିଠି ରହିଛନ୍ତି ଘେରି ।
ମିଥ୍ୟା ମିଥ୍ୟା ନୁହେ କେବେ ନୁହେ ଏ ସଂସାର,
ଦୁଃଖର ଆକର, ନୁହେ ନରକର ଦ୍ୱାର ।

'ପିପାସା'ରେ କବିଙ୍କ ଜୀବନଦର୍ଶନ ପ୍ରକାଶ ପାଇଛି । ଏହା ତାଙ୍କ ବାସ୍ତବ ଜୀବନର ପ୍ରତିଛବି । ଦୁଃଖ କେତେ ହେଲେ ଭଗବାନ୍‌ଙ୍କ ଆସନ ଟଳେ ? ଅଭିମାନରେ କବି ଯାହା କିଛି ଅକ୍ଷୁଣ୍ଣ, ଅକ୍ଷତ ରହିଛି ସବୁ ଶ୍ରୀଚରଣରେ ଢାଳି ଦେବାକୁ ପ୍ରସ୍ତୁତ ହୋଇଛନ୍ତି । ଧନ, ମାନ, ଯଶ ଲଭ ଲାଗି ତାଙ୍କର ଉଚ୍ଚାକାଂକ୍ଷା ନାହିଁ । ପିତା, ମାତା, ଭ୍ରାତା, ଦାରା, ସୁତାସୁତ ବିନଷ୍ଟ ହେଲେ ବି ତାଙ୍କର ଭାବନା ନାହିଁ । ସ୍ନେହ ବା ପ୍ରୀତିର ଆଶା ମଧ ସେ ପୋଷଣ କରନ୍ତି ନାହିଁ । ଦରିଦ୍ର ଭିକ୍ଷାଣୀ ପରି ପଦେ ପଦେ ଲାଞ୍ଛିତ, ଘୃଣିତ ହେଲେ; ହତାଶାର ଅଗ୍ନିରେ ଯାହା କିଛି ପ୍ରେୟ ସବୁ ଦଗ୍ଧ ହେଲେ କେଜାଣି ଭଗବତ୍‌ପ୍ରାପ୍ତି ଘଟିପାରେ, ଆଖିର ଅଶ୍ରୁ ପୋଛିବାକୁ ସେ ଆସି ପାରନ୍ତି । କାମନାର ବିନାଶରେ ଯେଉଁ ଶାନ୍ତି ଆସେ ତାହା ମାନବିକ ନୁହେଁ । ସମସ୍ତ କାମ୍ୟ ବସ୍ତୁ ତ୍ୟାଗରେ ଭଗବତ୍ ପ୍ରାପ୍ତି ଯୋଗୀର ଲକ୍ଷ୍ୟ ହୋଇପାରେ, ଭୋଗୀ ସଂସାରୀର ବା କବିର ନୁହେ ।

## କ୍ଷୁଦ୍ର ଗଳ୍ପ—

ଲକ୍ଷ୍ମୀକାନ୍ତ ଓଡ଼ିଆ କ୍ଷୁଦ୍ରଗଳ୍ପର ଜଣେ ପ୍ରବର୍ତ୍ତକ । ତାଙ୍କ ପୂର୍ବରୁ ଫକୀରମୋହନ ଅଳ୍ପ କେତୋଟି ମାତ୍ର ଗଳ୍ପ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିଥିଲେ । ସେ ଆଧୁନିକ କ୍ଷୁଦ୍ରଗଳ୍ପର ଙ୍ଗ ବା ଲକ୍ଷଣ ପ୍ରତି ସେତେ ସଚେତନ ହୋଇ ନାହାନ୍ତି । ତାଙ୍କର ଅଧିକାଂଶ କ୍ଷୁଦ୍ରଗଳ୍ପ କେବଳ ଗଳ୍ପ । ଗୋଟିଏମାତ୍ର ସତ୍ୟକୁ ମୁହୂର୍ତ୍ତର ବିନ୍ଦୁ ମଧ୍ୟରେ ଆବଦ୍ଧ କରିବାର ଚେଷ୍ଟା ସେଥିରେ ନାହିଁ । ମାତ୍ର ଅନୁଭୂତିର ସ୍ପର୍ଶ ସେଗୁଡ଼ିକ ଜୀବନ୍ତ କରିଛି ।

'ଭଦ୍ରକାଳୀ', 'ଦର୍ପପାଗଣ୍ଡ', ଝୀରଗ୍ରେୟ୍ର ଗୋପୀନାଥ' କିମ୍ବଦନ୍ତୀ । ଉତ୍କଳର ମନ୍ଦିର, ଦେବଦେବୀ, ଗିରିନଦୀ ପ୍ରଭୃତି ସହିତ ଜଡ଼ିତ କିମ୍ବଦନ୍ତୀ ସଂଗୃହୀତ ହେବା ଆବଶ୍ୟକ—ଏହା ଲକ୍ଷ୍ମୀକାନ୍ତ ହୃଦୟଙ୍ଗମ କରିଥିଲେ । ଓଡ଼ିଶାର କିମ୍ବଦନ୍ତୀ ସଂଗ୍ରହରେ ସେ ଅଗ୍ରଣୀ । କ୍ଷୀଣ ରୂପରେ ପ୍ରଚଳିତ ଇତିହାସ କଥାକୁ ସେ ରୂପ, ରଙ୍ଗ, ରସ ଦେଇ ଚିତ୍ତାକର୍ଷକ କରି ପାରିଛନ୍ତି ।

ତାଙ୍କର ଅଧିକାଂଶ ଗଳ୍ପର ବିଷୟ ସାମାଜିକ । କବି ବା ଚିତ୍ରକର, ଗୃହକର୍ମୀ ବା ବ୍ୟବସାୟୀ ତାଙ୍କ ଗଳ୍ପର ନାୟକ । ବ୍ୟଙ୍ଗ ବା ହାସ୍ୟ ସୃଷ୍ଟି ତାଙ୍କର ଲକ୍ଷ୍ୟ । ଏ ଦିଗରେ ସେ ଫକୀରମୋହନଙ୍କ ଉତ୍ତରସୂରୀ । ଫକୀର-ମୋହନଙ୍କ ହାସ୍ୟରସର ଧାରାକୁ ସେ ଅଧିକ ପ୍ରସାରିତ ଓ ଗଭୀରତର କରିଛନ୍ତି । ପ୍ରେମ ଓ ବିବାହ, ତହିଁରେ ଉତ୍କଣ୍ଠା ବା ବିକଟତା ହାସ୍ୟର ଖୋରାକ ଯୋଗାଇଛି । ଅଧିକାଂଶ ମଜାଗଳ୍ପ ଶ୍ରେଣୀର । ଏହା ଲୋକଗଳ୍ପ ପରି ସୁଖପାଠ୍ୟ କିନ୍ତୁ କାହିଁରେ ଜଟିଳ ବିଷୟ ବା ଚରିତ୍ରର ଗଭୀର ଚିତ୍ରଣ ନାହିଁ । ମନୋବିଜ୍ଞାନ, ସୂଚନା ବା ବ୍ୟଞ୍ଜନା ନାହିଁ । ଗଳ୍ପକାର ବର୍ଣ୍ଣନା କରି ଯାଇଛନ୍ତି । ଭାଷା ସରଳ, ଭାବ ସହଜବୋଧ । ଲକ୍ଷ୍ମୀକାନ୍ତଙ୍କ ମଜାଗଳ୍ପ ବିନା ଆୟାସରେ ଜନସାଧାରଣ ଉପଭୋଗ କରି ପାରିବେ ।

ଜୀବନର ଗମ୍ଭୀର ଦିଗ ପ୍ରତି ଲେଖକ ସେତେ ଦୃଷ୍ଟି ଦେଇ ନାହାନ୍ତି । ତଥାପି 'ବୁଢ଼ା ଶଙ୍ଖାରି' ଗୋଟିଏ ଉତ୍କୃଷ୍ଟ ଗଳ୍ପ ହୋଇପାରିବ । ରବୀନ୍ଦ୍ରନାଥଙ୍କ 'କାବୁଲିୱାଲା' ସହିତ ଏହାର ସାମଞ୍ଜସ୍ୟ ରହିଅଛି । ଶଙ୍ଖାରି କାବୁଲିୱାଲାର ଆଉ ଗୋଟିଏ ରୂପ, ମିନି ଓଡ଼ିଆ ଅନ୍ତଃପୁରର ବଧୂ । ସେହି ବଧୂ ବିଧବା ହୋଇଯିବାରେ ଶଙ୍ଖା ପିନ୍ଧେଇଥିବା ସ୍ନେହୀ ଶଙ୍ଖାରିର ମନ ଭାଙ୍ଗି ଯାଇଛି । କରୁଣରସର ଉଚ୍ଛ୍ୱାସ ମନକୁ ବିମୂଢ଼ କରେ, ସମାଜସଂସ୍କାରକାମନା ଗଳ୍ପକୁ ବ୍ୟଙ୍ଗାତ୍ମକ କରିଛି । ଫକୀରମୋହନଙ୍କ ଗଳ୍ପର ନିବିଡ଼ ରସର ଆସ୍ୱାଦ ଲକ୍ଷ୍ମୀକାନ୍ତଙ୍କ ଗଳ୍ପରେ ମିଳେ ନାହିଁ ।

**ଉପନ୍ୟାସ—**

କାନ୍ତକବିଙ୍କ ଏକମାତ୍ର ଉପନ୍ୟାସ—କଣାମାମୁଁ, ଅସମ୍ପୂର୍ଣ୍ଣ । ୧୯୬୨ରେ ଏହାର ଆରମ୍ଭ; ଦଶବର୍ଷ ପରେ 'ଡଗର'ରେ କ୍ରମାନ୍ୱୟେ ଏହା ପ୍ରକାଶ କରି-ଯାଇଥିଲା । ତେଣୁ ଆଦ୍ୟଭାଗରୁ ଶେଷାଂଶ ଖାପଛଡ଼ା ବୋଧହୁଏ; ପରବର୍ତ୍ତୀରେ ଏହାକୁ ଶେଷ କରିଦେବାର ପ୍ରୟାସ ହୋଇଅଛି, କିନ୍ତୁ ଶେଷ ହୋଇ ପାରିନାହିଁ; ଉପନ୍ୟାସକଳା ବ୍ୟାହତ ହୋଇଅଛି ।

ପୌରାଣିକ ଓ ଆଧୁନିକ ସାହିତ୍ୟରେ ମାମୁଁ ଏକ ସଇତାନ ଚରିତ୍ରର ପରମ୍ପରା ସୃଷ୍ଟି କରିଅଛି । କଂସମାମୁଁ, 'ବିବାସିନୀ'ର ମାୟାଧର ମାମୁଁ, ଫକୀର-ମୋହନଙ୍କ ନଟବର ମାମୁଁ ଦୁଷ୍ଟ ଚରିତ୍ର । କିନ୍ତୁ ଆମ ସମାଜରେ ମାମୁଁ ଏକ ସ୍ନେହ ଶବ୍ଦ, ଅତି ମଧୁମୟ ପରିପ୍ରେକ୍ଷୀରେ ଏହାର ସ୍ଥିତି । ଲକ୍ଷ୍ମୀକାନ୍ତ ଏହି ସ୍ଥିତିର ସ୍ଥାପକ ଓ ବୃହତ୍ତର ପରିବେଶରେ ଏହାର ବିକାଶକ । ସେ ସେହିଗରୁ ବିପ୍ଳବୀ, ମୌଳିକ କଳ୍ପନାରେ ତାଙ୍କ ରଚନା ରୋଚକ ହୋଇଅଛି ।

କଥା ଅଛି—ନାହିଁ ମାମୁଁଠାରୁ କଣାମାମୁଁ ଭଲ । କିନ୍ତୁ ଏ ମାମୁଁ ସର୍ବାଙ୍ଗ-ସୁନ୍ଦର ଯେ କୌଣସି ମାମୁଁଙ୍କଠାରୁ ଅଧିକ ସାମାଜିକ, ଉପକାରୀ ଯେ କୌଣସି ଆତ୍ମୀୟରୁ ଆତ୍ମୀୟତର । ତାଙ୍କର ନିଜର ଗୃହ ନାହିଁ, ସମସ୍ତଙ୍କ ଗୃହ ତାଙ୍କର ଗୃହ । ପର ତାଙ୍କର ଅତି ଆପଣାର, ସେ ଆପଣାକୁ ପର କରିପାରିଛନ୍ତି ବୋଲି, ସମସ୍ତେ ତାଙ୍କର ମିତ୍ର, କେବଳ ସଇତାନଙ୍କ ବ୍ୟତୀତ । ସେ ଏକ ସାର୍ବଜନୀନ ମନୁଷ୍ୟ, ଚିର ନୂତନ । ଆତ୍ମଦାନ ହିଁ ତାଙ୍କ ଜୀବନର ଶ୍ରେଷ୍ଠ ବ୍ରତ ।

ଓଡ଼ିଆ ଉପନ୍ୟାସ ଜଗତରେ କଣା ମାମୁଁ ଏକ ନୂତନ ଚରିତ୍ର, ଗ୍ରାମୀଣ ଶକ୍ତି ସାଧନାର ଉଜ୍ଜ୍ୱଳତମ ପ୍ରତୀକ; ବାହାରେ ଫକୀର, ଅନ୍ତରରେ ଆମୀର, ଚରିତ୍ର ଐଶ୍ୱର୍ଯ୍ୟରେ ସେ ବିତ୍ତଶାଳୀ, ପ୍ରାଣର ପ୍ରାଚୁର୍ଯ୍ୟରେ ସେ ମହିମାମୟ । ମୁମୂର୍ଷୁ ଜାତିର ସୁପ୍ତ ଶକ୍ତିକୁ ଜାଗ୍ରତ କରିବାରେ ସେ ଅଗ୍ରଣୀ । ଶରୀରର ଶକ୍ତି ଓ ମାନସିକ ଦୃଢ଼ତା ଜାତିକି ମହୀୟାନ୍ କରେ, ଏଥିରେ ସେ ବିଶ୍ୱାସୀ, କ୍ରିୟାଶୀଳ । ବାକ୍ ଅପେକ୍ଷା କର୍ମରେ ସେ ଅଧିକ ଆସ୍ଥାବାନ୍ । ଲେଖକଚରିତ୍ରର ବିରାଟ ଆଦର୍ଶ ତାଙ୍କ ଚରିତ୍ରରେ ମୂର୍ତ୍ତି । ସେ ପୁରାଣର କଳ୍ପନା ନୁହନ୍ତି, ଇତିହାସର ସିର୍ଜି, ଜାତି ସଂଗଠନ ଓ ସଂଗ୍ରାମଶକ୍ତିର ସାର୍ଥକ ବ୍ୟକ୍ତିତ୍ୱ ।

କଣାମାମୁଁ ଏକ ଚିରନ୍ତନ ମାମୁଁ, ଏକ ତପସ୍ୟାର ପରିଣତି । ତାଙ୍କ ଅତୀତ ଅନ୍ଧକାରମୟ, ଭବିଷ୍ୟତ ମଧ୍ୟ ରହସ୍ୟାଚ୍ଛନ୍ନ । ହେଲେ ବି ତାଙ୍କ କ୍ରିୟାଶୀଳ ବ୍ୟକ୍ତିତ୍ୱ ଅନନ୍ତ କାଳରେ ବ୍ୟାପ୍ତ, ବିସ୍ତୀର୍ଣ୍ଣ; ଉନ୍ନତ ଆଦର୍ଶକୁ କାର୍ଯ୍ୟକାରୀ କରିବାରେ ତାର ମହତ୍ତ୍ୱ । ତେଣୁ ଆପାତଅପୂର୍ଣ୍ଣ ହେଲେ ବି ଏହା ଖଣ୍ଡିଏ ପୂର୍ଣ୍ଣାଙ୍ଗ

ଉପନ୍ୟାସ । ଏ 'ମାମୁଁ'ର ଆଦି ନାହିଁ, ଅନ୍ତ ନାହିଁ, କେଉଁଠି କିଛି ଶୂନ୍ୟ ନାହିଁ; ପୂର୍ଣ୍ଣତା ବି ଦୁର୍ଲଭ । 'ମହାଯାତ୍ରା' ମହାକାବ୍ୟ ଓ ଜଗନ୍ନାଥମୂର୍ତ୍ତିର କଳ୍ପନା ପରି ଚିର ଅପୂର୍ଣ୍ଣ ରହିବା ଏ ମାମୁଁ ପକ୍ଷେ ସ୍ୱାଭାବିକ ।

**ପ୍ରବନ୍ଧ—**

ଲକ୍ଷ୍ମୀକାନ୍ତ, ମଧୁସୂଦନ ବା ବିଶ୍ୱନାଥଙ୍କ ପରି ଗୁରୁଗମ୍ଭୀର ନୁହନ୍ତି । ଗଳ୍ପର ରମ୍ୟତା ଓ କବିତାର ଉଚ୍ଛ୍ୱାସ ତାଙ୍କ ପ୍ରବନ୍ଧର ସ୍ତରେ ସ୍ତରେ ରହିଅଛି । ସେ କ୍ଲିଷ୍ଟ ଶବ୍ଦ ଯୋଜନା କରିନାହାନ୍ତି, ରଚନାରେ ଜଟିଳ ବାକ୍ୟର ସମାହାର କ୍ୱଚିତ୍ ଦେଖିବାକୁ ମିଳେ । ଅଭିବ୍ୟକ୍ତି ସରସ, ସୁନ୍ଦର ।

ତାଙ୍କ ଆତ୍ମଜୀବନଚରିତରେ ଘଟଣାବଳୀ କ୍ରମାନ୍ୱୟେ ସଜ୍ଜିତ ହୋଇପାରି ନାହିଁ । ନବିଡ଼ ଅନୁଭୂତିର ମୁଦ୍ରା ବହନ କରି କେତୋଟି ଉଚ୍ଛ୍ୱସିତ ଅଧ୍ୟାୟ ପ୍ରକାଶ ଲାଭ କରିଅଛି ମାତ୍ର । 'ଶୈଶବସ୍ମୃତି' ଓ 'ବାଲ୍ୟସ୍ମୃତି' ମଧ୍ୟରେ କୌଣସି ତାରତମ୍ୟ ନାହିଁ, ଏକ ଘଟଣାବଳୀର ରୋମନ୍ଥନ ମାତ୍ର । 'ପଢ଼ିଲେ ଶୁଣିଲେ ଦୁଧଭାତ, ନ ପଢ଼ିଲେ ଠେଙ୍ଗାମାଡ଼'—ଅବଧାନୀ ଶିକ୍ଷାପଦ୍ଧତିର ବିଭୀଷିକା ବହନ କରେ । 'ହୁକେ ହୋ ଜମ୍ବୀ ନାହାକେ, କଅାଁ ରଡ଼ିଖଣ୍ଡି କାଖରେ ଜାକେ' ଶୈଶବ ଜୀବନର ଚପଳ ଛନ୍ଦ ଧାରଣ କରେ ।

ରୋଗୀପ୍ରତି ସୁସ୍ଥ ବନ୍ଧୁମାନଙ୍କର ଉଦାସୀନ ମନୋଭାବ ଓ ରୋଗୀର ତୀବ୍ର ପ୍ରତିକ୍ରିୟା ତଳ ଉକ୍ତିରେ ପ୍ରକାଶ ପାଇଅଛି—

"ମୁଁ ଆଜି ଜୀବନସଂଗ୍ରାମରେ ଆହତ ହୋଇଛି ବୋଲି, ଦୀର୍ଣ୍ଣବକ୍ଷ, ଶୀର୍ଣ୍ଣ-ବାହୁ, ଜୀର୍ଣ୍ଣଜାନୁ ହୋଇ ଛିନ୍ନପକ୍ଷ ବିହଙ୍ଗମ ପରି ଭୂପତିତ ହୋଇଛି ବୋଲି ତୁମେ ମୋତେ ପରିହାସ କରୁଛ, ମୋର ଅବିମୃଶ୍ୟକାରିତା ପାଇଁ ଅବଜ୍ଞା କରୁଛ, ଅବହେଳା କରୁଛ, ଘୃଣା କରୁଛ, ଗୋଟାଏ ଭୁଲ୍ ପାଇଁ ଏତେ ଶାସ୍ତି ।"

ରସକଲ୍ଲୋଳକାର ଦୀନକୃଷ୍ଣଙ୍କ ପରି ସେ ଧୈର୍ଯ୍ୟଶୀଳ । ଇକ୍ଷୁ ପରି ନିଜକୁ ଭାଙ୍ଗି ସେ ଉତ୍କଳୀୟଙ୍କୁ ପିଆଇଛନ୍ତି ମଧୁର ରସ । ଧ୍ୱଂସର ଉପାଦାନରେ ଗଢ଼ିଛନ୍ତି ନୂତନ ତାଜ୍, କରୁଣ ରାଗିଣୀରେ ଭରପୂର । ଆତ୍ମଦାନର ଉଜ୍ଜ୍ୱଳତର ଦୃଷ୍ଟାନ୍ତ ଆଉ କେଉଁଠି ଅଛି ?

"ମୁଁ ଚାହେଁନା ତୃପ୍ତିର ଆରାମ୍, ମୁଁ ଚାହେଁନା ଶ୍ମଶାନର ଶାନ୍ତି; ଏହି କ୍ଳାନ୍ତିହୀନ ପ୍ରୟାସ ହିଁ ମୋର ପରମ କାମ୍ୟ । ଏହି ନିରବଚ୍ଛିନ୍ନ ସଂଗ୍ରାମ ହିଁ ମୋର ପରମ ସାର୍ଥକତା ।"

ତାଙ୍କ ଜୀବନଚରିତ ଘଟଣାବହୁଳ ନୁହେଁ । କେତେକ ଚଞ୍ଚଳ ଅଧ୍ୟାୟ ସାବଳୀଳ ପ୍ରକାଶରେ ନାଟକୀୟ ହୋଇଅଛି । ରୋଗଶଯ୍ୟାର ଚିତ୍ର ଅତ୍ୟନ୍ତ କରୁଣ । ନିଜର ଦୁର୍ଦ୍ଦଶା ଲାଗି ସେ ଭାଗ୍ୟ ବା ଭଗବାନ୍‌ଙ୍କୁ ଦାୟୀ କରିନାହାନ୍ତି । ନିଜକୁ ଦୋଷୀ ସାବ୍ୟସ୍ତ କରି ଅମ୍ଳାନ ବଦନରେ ସେ ଦୁଃଖର ଭାର ବହନ କରିଛନ୍ତି । ଦୁଃଖ ହିଁ ତାଙ୍କ ଗୀତିକବିତାର ମୂଳ ଉତ୍ସ, ପ୍ରତ୍ୟେକ ଅଶ୍ରୁବିନ୍ଦୁକୁ ମୁକ୍ତାରେ ପରିଣତ କରିବା ଗୌରବରେ ଦୁଃଖତାପିତ ଜଗତ୍ ସମକ୍ଷରେ ଏକ ନୂତନ ଆଦର୍ଶ ଉପସ୍ଥାପିତ କରିଛନ୍ତି ।

"ଦୁଃଖ, ଦୁର୍ଭାଗ୍ୟ, ବିଫଳତା ମଧ୍ୟରେ କବି ଯେଉଁ ମାଧୁର୍ଯ୍ୟର ସ୍ୱପ୍ନ ଦେଖେ, ତାହାର ଲୋଭରେ ହୁଏତ ସେ ଅବଚେତନ ମନ ଭିତରେ ଦୁଃଖ ଦୁର୍ଭାଗ୍ୟକୁ ଲୋଡ଼ୁଥାଏ । ବାହାରେ ଦେଖିବାକୁ ଅଭିଶାପ ହେଲେ ମଧ୍ୟ କବି ପ୍ରତି ଏହା ଗୋଟିଏ ପ୍ରଚ୍ଛନ୍ନ ଆଶୀର୍ବାଦ ।"

କାନ୍ତକବିଙ୍କ ଅନ୍ତରର କୋମଳତା ତଳେ କି ଦୃଢ଼ତା ଥିଲା, କି ବିଭବ ତାଙ୍କୁ ଚିରସୃଷ୍ଟିଶୀଳ ଓ କ୍ରିୟାଶୀଳ କରିଥିଲା, ଏହି ଉକ୍ତି ତାହା ବହନ କରେ । ବେଦନାର ବୀଣାରେ ଆନନ୍ଦର ସ୍ୱରଝଙ୍କାର ସୃଷ୍ଟି କରିବା ତେଣୁ ତାଙ୍କ ପକ୍ଷେ ସମ୍ଭବ ହୋଇଥିଲା ।

'ନଦୀ ଘେ ସାଲନ୍ଦୀ', 'ଶ୍ରାବଣେ ସାଲନ୍ଦୀ', 'ଶରଦେ ସାଲନ୍ଦୀ' ଗଦ୍ୟ-କାବ୍ୟ । 'ଗୋପବନ୍ଧୁ ସ୍ମୃତି', 'ଚିନ୍ତାମଣି ସ୍ମୃତି' ଉଭୟ କବିଙ୍କ ସହିତ କାନ୍ତ-କବିଙ୍କର ନିବିଡ଼ ସମ୍ପର୍କର ଇଙ୍ଗିତ ଦିଏ । ଦେବତ୍ୱ ଓ ମାନବତ୍ୱର ମଧୁର ସମନ୍ୱୟରେ କିପରି କବିତ୍ୱ ସମ୍ଭବ ହୁଏ 'କବି ଓ କବିତ୍ୱ' ପ୍ରବନ୍ଧରେ ବିଶ୍ଳେଷଣ କରାଯାଇଛି ।

କାନ୍ତକବିଙ୍କ ରଚନାରେ ମୁଖ୍ୟତଃ ଦୁଇଟି ବିଭବ ରହିଅଛି—ହାସ୍ୟରସ ଓ ସ୍ୱରନିର୍ଝର । 'ସାହିତ୍ୟ ସୃଷ୍ଟିରେ ହାସ୍ୟରସ', 'ଓଡ଼ିଆ ସଙ୍ଗୀତ' ପ୍ରବନ୍ଧ ଏହି ଦୁଇ ବିଭବ ଉପରେ ଉଜ୍ଜ୍ୱଳ ଆଲୋକପାତ କରେ । ହିନ୍ଦୁସ୍ଥାନୀ ଓ ଦ୍ରାବିଡ଼ୀ ଧାରା ମଧ୍ୟରେ ଓଡ଼ିଶୀ ସଙ୍ଗୀତର ସ୍ଥିତି ଓ ଗତି ସେ ଦର୍ଶାଇଛନ୍ତି ।

ଓଡ଼ିଆ ବନାଦୁର୍ଭିକ୍ଷ, ମହାମାରୀ ପ୍ରଭୃତି ନାନା ଦୁଃଖ ଦୁର୍ବିପାକକୁ ଯେ ହସି ଉଡ଼ାଇ ଦେଇଥିଲା, ଯାତ୍ରା, ଲୀଳା, ସୁଆଙ୍ଗର ଦୁଆରି, ଶଙ୍କରା ବା ଶଠାଖ୍ୟ ଚରିତ୍ର ମଧ୍ୟରୁ, ବଇଦ ତାମ୍‌ସା, ସାହେବ ତାମ୍‌ସା ପ୍ରଭୃତି ମୋଗଲ୍ ତାମ୍‌ସା ମଧ୍ୟରୁ ଦୃଷ୍ଟାନ୍ତ ଦେଇ ଲେଖକ ଦର୍ଶାଇଛନ୍ତି । ହାସ ଛଳରେ ସାମାଜିକ ଦୁର୍ନୀତି ଓ ଦୁର୍ଗତି ପ୍ରତି କିପରି ଲୋକଦୃଷ୍ଟି ଆକର୍ଷଣ କରାଯାଇ ପାରେ, ତାହା ସେ ବୁଝାଇଛନ୍ତି । 'ଶରୀରମାଦ୍ୟଂ' ଡାକ୍ତରଙ୍କର ନୁହେଁ, ରୋଗୀର ଏକ ସ୍ୱାସ୍ଥ୍ୟରକ୍ଷା

ପ୍ରବନ୍ଧ । ବିକଟ ଅନୁଭୂତିର ଚିନ୍ତ ଓ ସତର୍କତା ଅବଲମ୍ବନ ଲାଗି ଶାଣିତ ଉପଦେଶ ଏହାର ଉପଜୀବ୍ୟ । ଧୂପକାଠି ପରି ଲେଖକ ବେଦନାର ହୁତାଶରେ ପ୍ରଜ୍ୱଳିତ ଓ ଭସ୍ମୀଭୂତ ହୋଇ ଯାଉଛନ୍ତି, କିନ୍ତୁ ସୁରଭି ବିତରଣରୁ ବିରତ ହୋଇ ନାହାନ୍ତି । ତେଣୁ ଏହା ଆର୍ତ୍ତନାଦ ନୁହେଁ, ମାରୋଗମାନଙ୍କୁ ଏକ ଚେତାବନୀ । ଲକ୍ଷ୍ମୀକାନ୍ତଙ୍କ ପରପ୍ରାଣତା ଓ ଉଚ୍ଚ ମାନବତାର ବିକଚ ରୂପ ଏଥିରେ ଦେଖିବାକୁ ମିଳେ ।

ଦୁଃଖର ଆଘାତରେ ରାଧାନାଥଙ୍କ ଲେଖନୀ ନିସ୍ପନ୍ଦ ହୋଇଯାଇଛି, କିନ୍ତୁ ପତନ ଆଡ଼ ବ୍ୟାଧିରେ ଲକ୍ଷ୍ମୀକାନ୍ତଙ୍କ ସପ୍ତସ୍ୱର ବାଜି ଉଠିଛି ।

## ଶିଶୁ ସାହିତ୍ୟ—

କାନ୍ତକବି ଶିଶୁ ଓ କିଶୋରମାନଙ୍କ ଲାଗି ଗଦ୍ୟ ଓ ପଦ୍ୟ ଉଭୟ ରଚନା କରିଛନ୍ତି । ଅଧିକାଂଶ ପାଠ୍ୟ ଉଦ୍ଦେଶ୍ୟରେ ରଚିତ । ତେଣୁ ବିନୋଦନ ଅପେକ୍ଷା ନୀତିଶିକ୍ଷା ଦେବାର ପ୍ରବୃତ୍ତି ଏଥିରେ ଅଧିକ । ଶିଶୁ ଜାତିର ଭବିଷ୍ୟତ । ଆଦର୍ଶ ଶିଶୁରୁ ଆଦର୍ଶ ମନୁଷ୍ୟ ହେବା ସମ୍ଭବ । ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଶକ୍ତିରେ ବଳୀୟାନ୍ ହୋଇ ସେ ବିଶ୍ୱଦରବାରରେ ଜାତିର ମର୍ଯ୍ୟାଦା ବୃଦ୍ଧି କରି-ପାରିବେ । ଏଇ ବିଶ୍ୱାସରେ ସେ ପରାଧୀନ ଉତ୍କଳର ଶିଶୁସାହିତ୍ୟକୁ ନୀତିଶିକ୍ଷା ଭିତରେ ଗଠନ କରିଛନ୍ତି ।

କବି 'ପାଠମାଳା'ର ମୁଖବନ୍ଧରେ ଲେଖିଛନ୍ତି "ଏଗୁଡ଼ିକ ପିଲାଙ୍କ ଚିତ୍ତରେ ଧର୍ମଭାବ ଜାଗ୍ରତ କରାଇ ଗୁରୁଜନଙ୍କ ପ୍ରତି ସେମାନଙ୍କ ଶ୍ରଦ୍ଧାଭକ୍ତି ଓ ଭଗବାନ୍‌ଙ୍କ ପ୍ରେମ ବିଶ୍ୱାସ ଆକର୍ଷଣ କରିବାରେ କିଞ୍ଚିତ୍ ସହାୟତା କରିପାରିଲେ ଆଶା ଓ ଶ୍ରମ ସଫଳ ହେବ ।"

କିଶୋରମାନଙ୍କ ଚରିତ୍ର ଗଠନ ଲାଗି ସେ ଅଧ୍ୟବ୍ୟବସାୟ, ଧୈର୍ଯ୍ୟ, ସହିଷ୍ଣୁତା, ସତ୍ୟଭାଷଣ ଓ ସାହସିକତା ଶିକ୍ଷା ଦେଇଛନ୍ତି । ଈଶ୍ୱରଙ୍କ ପ୍ରତି ଭକ୍ତି, ପିତାମାତା, ଗୁରୁଜନଙ୍କ ପ୍ରତି ଭକ୍ତି ଓ ଦେଶାତ୍ମବୋଧ ଜାଗ୍ରତ କରିବା ତାଙ୍କ ସାହିତ୍ୟର ମୂଳ ଲକ୍ଷ୍ୟ । ତାଙ୍କ ରଚନାମାନଙ୍କରେ ସେ ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ରଧନୁ, ଆକାଶ, ମେଘ, ସମୁଦ୍ର, ନଦୀ, ପଶୁ, ପକ୍ଷୀ ପ୍ରଭୃତି ପ୍ରତି ଗଭୀର ପ୍ରୀତି ଉଦ୍ରେକ କରିବା ପ୍ରୟାସ କରିଛନ୍ତି । ନୀତିଶିକ୍ଷା ଦେବା ପ୍ରବୃତ୍ତି ବେଳେ ବେଳେ ଉତ୍କଟ ଓ ଅରୁଚିକର ହୋଇଅଛି ।

ପଦ୍ୟରେ ପୃଥିବୀଭୂଗୋଳ ଶିକ୍ଷାଦେବା ମଧ୍ୟ ସେହିପରି ହାସ୍ୟକର ହୋଇଅଛି—

"ପୃଥିବୀ ଅଟଇ ଗୋଲ ଆକାର, ମୋ ସୁନାଫୁଲ
ସତେ କି କମଳାଲେମ୍ବୁ ପ୍ରକାର ।"

'ପିଲାଙ୍କ କଥା'ରେ ଏକଲବ୍ୟ, ଅସ୍ତିକ, ଧ୍ରୁବ, ପ୍ରହ୍ଲାଦ, ଲବକୁଶ ଓ ଲୋକଗଳ୍ପ 'ଚନ୍ଦ୍ରହାସ' ପ୍ରଭୃତି ଶିକ୍ଷାପ୍ରଦ ବିଷୟ ପରିବେଷଣ କରିଅଛନ୍ତି । 'ସାହିତ୍ୟସୁଧାକର' ଉଚ୍ଚଶ୍ରେଣୀର ଛାତ୍ରଙ୍କ ଲାଗି ଉଦ୍ଦିଷ୍ଟ । ରଚନାକୁ ରୋଚକ ଓ ରମଣୀୟ କରିବା ଲାଗି ଲେଖକ ବହୁ ଅଧ୍ୟବସାୟ କରିଛନ୍ତି । ସ୍ରଷ୍ଟା ଲକ୍ଷ୍ମୀକାନ୍ତଙ୍କ କଳ୍ପିତ ସ୍ୱରୂପ ଏଥିରେ ଦେଖିବାକୁ ମିଳେ ।

ଜୀବଜନ୍ତୁ ବା ଚଢ଼ିଆଖାନାର କବିତାଗୁଡ଼ିକ ଆକାରରେ କ୍ଷୁଦ୍ର । ଭାବ ସରଳ, ସ୍ୱଚ୍ଛ; କଳ୍ପନା ପ୍ରବଣତା ନାହିଁ; କହିଲେ ଚଳେ । ଏହା ମନକୁ ଭାବବିହ୍ୱଳ କରେନାହିଁ; କଳ୍ପିତ କୌତୁକଚଞ୍ଚଳ କରେ ମାତ୍ର । ଏଥିରେ ବ୍ୟାଘ୍ର, ଭଲ୍ଲୁକ, ହସ୍ତୀ, ମହିଷ, ଶୃଗାଳ, ବକ, କାକ ଓ ପେଚକ ପ୍ରଭୃତିଙ୍କର ଆକୃତି ଓ ପ୍ରକୃତିର ସରଳ ବିବୃତ୍ତି ବା ବର୍ଣ୍ଣନା ଦିଆଯାଇଛି ମାତ୍ର । ସେମାନଙ୍କ ସଦ୍‌ଗୁଣ ଅନୁକରଣ କରିବା ଲାଗି ଶିଶୁମାନଙ୍କୁ ଉପଦେଶ ଦିଆଯାଇଛି, କବି ଜାତୀୟ ଶିଶୁଙ୍କ ଲାଗି ଏହା ଉଦ୍ଦିଷ୍ଟ ନୁହେ । ଚଢ଼ିଆଖାନା ନ ଦେଖିଥିବା ସାଧାରଣ ଶିଶୁମାନଙ୍କ ମନରେ ଏହା କୌତୂହଳ ସୃଷ୍ଟି କରିବା ସମ୍ଭବ । କିନ୍ତୁ ପେଚକକୁ 'ଦେଢ଼ଶୁର ଅଇଁଠାଖାଇ' କହିବାର ମର୍ମ ଶିଶୁ ଆଦୌ ହୃଦୟଙ୍ଗମ କରିପାରିବ ନାହିଁ ।

'ବାଳଚରବୋଲ୍'ରେ ବାଳଚର ବା ସ୍କାଉଟଙ୍କ ବ୍ୟବହାର ଉପଯୋଗୀ ସଙ୍ଗୀତ ସଂକଳିତ ହୋଇଅଛି । ଏହା ଉଦ୍ଦେଶ୍ୟମୂଳକ । ତେଣୁ କବିତ୍ୱର ସନ୍ଧାନ କରିବା ବୃଥା । ଭଗବଦ୍‌ପ୍ରୀତି, ଦେଶପ୍ରୀତି, ବିଶ୍ୱଜନପ୍ରୀତି ଜାଗ୍ରତ କରିବା କବିଙ୍କ ଉଦ୍ଦେଶ୍ୟ ।

ଆମେ ବାଳଚର, ଆମେ ବାଳଚର, ଆମେ ଅଟୁ ବାଳଚର,
ସର୍ବେ ଆମର, ଆମେ ସଭିଙ୍କର, କେହି ନୁହେ ଆମ ପର,
ହୃଦୟେ ଆମର ମାନବ ପ୍ରୀତି,
କାହାରିକି ଆମେ କରୁନା ଭୀତି,
ମାନବ ଦୁଃଖ ହରିବାକୁ ଆମେ ଖୋଜି ବୁଲୁ ଘର ଘର !

**ସଙ୍ଗୀତ—**

ସଙ୍ଗୀତ ମୋ ଜୀବନ ସାଥୀ
ମୋ ଅନ୍ଧ ନୟନ ଆଗେ
ନାନା ଛନ୍ଦେ ନାନା ରଙ୍ଗେ
ତାହାର ମୂରତି ଜାଗେ ଦିବସ ରାତି

ସଙ୍ଗୀତ କାନ୍ତକବିଙ୍କର ବିଳାସ ନୁହେଁ, ତାଙ୍କ ଜୀବନର ଅମୃତ ଉତ୍ସ । ଅନ୍ତରର ନିଗୂଢ଼ ବ୍ୟଥା ଯେତେବେଳେ ଅଶ୍ରୁ ହୋଇ ବୋହିଯାଇଛି, ସେତେ-ବେଳେ ଦେଖା ଦେଇଛି ସଙ୍ଗୀତ ରୂପରେ । ତେଣୁ 'ଜୀବନସାଥୀ' କହିବାରେ କିଛି ଅତ୍ୟୁକ୍ତି ହୋଇନାହିଁ ।

କାନ୍ତକବିଙ୍କ ସଙ୍ଗୀତରତ୍ନାକର ମଧ୍ୟରୁ ଦୁଇଟି ରତ୍ନ ବଛା ଯାଇପାରେ । ଓଡ଼ିଆ ଜାତି ପ୍ରାଣର ସମସ୍ତ ଐଶ୍ୱର୍ଯ୍ୟ ଓ ଉଜ୍ଜ୍ୱଳତା ଗୋଟିକରେ, ଆଉ ଗୋଟିକରେ ଉତ୍କଳୀୟ ସ୍ୱାଧୀନତା ବିଲୋପ ପରବର୍ତ୍ତୀ ଗାଢ଼ ଅନ୍ଧକାରର ଆକୁତି । ବଙ୍କିମଚନ୍ଦ୍ରଙ୍କ 'ବନ୍ଦେ ମାତରଂ' ପରି ସେ ଉତ୍କଳକୁ ଦେଇଛନ୍ତି ଗୋଟିଏ ମନ୍ତ୍ରଗୀତ—ବନ୍ଦେ ଉତ୍କଳ ଜନନୀ । ଉତ୍କଳର ସୁଦୃଶ୍ୟ ଭୂଗୋଳ, ଗୌରବମୟ ଇତିହାସ, ଜଗତ୍ ପ୍ରସିଦ୍ଧ ତୀର୍ଥ କ୍ଷେତ୍ର, ସ୍ଥାରୁ କାରୁକଳା ଓ ଜ୍ଞାନଗୌରବର ହୃଦୟଗ୍ରାହୀ ଚିତ୍ର ଏତେ ଚମତ୍କାର ଭାବରେ ଆଉ କିଏ ଆଙ୍କି ପାରିଛି ? ଏ ଗୋଟିଏ ପ୍ରତିନିଧିମୂଳକ ସଙ୍ଗୀତ । ତଳ ଗୀତଟି ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଗତ । ଏଥିରେ ଉତ୍କଳର ଶ୍ରୀ ସମୃଦ୍ଧି, ଶୌର୍ଯ୍ୟବୀର୍ଯ୍ୟ, ତ୍ୟାଗ ତପସ୍ୟା ସୁନ୍ଦରଭାବେ ଚିତ୍ରିତ ହୋଇଅଛି—

କୋଟି କୋଟି କଣ୍ଠେ ଆଜି
ଉଠୁରେ ମଧୁରେ ବାଜି
ଉତ୍କଳର ଜୟଗୀତ ଉନ୍ମାଦନା ଭରି
କମ୍ପି ଉଠୁ ଶୈଳ ରାଜି ସସାଗରା ଧରା
କମ୍ପି ଉଠୁ ଶୂନ୍ୟେ ଶୂନ୍ୟେ ଆକାଶ ଅବନୀ
ପୁଣ୍ୟମୟୀ ମାଆ ମୋର ଉତ୍କଳ ଜନନୀ ।

ତାଙ୍କ ଦ୍ୱିତୀୟ ଗୀତଟି ହେଉଛି—'ସବୁଥିରୁ ବଞ୍ଚିତ କରି ।' ବ୍ୟକ୍ତିଗତ ବେଦନାର ତୀବ୍ରତମ ଭାବେ ଉଚ୍ଛ୍ୱାସ ବ୍ୟକ୍ତ ହେଲା ପରି ବୋଧହେଲେ ବି ଏହା ତଳେ ଥିବା ବ୍ୟକ୍ତି ସମଗ୍ର ଜାତିର ପ୍ରତିନିଧିତ୍ୱ କରେ । ସେ ଜାତି ଦରିଦ୍ର, ଲାଞ୍ଛିତ । ତାର ବାଣିଜ୍ୟବ୍ୟବସାୟ ଅବଲୁପ୍ତ, ଶିଳ୍ପକଳା ବିନଷ୍ଟ । ନିଃସ୍ୱ, ସର୍ବହରା; ତାଠାରୁ ହରଣ କରି ନେବାକୁ ଆଉ କିଛି ନାହିଁ । ଭୌତିକ ସମ୍ପଦରେ ଆସ୍ଥା ହରାଇ ସେ କାଙ୍ଗାଳ, ରୁଗ୍ଣ । ବିଶ୍ୱର ଐଶ୍ୱର୍ଯ୍ୟପୂର୍ଣ୍ଣ ଦରବାରରେ ସେ ଅବହେଳିତ, ଅପମାନିତ । ବନ୍ୟା, ଝଞ୍ଜା, ନଅଙ୍କ, ମଡ଼କ ଓ ମହାମାରୀରେ ବିଧ୍ୱସ୍ତ ଜାତିର ବେଦନାର ବୀଣା ବାଜି ଉଠିଛି କରୁଣତମ ସ୍ୱରରେ ଏହି ସଙ୍ଗୀତରେ । ଏହାର ଯୋଡ଼ି ପ୍ରାଚୀନ ଛାନ୍ଦ, ଚଉତିଶା ବା ଚଉପଦୀ ସାହିତ୍ୟରେ ନାହିଁ । ଆସ୍ୱାଦମୌଳିକ । ବୋଲି କହିବା ମାନେ ଏହା ହୃଦୟକୁ ବେଦନାତୁର କରେ, ଚକ୍ଷୁକୁ ସଜଳ କରେ, ଏହା ଓଡ଼ିଶାରେ ଏକାନ୍ତ ଏକକ । ଅନୁଭୂତ

କେତେ ନିବିଡ଼ ହେଲେ ଏହି ସ୍ୱର ଓ ସ୍ୱରୂପରେ ଦାନା ବାନ୍ଧେ ତାହା କଳନା କରିପାରିଲେ ଲକ୍ଷ୍ମୀକାନ୍ତଙ୍କୁ ଜଣେ ଶ୍ରେଷ୍ଠ ସଙ୍ଗୀତ କବି ରୂପେ ଗ୍ରହଣ କରି ହୁଏ। ବେଦନାର ଗୀତ ମଧୁର—ମଧୁରତମ, ଏ ତାର ସଙ୍ଗବ ପ୍ରମାଣ।

ତଳେ ଉଦ୍ଧୃତ କବିଙ୍କ ଅନ୍ୟ ଏକ ସଙ୍ଗୀତର ଭାବ ମଧ୍ୟ ସେହିପରି। କିନ୍ତୁ ମୌଳିକ ନୁହେଁ, କୋମଳ, କାନ୍ତ, କରୁଣ।

ଭଙ୍ଗା ମୋର ଡଙ୍ଗା ଖଣ୍ଡିକ ଯାଉଛି ଭାସି
କେଉଁ ଅଜଣା ଗାଁଇକେ କିସ ମନାସି
ରତି ରତି ହେଉଛି ବେଳ
ଦରିଆରେ ନ ଦିଶେ କୂଳ
ମିଶିଯିବ କି ଶିଅଦାରେ ମନ ଉଦାସୀ।

କବିଙ୍କ ସଙ୍ଗୀତରେ ଦୁଇଟି ରୀତି ଦୃଷ୍ଟ ହୁଏ—ଗୋଟିଏ ଲୋକରୀତି, ଅନ୍ୟଟି ବିଦଗ୍ଧରୀତି। ଲୋକଗୀତ ତାଙ୍କର ଉତ୍ସ। ସେ ସେଥିରୁ ଶବ୍ଦ ଓ ସ୍ୱର ଚୟନ କରି ବ୍ୟବହାର କରିଛନ୍ତି। ବିଦଗ୍ଧ ରୀତିର ସଙ୍ଗୀତ ରଚନାରେ କବିସୂର୍ଯ୍ୟ ତାଙ୍କର ଗୁରୁ। କିନ୍ତୁ ସଂସ୍କୃତ ଶବ୍ଦ ଏଥିରେ ସ୍ୱଳ୍ପ। ସେ କେବଳ ସ୍ୱର ଅନୁକରଣ କରିଛନ୍ତି।

'ଜୀବନ ସଙ୍ଗୀତ'ରେ କବି ଲକ୍ଷ୍ମୀକାନ୍ତ ରହସ୍ୟବାଦୀ। ପ୍ରାଚୀନ ବୈଷ୍ଣବ କବିତାର ଧାରା ଓ ରବୀନ୍ଦ୍ର କବିତା ଧାରାରେ ଏହା ପରିପୁଷ୍ଟ। କେଉଁ ସଙ୍ଗୀତରେ କବି ନିଜକୁ ବାସକସଜ୍ଜା ନାୟିକାରୂପେ କଳ୍ପନା କରିଛନ୍ତି, କାହିଁରେ ବା ଅରୂପ ରୂପାୟିତ ହୋଇଛି। କାହିଁରେ ଅଭିସାରିକାରୂପେ ରହଃସ୍ଥଳକୁ ଯାଇ ନିରାଶ ହୋଇ ଫେରିଛନ୍ତି, କାହିଁରେ ଭଗବତ୍ ପ୍ରାପ୍ତିକୁ ବାମନର ଚନ୍ଦ୍ର ସ୍ପର୍ଶ ଆଶା ସହିତ ସମାନ କରିଛନ୍ତି; କାହିଁରେ ମଣିଷ ଭଗବାନଙ୍କୁ ଭକ୍ତିପ୍ରୀତି ଅର୍ଘ୍ୟ ଅର୍ପଣ କରେ, ଭଗବାନ ମଣିଷ ପ୍ରତି ଭ୍ରୂକ୍ଷେପ କରନ୍ତି ନାହିଁ ବୋଲି ଅଭିମାନ ପ୍ରକାଶ କରିଛନ୍ତି, କାହିଁରେ ଭଗବାନ୍ ମଣିଷକୁ ଆପଦବିପଦରେ କଠୋର ପରୀକ୍ଷା କରନ୍ତି ବୋଲି କହିଛନ୍ତି, କାହିଁରେ ଭଗବାନ୍‌ଙ୍କୁ ମଣିଷର ପାପପୁଣ୍ୟର ବିଚାରକ ଆସନରେ ବସାଇଛନ୍ତି, କାହିଁରେ ସେ ହର୍ତ୍ତାକର୍ତ୍ତା ଭାଗ୍ୟବିଧାତା, ଜୀବନଯନ୍ତ୍ରର ଯନ୍ତ୍ରୀ, ଜୀବନବୀଣାର ବାଦକ, ସଖା, ସୋଦର, ପିତା। ଭଗବାନଙ୍କ ସହିତ ମଣିଷର ଯାବତୀୟ ପାରମ୍ପରିକ ସମ୍ପର୍କ କବି ନାନାଭାବରେ ରୂପାୟିତ କରିଛନ୍ତି। ଯଦି ପରମେଶ୍ୱର ଦୁଃଖ ପୀଡ଼ିତ ମଣିଷ ପ୍ରତି ସମବେଦନାଶୀଳ, ସେ କାହିଁକି ବାଦ୍ ପଡ଼ିବେ ?

ତୁମ ରାଜ୍ୟେ ପରି ନାହିଁ ଦୁଃଖୀ
ତହିଁରୁ ବାହାର ଏକୁଟିଆ ମୁଁ କି ?

କେଉଁ ସଙ୍ଗୀତରେ ସ୍ୱାର୍ଥପର ମନର ନଗ୍ନ ସତ୍ୟ ମଧ୍ୟ ପ୍ରକାଶ କରିଛନ୍ତି—

ସପନରେ ଧନେ ହେଲେ ଡାକ ନାହିଁ ପ୍ରାଣ ଖୋଲି
ଡାକୁଛୁ ତୁମ୍ଭଙ୍କୁ ଆଜି ବିପଦେ ପଡ଼ିଛୁ ବୋଲି ।

ଲକ୍ଷ୍ମୀକାନ୍ତ—'କଳା ପାଇଁ କଳା' ତତ୍ତ୍ୱରେ ଆସ୍ଥାବାନ୍ ନୁହନ୍ତି । ତାଙ୍କ ମତରେ କଳା ଜୀବନର ଧାତ୍ରୀ; ଜୀବନକୁ ସୁସ୍ଥ, ସଚଳ ଓ ସୁନ୍ଦର କରିବାର ଦାୟିତ୍ୱ ତାର, ସେ ଦୃଷ୍ଟିରୁ କଳାର ଏକ ପ୍ରତ୍ୟକ୍ଷ ଭୂମିକା ରହିଅଛି । ସଂସ୍କାର-ମନୋବୃତ୍ତି ଘେନି ସେ ପ୍ରୟୋଜନୀୟ ସାହିତ୍ୟ ସୃଷ୍ଟି କରିବାରେ ତତ୍ପର ହୋଇଛନ୍ତି । ଜାତିଭେଦଦୂରୀକରଣ, ଅସ୍ପୃଶ୍ୟତାନିବାରଣ, ହିନ୍ଦୁମୁସଲମାନ ମିଳନ, ଅଧିକ-ଶସ୍ୟଉତ୍ପାଦନ ପ୍ରଭୃତି ସର୍ବକାରୀୟ ଉନ୍ନତିକରଯୋଜନାମାନ ଘେନି ପ୍ରଚାରମୂଳକ ସଙ୍ଗୀତ ରଚନାରେ ତତ୍ପର ହୋଇଛନ୍ତି । ସେଥିରୁ କେତେକ ଅଦ୍ୟାପି ଲୋକପ୍ରିୟ ରହିଅଛି । ଗୋଟିଏ ଦୃଷ୍ଟାନ୍ତ ଦିଆଗଲା—

ଦାନାର ଯୋଗାଡ଼ କରରେ କୃଷୀ
ଦାନାର ଯୋଗାଡ଼ କର
ପର ଗୋଲାମି ଛାଡ଼ି କୃଷୀ ଲଙ୍ଗଳ ମୁଠି ଧର ।
ଆପଣା ଦୋଷେ ବୁଦ୍ଧି ହଜି
ପେଟ ଜ୍ୱାଳାରେ ମରୁ ପୋଡ଼ି
ଅନ୍ଧାର ଭିତରେ ଅନ୍ଧାଳି ହୋଇ ହେଉ ହରବର ।
ଧାନ ମୁଠାକ ଥିଲେ ଘରେ
ଗୋଡ଼ ଦେଇଥା ଗୋଡ଼ ପରେ
ରଜା ହୋଇ ମୋଡ଼ୁଥା ନିଶ ଆଉ କାହାକୁ ଡର ?
ହିଡ଼ ମାଟି ହିଡ଼ରେ ଦେଇ
ବାଟ ଗୁଳୁଆ ଗୁଡ ଫୁଲାଇ
ପର ହାତକୁ ଆଉ ନ ଚାହିଁ ଆପଣା ଭୂଇଁରେ ଚର ।

ଲଳିକାରଚନା ଲକ୍ଷ୍ମୀକାନ୍ତଙ୍କର ଏକ ବଡ଼ ବିଶେଷତ୍ୱ । ଯେପରି ସଂଖ୍ୟାରେ ବହୁଳ, ଗୁଣରେ ମଧ୍ୟ ଏହା ସେହିପରି ଉନ୍ନତ । ଓଡ଼ିଶାରେ ଅତି ଲୋକପ୍ରିୟ ଗୀତଗୁଡ଼ିକର ସେ ଲଳିକା ଲେଖିଛନ୍ତି । ଗମ୍ଭୀର ଗୀତ ପଦରୁ ଶ୍ରୋତା ହଠାତ୍ ଅବତରଣ କରେ ଉଚ୍ଛ୍ୱସିତ ହାସ୍ୟରସକୁ । ଯବନିକାର ବଦଳି ହୁଏ ହୃଦୟରଙ୍ଗମଞ୍ଚରେ, ହଠାତ୍ ବର୍ଣ୍ଣୋଜ୍ଜ୍ୱଳ ଦୀପ୍ତିର ଆବିର୍ଭାବ, ଶୁଷ୍କ ରୁକ୍ଷ ମରୁଭୂମିରେ ଢାଳି ହୋଇଯାଏ ଯେପରି କି ଏକ ଶୀତଳ ନିର୍ଝର ।

ପଥ ଗୁଡ଼ି ଦେ ଯିବ ଓଲ ଝୋଲ, ଆରେ ବନମାଳୀ
ଏତେ ବେଳୁଁଟାରେ ନୁହେଁ ଭଲ
କସି ଭୂଆସୁଣୀ ସଙ୍ଗେ ଗେଲ । ଇତ୍ୟାଦି ।

ଗୋଟିଏ ସାର୍ଥକ ଲଳିକା ହୋଇଛି । 'କସି' ଶବ୍ଦଟି ବିଶେଷ ଭାବପ୍ରକାଶ ଓ କୈଶୋରଯୌବନ ବୟଃସନ୍ଧିର ପ୍ରତୀକ ହୋଇଅଛି । ଶବ୍ଦ ଯୋଜନାରେ କାନ୍ତକବିଙ୍କ କାରିଗରୀର ଏହା ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

'ଚଟକ ଚନ୍ଦ୍ରହାସ ଚମ୍ପୂ' , 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର ଅନୁକରଣରେ ଲିଖିତ । ଚମ୍ପୂର ସମସ୍ତ ବୃତ୍ତ ଲଳିକାରେ ଅନୁସୃତ ହୋଇଅଛି । ଲଳିକାର ନାୟକ ଚଟକଚନ୍ଦ୍ର ଶ୍ରୀକୃଷ୍ଣ ଚତୁର, ଚଟୁଳ ଚଗଲଙ୍କ ପ୍ରତିନିଧି । ରାଧା ଆଧୁନିକା ନାୟିକା । ଉଭୟେ ସିନେମା ଦେଖନ୍ତି, ଗ୍ଲୁ, ବିସ୍କୁଟ୍ ଖାନ୍ତି । ସେମାନଙ୍କ ପ୍ରସାଧନ, ଧୂମପାନ ପ୍ରଭୃତିର ବ୍ୟଙ୍ଗାତ୍ମକ ଚିତ୍ର ଏହି ଚମ୍ପୂରେ ପରିବେଷିତ ହୋଇଛି ।

ସାମାଜିକ ଅଧୋଗତିର ଚିତ୍ର ସେ ହାସ୍ୟାତ୍ମକ ରୂପରେ ଫୁଟାଇଛନ୍ତି । ତାଙ୍କ ମତରେ 'ନକଲରେ ଅକଲ ନାହିଁ' । କବି ଅକଲ୍ ରକ୍ଷା କରିପାରି ନାହାନ୍ତି । ସ୍ଥାନେ ସ୍ଥାନେ ଅଶ୍ଳୀଳ ଓ ବୀଭତ୍ସ ଚିତ୍ର ତାଙ୍କ ଲଳିକାର ମାଧୁର୍ଯ୍ୟ ନଷ୍ଟ କରିଦେଇଛି । ହିମୁ ହିସୁ ନାସିକା ବା ଭ୍ରୂ କୁଞ୍ଚିତ ହୋଇଯାଏ ।

**ନାଟକ ବା ପ୍ରହସନ—**

ଲକ୍ଷ୍ମୀକାନ୍ତ ଛାତ୍ରଜୀବନରେ ଉଭୟ ସ୍ତ୍ରୀ ଓ ପୁରୁଷ ଭୂମିକାରେ ଅଭିନୟ କରି ଯଶସ୍ୱୀ ହୋଇଥିଲେ । ସ୍ତ୍ରୀ ବେଶରେ ନୃତ୍ୟ କଲାବେଳେ ତାଙ୍କୁ ବାରାଙ୍ଗନା ବୋଲି ସନ୍ଦେହ କରାଯାଇଥିଲା । ଇନ୍ଦ୍ର ହୋଇ ଅଭିନୟ କଲାବେଳେ ଭଗିନୀ ଜାହ୍ନବୀଦେବୀ ଥରେ ପ୍ରଶ୍ନ କରିଥିଲେ – ଭାଇ, ତୁ ଏଡ଼େ ସୁନ୍ଦର କଥା କେମିତି କହୁଛୁ ? ଲକ୍ଷ୍ମୀକାନ୍ତ ଉତ୍ତର ଦେଲେ – ମୁଁ କଣ କହୁଛି ? ସ୍ୱୟଂ ଇନ୍ଦ୍ର କହୁଛନ୍ତି । ଏଥିରୁ ଏହା ପ୍ରମାଣିତ ହୁଏ ଯେ କିଶୋର ବୟସରେ କବି ଜଣେ ଉତ୍କୃଷ୍ଟ ଅଭିନେତା ହୋଇପାରିଥିଲେ ଓ ତାଙ୍କର ନାଟକପ୍ରୀତି ଗଭୀର ଥିଲା ।

୧୯୬୧ ମସିହାରେ କୁଳଦେବତା ଗୋପୀନାଥଙ୍କ ନାମାନୁସାରେ ସେ 'ଗୋପୀନାଥ ସଙ୍ଗୀତ ସମାଜ' ଗଠନ କଲେ । ଏହି ସମାଜ ପ୍ରଥମେ ଯାତ୍ରା, ପରେ ଥିଏଟର ନାଟକ ଅଭିନୟ କରିଥିଲେ । ଲକ୍ଷ୍ମୀକାନ୍ତ ହେଲେ ନାଟ୍ୟକାର । ତାଙ୍କର ସର୍ବପ୍ରଥମ ନାଟକ 'ଶରଦରାସ' । ତାପରେ ସେ ବସନ୍ତବିଳାସ, ବରୁଣ-ବିଜୟ, କାଳୀୟଦଳନ, ବ୍ରଜବର୍ଜନ ନାଟକ ରଚନା କରିଥିଲେ । ସେତେବେଳେ ପୁରୀରେ ମୋହନ ଗୋସ୍ୱାମୀ, ଗଞ୍ଜାମରେ ଗୋବିନ୍ଦଚନ୍ଦ୍ର ଶୂରଦେଓ, କଟକରେ

ପରେ କଟକରେ କାଳିଚରଣ ପଟ୍ଟନାୟକ ରାସଦଳ ଗଠନ କରିଥିଲେ । ରାସର ଲାସ୍ୟଛଟା ଓ ସଙ୍ଗୀତ ତରଙ୍ଗରେ ଉତ୍କଳର ଅନ୍ତରାତ୍ମା ଉଦ୍‌ବେଳିତ ହୋଇଥିଲା ।

କ୍ରମେ ରାସଲୀଳାରୁ ଲକ୍ଷ୍ମୀକାନ୍ତ ପୌରାଣିକ ଓ ଐତିହାସିକ ନାଟକ ରଚନା ଦିଗକୁ ମନ ବଳାଇଲେ । ସେ ଦିଗରେ ତାଙ୍କର ପ୍ରଥମ ଉଦ୍ୟମ 'ଚନ୍ଦ୍ରହାସ', ତାପରେ 'କଳାପାହାଡ଼' ଓ 'କର୍ଣ୍ଣ' ପ୍ରଭୃତି ରଚିତ ହୋଇଥିଲା । 'କର୍ଣ୍ଣ'ରେ ମୁକ୍ତଛନ୍ଦ ଓ ମଝେ ମଝେ ସରଳ ଗଦ୍ୟର ବ୍ୟବହାର ହୋଇଅଛି । ଅଙ୍କ ଓ ଦୃଶ୍ୟରେ ବିଭକ୍ତ ହେଲେ ବି ନାଟ୍ୟକଳା ଦୃଷ୍ଟିରୁ ବିବେଚନା କଲେ ଏହା ଯାତ୍ରା ଗୀତିନାଟ୍ୟର ସୀମା ଅତିକ୍ରମ କରିନାହିଁ ।

'ଲକ୍ଷ୍ମୀ ଚଣ୍ଡାଳୁଣୀ' ଗ୍ରାମଫୋନ୍ ରେକର୍ଡ଼ ଲାଗି ଲିଖିତ ହୋଇଥିଲା । ପରେ ଏହା ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଅଛି । କିନ୍ତୁ କେବେ ଅଭିନୀତ ହୋଇନାହିଁ । ପ୍ରଚାର ଉଦ୍ଦେଶ୍ୟ ଥିବାରୁ ଏହାର କଳାଗତ ମୂଲ୍ୟ ଅପେକ୍ଷା ସାମାଜିକ ମୂଲ୍ୟ ଅଧିକ ।

ହାସ୍ୟରସାତ୍ମକ ନାଟକମାନଙ୍କ ମଧ୍ୟରେ ନିଶାନିବାରଣ, ଅସ୍ପୃଶ୍ୟତା-ଦୂରୀକରଣ, ପ୍ରୌଢ଼ଶିକ୍ଷା ବିସ୍ତାର, ମହାଯୁଦ୍ଧ, ଦରବୃଦ୍ଧି ଓ ଦୁର୍ଭିକ୍ଷ; ରାଜା ଜମିଦାରମାନଙ୍କର ଖିଆଲି ଶାସନ ଓ ପ୍ରଜା ପୀଡ଼ନ ପ୍ରଭୃତି ସମସାମୟିକ ରାଜନୀତିକ ଯୋଜନା ଓ ସମାଜ ସଂସ୍କାର ପ୍ରୟାସର ଚିତ୍ରଚମତ୍କାରୀ ଚିତ୍ରଣ ଦିଆ-ଯାଇଛି । ଉନ୍ନତ, ନବୀଭୂତ ସମାଜ ସଂଗଠନ ଲକ୍ଷ୍ମୀକାନ୍ତଙ୍କର ଲକ୍ଷ୍ୟ ଥିଲା ।

ପଞ୍ଚାମୃତ, ନବ ରାମାୟଣ, ଭବିଷ୍ୟଭାରତ, ଡମ୍ବରୁସିଂ ସଭା ପ୍ରଭୃତି ନାଟିକା ଉଦ୍ଦେଶ୍ୟମୂଳକ ଓ ଯୁଗର ବାର୍ତ୍ତାବହ । ସ୍ୱାଧୀନତା ପରେ ସାମାଜିକ ମୂଲ୍ୟବୋଧର ପରିବର୍ତ୍ତନ ଦୃଷ୍ଟିରୁ ଏସବୁର ଅଭିନୟ ବର୍ତ୍ତମାନ ସମ୍ଭବ ନୁହେଁ । କିନ୍ତୁ ବ୍ୟଙ୍ଗାତ୍ମକ ସାହିତ୍ୟହିସାବରେ ଏସବୁର ସ୍ୱତନ୍ତ୍ର ମୂଲ୍ୟ ରହିଅଛି । 'ଭବିଷ୍ୟ-ଭାରତ'ର ଆରମ୍ଭରେ ସ୍ୱ ରଚିତ ନାଟିକା ବିଷୟରେ କବି ଲେଖିଛନ୍ତି—

ନୁହେଁ ଏ କବିତା, ନୁହେ ଗଳ୍ପ ଉପନ୍ୟାସ
ବକ୍ତୃତା ଯୋଜନା ନୁହେ ମୃଗନାଭି ବାସ ।
ନାଟ୍ୟ ନୁହେ, କାବ୍ୟ ନୁହେ ନୁହେ ନାଟ୍ୟକାବ୍ୟ
ନବ୍ୟ ସଭ୍ୟତାରେ ଏହା ନାମ ନାଟ୍ୟକାବ୍ୟ ।
ଗଦ୍ୟ ନୁହେ ପଦ୍ୟ ନୁହେ ପୁଂ କିମ୍ବା ସ୍ତ୍ରୀ
ଅନବଦ୍ୟ ସଦ୍ୟସିଦ୍ଧ ଯାଣ୍ଡିଆ ଖେଚଡ଼ି ।

'ଏକାଙ୍କିକା' ଲକ୍ଷ୍ମୀକାନ୍ତଙ୍କ ନାଟ୍ୟରଚନାର ଅନ୍ୟ ଏକ ବିଭାବ । 'ଫିଲ୍ମଷ୍ଟାର୍'ରେ ମିନର୍ଭା କମ୍ପାନୀର ଜେନେରାଲ୍ ମ୍ୟାନେଜର୍ ମି: ଡୁଙ୍ଗର୍

ଷ୍ଟାର୍ ଗ୍ରହଣ ଛଳନାରେ କିପରି ଭ୍ରଷ୍ଟାଗ୍ରସ୍ତ ହୋଇଛନ୍ତି ଓ ସେଥିଲାଗି କମଳା ଓ ତାଙ୍କ ଭଉଣୀ ଲଳିତାଙ୍କୁ ଗୃହବିପ୍ଳବ ଓ ସାମାଜିକ ଅପବାଦ ଭୟରେ କିପରି ଦଣ୍ଡ ଦେବାକୁ ହୋଇଛି, ତାର ବ୍ୟଙ୍ଗାତ୍ମକ ଚିତ୍ରଣ ଲେଖକ ଦେଇଛନ୍ତି । 'ସୁଇସାଇଡ୍' ଗୋଟିଏ ରୋମାଞ୍ଚକର ଏକାଙ୍କିକା ।

ବିମଳ ହାସ୍ୟରସ ପରିବେଷଣରେ ଲକ୍ଷ୍ମୀକାନ୍ତ ସେ ଯୁଗରେ ଏକକ । ଗଳ୍ପ, ଉପନ୍ୟାସ, କବିତା, ସଙ୍ଗୀତ, ପ୍ରହସନ ପ୍ରଭୃତି ସମସ୍ତ ଦିଗକୁ ତାଙ୍କ ହାସ୍ୟରସାତ୍ମକ ବ୍ୟକ୍ତିତ୍ୱ ପ୍ରସାରିତ । ଏ ଦିଗରେ ଯୁଗ ବକ୍ଷରେ ସେ ସ୍ୱତନ୍ତ୍ର ସ୍ୱାକ୍ଷର ରଖିଯାଇଛନ୍ତି ।

୧୯୩୭ରେ 'ଡଗର' ପ୍ରକାଶିତ ହେଲା । ବ୍ୟଙ୍ଗକବିତା ଓ ବ୍ୟଙ୍ଗାତ୍ମକ ଗଦ୍ୟର ଶ୍ରେଷ୍ଠ ବିକାଶକ ରୂପେ ସମ୍ପାଦନାର ଏକ ମୌଳିକ ଗୌରବ ଘେନି କାନ୍ତକବିଙ୍କର ବ୍ୟକ୍ତିତ୍ୱ ଉଜ୍ଜ୍ୱଳତର ହେଲା ।

ଅର୍ଦ୍ଧଶତାବ୍ଦୀର ସାହିତ୍ୟସାଧନା ତାଙ୍କର । ଫକୀରମୋହନ ତାଙ୍କ କପାଳରେ ଦାଢ଼ି ଘଷି ଆଶୀର୍ବାଦ କରିଥିଲେ—ଲେଖିଯା, ସୁନା ରହିଯିବ, ଖାଦ ପୋଡ଼ି ପାଉଁଶ ହୋଇଯିବ । ଲକ୍ଷ୍ମୀକାନ୍ତଙ୍କ ରୁଗ୍ଣ ଶରୀର ଖାଦପରି ଭସ୍ମୀଭୂତ ହୋଇଯାଇଛି । କିନ୍ତୁ ଅନ୍ତରର କାନ୍ତି ଖାଣ୍ଟି ସୁନାପରି ଝଟକି ଉଠୁଛି ।



## ଗୋଦାବରୀଶ ମିଶ୍ରଙ୍କ କବିତାର କେତୋଟି ଆଭିମୁଖ୍ୟ

ଚାଲିଚଳଣରେ, ଆଧୁନିକ ଆଦବ୍‌କାଇଦାରେ, ଇଂରେଜୀ ଭାଷାର ସ୍ପଷ୍ଟ ଉଚ୍ଚାରଣରେ, ଶୃଙ୍ଖଳା ଓ ନିୟମାନୁବର୍ତ୍ତିତାରେ, ରୂପବର୍ଣ୍ଣିଛଟାରେ ଗୋଦାବରୀଶ ସାହେବ । ଯଥାଯଥ ତଥ୍ୟପ୍ରକାଶରେ, ବୈଜ୍ଞାନିକ ରୁଚି ଓ ସୌଜନ୍ୟ ଶୁଚିତାରେ ସେ ଏ ଦେଶରେ ଆଧୁନିକ ସଭ୍ୟତାର ପ୍ରତୀକ । ଆଇନ୍‌ସଭାରେ ଗମ୍ଭୀର ଅଭିନିବେଶ, ଶାସନପରିଚାଳନାରେ ଦକ୍ଷତା, ବ୍ୟବସ୍ଥାସଭାର ବାକ୍‌ପଟୁତା, ଗଣତନ୍ତ୍ରର ସମ୍ମାନରକ୍ଷାରେ ରାଜନୀତିକ ତତ୍ପରତା, କୂଟନୀତିଜ୍ଞ ମନ୍ତ୍ରଣା ଓ ମନନର ହିତପ୍ରଦ ଗାମ୍ଭୀର୍ଯ୍ୟ ଦେଖିଲେ କିଏ ବିଶ୍ୱାସ କରିବ—ଗୋଦାବରୀଶ କବି, ପୁଣି ଗାଉଁଲୀ କବି ! ଶିକ୍ଷାବିତ୍ ସଂସ୍କାରକ, ବିପ୍ଳବୀ—ସେହି ପୁଣି ଜନସାଧାରଣଙ୍କ ସୁଖ-ଦୁଃଖରେ ଅନ୍ତରଙ୍ଗ ଲୋକକବି ?

ସାହେବୀ ଢଙ୍ଗରେ ଗଣିତ ଶିଷ୍ଟାଚାରର ଅତିକ୍ରମ କରି ଭିତରେ ପ୍ରବେଶ କଲେ ଆବିଷ୍କୃତ ହୁଏ ଗୋଟିଏ ମନ—ଜାତୀୟତାରେ ଭାରତୀୟ, ଉଦାରତାରେ ବିଶ୍ୱଜନୀନ, କିନ୍ତୁ ଉପାଦାନରେ ଖାଣ୍ଟି ଓଡ଼ିଆ । ରାଜନୀତି ବା କୂଟନୀତିରେ ନୁହେଁ, ସେ ମନ ତାର ଶ୍ରେଷ୍ଠ ଅଭିବ୍ୟକ୍ତି ଦେଇଛି ଲୋକକବିତାରେ । ତାଙ୍କ ପ୍ରାଣର ପରିଧି ଦୂରରୁ ଦୂରକୁ ପ୍ରସାରିତ; କଳନା କରିବା କଷ୍ଟକର । କିନ୍ତୁ ତାର କେନ୍ଦ୍ରବିନ୍ଦୁ ସହଜରେ ଧରାପଡ଼େ । ଏହା ଗ୍ରାମରେ; ଭଲେଇ, ସୋଲଇ, ମାମୁଁ ଭଣଜା ବାଁ ଘଣ୍ଟାଶିଳାରେ; ସଂଯୋଗ ବା ଶାଳିଅରେ; କାଳିଜାଇ ହୃଜିଥିବା ଶୋକୋଚ୍ଛ୍ୱସିତ ତରଙ୍ଗରେ ବା ନିକ୍ଷେପଣରେ ଲିଭିଯାଉଥିବା ପଲ୍ଲୀକୁଟୀରର ଭଗ୍ନାବଶେଷରେ ଗୋଦାବରୀଶ ସଭ୍ୟତାର ବିକାଶଚକ୍ଷୁରେ ସହରକୁ ଦେଖିଛନ୍ତି, ତଥାପିର ଝଲସ ତାଙ୍କୁ ବିସ୍ମିତ କରିନାହିଁ; କିନ୍ତୁ କବିଚକ୍ଷୁରେ ଦେଖିଛନ୍ତି ଗ୍ରାମକୁ । ତାର ଅଗଣିତ ଦୃଶ୍ୟର ବୈଚିତ୍ର୍ୟ, ରହସ୍ୟର କୁହୁକମାଧୁରୀ ତାଙ୍କୁ ବିମୋହିତ କରିଛି । ସେ ସହରକୁ ମନରେ, ଗ୍ରାମକୁ ଅନୁଭବରେ ପାଇଛନ୍ତି । ସେ ସହରରେ ମନୀଷୀ, ଗ୍ରାମରେ କବି । ଆପାତବିରୁଦ୍ଧ ହେଲେହେଁ ଏକ ବ୍ୟକ୍ତିତ୍ୱର ଦୁଇ ବିଭବ ପରସ୍ପରର ପରିପୂରକ ହୋଇଅଛି ।

ଊନବିଂଶ ଶତାବ୍ଦୀର ଶେଷପାଦରେ ଲୋକଜୀବନ ଓ ଲୋକସଂସ୍କୃତି ପ୍ରତି ବିଶେଷଭାବେ ଭାରତୀୟ ଦୃଷ୍ଟି ଆକୃଷ୍ଟ ହେଲା । ଏହା ଗଣସାହିତ୍ୟ ସଂଗ୍ରହ ଆନ୍ଦୋଳନ ବା ବିଦଗ୍ଧ ଶୈଳୀ ପରିହାର କରି 'ଗଣ' ରୀତିରେ ଲେଖା ଆନ୍ଦୋଳନ । ଜନତାର ନିମ୍ନତମ ସ୍ତର ପର୍ଯ୍ୟନ୍ତ ସାହିତ୍ୟର ବିସ୍ତୃତି; ସାହିତ୍ୟ

କେବଳ ସୁଧୀଜନଭୋଗ୍ୟ ନୁହେଁ, ସର୍ବଜନସେବ୍ୟ । ଲିଖିତ ସାହିତ୍ୟ ପରି ମୌଖିକ ସାହିତ୍ୟର ମଧ୍ୟ ଉପାଦେୟତା ଅଛି; ଏହା ଅନୁଭୂତ ହେଲା । ଏହି ଆନ୍ଦୋଳନର ଚେଉ ବାଜିଲା ଓଡ଼ିଶାରେ । ଫକୀରମୋହନ ପଲ୍ଲୀପରିବେଶ ଓ ଘଟଣାନିବହକୁ ଉପଜୀବ୍ୟ କରି କେତେକ କ୍ଷୁଦ୍ରଗଳ୍ପ ରଚନା କଲେ, ନନ୍ଦକିଶୋର ପଲ୍ଲୀର ଚଳଣିବିଷୟରେ ଇଂରେଜୀରେ ପ୍ରବନ୍ଧ ଲେଖି ପୁରସ୍କୃତ ହେଲେ, ପରେ ତାକୁ କବିତାପୁସ୍ତକରେ ରୂପାନ୍ତରିତ କରି 'ପଲ୍ଲୀଚିତ୍ର' ନାମରେ ପ୍ରକାଶ କଲେ । ଏ ଦିଗରେ ଏକ ସଫଳକୃତି 'ଉତ୍କଳ କାହାଣୀ' । ଏହା କେବଳ ସଙ୍କଳନ ନୁହେଁ, ଏକ ନୂତନ ସର୍ଜନା; ଏହା ଅବଧାନୀ ରୀତି ବିରୁଦ୍ଧରେ ଏକ ବିପ୍ଳବ; ଭାଷା ଦିଗରୁ ପଲ୍ଲୀ ଓ ନଗରର ବ୍ୟବଧାନ ଦୂର କରିବାରେ ଏକ ମାଇଲଖୁଣ୍ଟ ।

ନନ୍ଦକିଶୋର ଓ ଗୋଦାବରୀଶ ଏହି ଆନ୍ଦୋଳନରୁ ଅନେକ ସଂଗ୍ରହ କରିଥିଲେ ଯାହା ସାରାଜୀବନ ଉଭୟଙ୍କ ସାହିତ୍ୟିକ ପଥ ଉଦ୍ଦୀପ୍ତ ରଖିଥିଲା । ନବବୀକ୍ଷାକୁ ଉଭୟେ ଗଦ୍ୟ ଓ ପଦ୍ୟରେ ପରୀକ୍ଷା କରିଥିଲେ । ରାଜନୀତିର ବଙ୍କାଟଙ୍କା ବାଟରେ ବୁଲୁବୁଲୁ ଗୋଦାବରୀଶ ପଛରେ ପଡ଼ିଗଲେ । ନନ୍ଦକିଶୋର ହେଲେ 'ପଲ୍ଲୀକବି' ।

ନନ୍ଦକିଶୋର ପଲ୍ଲୀଗୀତିର ଗୁଣଚଳ୍ପୁଳୀ ଗ୍ରାହକ, ଜଣେ ସଂଗ୍ରାହକ । ମାନସମ୍ଭ୍ରମହୀନ ପରିବେଶ ଓ ବେଶର ଦାରିଦ୍ର୍ୟରେ ସଙ୍କୋଚଶୀଳ ଲୋକଗୀତକୁ ସେ ପହିଲେ ସାହିତ୍ୟ-ମଞ୍ଚକୁ ଅଭ୍ୟର୍ଥନା କରି ଆଣିଲେ, ଆଦର,ଗୌରବ କଲେ, ଚହ୍ନେଇଲେ ମନେ ରଖିବାଭଳି ରୂପ ଆଉ ରସରେ । ଏଥିରେ ଗର୍ବିତ ହେଲା ଲୋକଗୀତ, ଗୌରବାନ୍ୱିତ ହେଲା ତାଙ୍କର କବିତା । କେତେ ନୂଆକୁ ଧରି ପୁରୁଣା ହୋଇଗଲେ, କିନ୍ତୁ ସେ ପୁରୁଣାକୁ ଧରି ନୂଆକୁ ପାଇଲେ; ସ୍ୱତନ୍ତ୍ର ବିଭାବର ପ୍ରବର୍ତ୍ତକ କବିରୂପେ ପରିଚିତ ହେଲେ । ଏତେ କରି ମଧ୍ୟ ସେ ପୂରାପୂରି ଲୋକକବି ହୋଇପାରିଲେ ନାହିଁ । ତାଙ୍କ କବିତାରୁ ଅଧେ ସହରର, ଅଧେ ପଲ୍ଲୀର, ଅଧେ ସୁଧୀଙ୍କର, ଅଧେ ସାଧାରଣଙ୍କର ।

କିନ୍ତୁ ଗୋଦାବରୀଶ ସୁଧୀହୋଇ କେବଳ ସୁଧୀଙ୍କର ହୋଇନାହାନ୍ତି; ଲୋକଙ୍କର ହୋଇ ସୁଧୀର ଶ୍ରଦ୍ଧାରୁ ବଞ୍ଚିତ ହୋଇନାହାନ୍ତି । ନନ୍ଦକିଶୋରଙ୍କ ପରି ସେ ଲୋକକବିତାକୁ ଆତ୍ମସାତ୍ କରିନାହାନ୍ତି, ଲୋକକବିଙ୍କ ଭାବରେ ଭାବିତ ହୋଇଛନ୍ତି ମାତ୍ର । ଲୋକଙ୍କ କଥା କହିବା ରୀତି ତାଙ୍କ ଲେଖାର ରୀତି । ତାଙ୍କ କବିତାର ଧାରା ଗୋଟିଏ; ଏହା ଲୋକଗୀତିର ଧାରା । ହୃଦୟର ଉଚ୍ଛ୍ୱାସରୁ ଏହାର ଜନ୍ମ । ମନନରୁ ଯେଉଁ କେତୋଟି କବିତା ରାଧାନାଥୀ ଶୈଳୀରେ ରୂପଲାଭ କରିଛି, ଏହାର ସାଧୁ ଭାଷା; ଦର୍ଶନ ଓ ଦୃଷ୍ଟିଭଙ୍ଗୀରେ ହୁଏତ ଏହା

ଆଧୁନିକ । ହେଲେହେଁ ତହିଁରେ ଅନ୍ତଃସଲିଳା ଫଲ୍‌ଗୁ ପରି ପଲ୍ଲୀର ଧାରା ପ୍ରବାହିତ ।

'ଆଲେଖିକା' ଗାଥାକବିତାର ସଂଗ୍ରହ । ରଚିତ ହେଲେହେଁ ଏହା ଲୋକଗାଥାଗୀତିକାର ପାରମ୍ପରିକ ରୂପଭଙ୍ଗୀ ଅନୁସରଣ କରିଅଛି । ଯୋଗୀ ଭିକାରୀ ଏହାକୁ ବୀଣା, ଖଞ୍ଜଣି ବା ଧୁଡ଼ୁକି ବଜାଇ ଗାଉନାହାନ୍ତି—ମାନେ ଏହାର ଯଥେଷ୍ଟ ପ୍ରଚାର ହୋଇନାହିଁ । ଜାତୀୟଚେତନା, ପ୍ରୟାସକ୍ଳିଷ୍ଟ ଶୃଙ୍ଖଳା, ବର୍ଣ୍ଣନା-ବହୁଳତା, କ୍ୱଚିତ୍ ଭାବପ୍ରକାଶର ଆଭିଜାତ୍ୟ ବା ଆଡ଼ମ୍ବର ମୌଖିକ ଗୀତରୁ ଏହାକୁ କିଞ୍ଚିତ୍ ଭିନ୍ନ କଲେହେଁ ସରଳଭଙ୍ଗୀ, ସାବଲୀଳ ଉଚ୍ଛ୍ୱାସ, ପ୍ରାକୃତିକତା, ପୁନରୁକ୍ତି ଓ ଲୋକମୁଖର ଭାଷାବ୍ୟବହାର ଯୋଗୁଁ ଏହା ପ୍ରାୟ ସେହି ଶ୍ରେଣୀଭୁକ୍ତ ହୋଇଅଛି । ଗ୍ରାମ ଅଞ୍ଚଳରେ ଦେଶାତ୍ମବୋଧ ଜାଗ୍ରତ କରିବା କବିଙ୍କ ଉଦ୍ଦେଶ୍ୟ । ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶ ଏହି ଏକ ଲକ୍ଷ୍ୟରେ ହିଁ ଲେଖନୀ ଚାଳନା କରିଛନ୍ତି, ବୋଧହୁଏ ଗୋଦାବରୀଶ ହିଁ ଏ ଦିଗରେ ଅଧିକ ଯଶସ୍ୱୀ ହୋଇଛନ୍ତି ।

ଲୋକପ୍ରିୟ 'ଗୋବିନ୍ଦଚନ୍ଦ୍ର' ଗୀତ ଶୁଣି ସେହି ରାଗରେ ଗୁଡ଼ିଏ ଗାଥା-ଗୀତିକା ଲେଖିବାକୁ ସଂକଳ୍ପ କରିବା କବିଙ୍କ ପକ୍ଷେ ଆଦୌ ବିଚିତ୍ର ନୁହେଁ । 'ବଙ୍ଗଳାଶ୍ରୀ' ରାଗ ସୁଧୀ ସାହିତ୍ୟରେ ସୁପ୍ରତିଷ୍ଠିତ । ଆଧୁନିକ ଯୁଗରେ ରାଧାନାଥ, ଗଙ୍ଗାଧର ପ୍ରଭୃତି ଏହାକୁ ଲୋକପ୍ରିୟ କରିଛନ୍ତି । ଲୋକରେ ପ୍ରଚଳିତ 'ଗୋବିନ୍ଦଚନ୍ଦ୍ର' ମଧ୍ୟ ସେହି ରାଗରେ ବୋଲାଯାଏ; କରୁଣମଧୁର ଭାବପ୍ରକାଶ ଲାଗି ଏହା ଏକାନ୍ତ ଉପଯୋଗୀ । କୁଳସୀମନ୍ତିନୀମାନଙ୍କ ଚକ୍ଷୁରୁ ଯାହା ଅଶ୍ରୁଧାରା ଝରାଏ, ଦୁଃଖ ବୈରାଗ୍ୟ, ତ୍ୟାଗର ବାତାବରଣ ସୃଷ୍ଟିକରେ; ସ୍ୱାର୍ଥପର ସମାଜକୁ ଦୟାଦାକ୍ଷିଣ୍ୟାଦି ଭାବରେ ପ୍ରବର୍ତ୍ତିତ କରେ, ତାହା କବିଙ୍କୁ ଅବଶ୍ୟ ମୁଗ୍ଧ କରିଥିବ । ଏହି ରାଗିଣୀ ମଧ୍ୟରେ ସେ ଯେପରିକି ପଲ୍ଲୀହୃଦୟରେ ସହଜ ପ୍ରବେଶର ପଥ ଆବିଷ୍କାର କରିପାରିଲେ । ଦ୍ୱିତୀୟ ପାଦରେ ଗୋଟିଏ 'ଲୋ' ଲଗାଇ ଦେଇ ସେ ଯେପରି ଛନ୍ଦର ରୂପ ଓ ଗତି ବଦଳାଇଦେଲେ, ପଲ୍ଲୀସଙ୍ଗୀତର ଧାରା ସ୍ୱକବିତାରେ ବୁହାଇ ଏହାକୁ ସେହିପରି ଲୋକମୁଖୀ କରିଦେଲେ ।

ନାଗରିକ ଓ ଗ୍ରାମୀଣ ଭାବର ମଧୁର ସମନ୍ୱୟ ତାଙ୍କ ଗାଥାକବିତାରେ ଘଟିଛି । ଏକ ଦିଗରେ ଇତିହାସ, ଅନ୍ୟଦିଗରେ କିଂବଦନ୍ତୀ, ଏକ ଦିଗରେ ଦେଶାତ୍ମବୋଧ, ଅନ୍ୟଦିଗରେ ପଲ୍ଲୀପ୍ରାଣର ଉଚ୍ଛ୍ୱାସ ତାଙ୍କ କବିତାକୁ ଦେଇଛି ଏକ ନୂତନ ରୂପ । ପଢ଼ିଲେ ଯେପରି ଗାଇଲେ ତହିଁରୁ ଅଧିକ ଆନନ୍ଦ ଏଥିରୁ ମିଳେ । ଭଗ୍ନଦୁର୍ଗ, ଚୂର୍ଣ୍ଣବିଚୂର୍ଣ୍ଣ ଅଟ୍ଟାଳିକା ମଧ୍ୟରୁ ଇତିହାସକୁ ସାଉଁଟି ଆଣି ତାହାକୁ ନୂତନରୂପେ ଗଢ଼ିବାର ପ୍ରୟାସ ହୋଇଛି । ଆଲେଖିକାରେ ଖାଲି ଛିନ୍ନସ୍ମୃତିର ଆଲେଖ୍ୟ ନାହିଁ, ଜୀବନସ୍ରୋତର ପ୍ରାଚୁର୍ଯ୍ୟ ଓ ପ୍ରଖରତା ରହିଅଛି । ଆଲେଖିକାର

କବି ଉତ୍କଳର ଶ୍ରେଷ୍ଠ ଗାଥାକବି । ତାଙ୍କ ପରି ବହୁ କବି ଗୀତକବିତା ଲେଖିଛନ୍ତି; କିନ୍ତୁ ଗାଥାକବି ହିସାବରେ ସେ ଅଦ୍ୱିତୀୟ ।

ଭଜୁ କିନା ରାମନାମରେ ଗୋବିନ୍ଦ ଭଜୁ କିନା ରାମନାମ,
ଭଜି ନ ପାରିଲେ କୁଳଚନ୍ଦ୍ରମାରେ ବାନ୍ଧି ନେବ କାଳଯମ ।
—ଗୋବିନ୍ଦଚନ୍ଦ୍ର, ପ: ଗୀ: ସ:

ଧୀର କରି ନାଆ ବୁହାରେ ନାଉରୀ ଝିଅକୁ ମାଡ଼ୁଛି ଡର,
ଗଡ଼େ ଗଡ଼ଲୋକେ ରହିଁ ବସିଥିବେ ଝିଅ ଯିବ ଶାଶୁଘର ।
—ଆଲେଖିକା

ଗୋଦାବରୀଶଙ୍କ କବିତାରେ ମୁଖ୍ୟତଃ ଦୁଇଟି ବିଭବ—ଗୋଟିଏ ଗୃହ ବା ପରିବାର, ଅନ୍ୟଟି ଗ୍ରାମ ବା ସଂସାର । ଗୃହ ବା ପରିବାରସମ୍ପର୍କୀୟ ବହୁଗୀତ ଲୋକମୁଖରେ ପ୍ରଚଳିତ ; 'କାନ୍ଦଣା' ଗୀତରୁ ଦୃଷ୍ଟାନ୍ତ ଦିଆଗଲା—

ଦୂବ ବଢ଼ୁଥିଲା କାକର ଖାଇ, ବୋଉ ଲୋ,
ମୁଁ ତ ବଢ଼ୁଥିଲି ତୋ ସ୍ନେହ ପାଇ, ବୋଉ ଲୋ ।
ଦୂବକୁ କାକର ସହିଲା ନାହିଁ, ବୋଉ ଲୋ,
ମୋ ଅଲଅଲ ତ ରହିଲା ନାହିଁ, ବୋଉ ଲୋ ।
ବାପ ବୋଲେ ଝିଅ ମୋର ବାରି ବରପର,
ବୋଉ ବୋଲେ ଝିଅ ମୋର କୋଳକୁ ସୁନ୍ଦର ।
ଭାଇ ବୋଲେ ଭଉଣୀ ମୋ ପାଖେ ପାଖେ ଥାଉ,
ଭାଉଜ ଡାହାଣୀ ବୋଲେ ଦୂରଦେଶେ ଯାଉ ।
ଭାଉଜ ନୁହଇ ସେହୁ ପରଘର ଝିଅ,
ଟିକିଏ କାନ୍ଦଇ ଟିକେ ପୋଛିଦିଏ ଲୁହ ।
—ପ: ଗୀ: ସ:, ୧ମ ଭାଗ

ଆଧୁନିକ ଯୁଗରେ ଗୃହ ଓ ପରିବାରକୁ ଅବଲମ୍ବନ କରି ଭକ୍ତକବି ମଧୁସୂଦନ ପଢ଼ିଲେ କବିତା ରଚନା କଲେ । ତାଙ୍କ 'ମୋ ଜନନୀ' କବିତା ଏହି ର ପ୍ରକୃଷ୍ଟ ଦୃଷ୍ଟାନ୍ତ । ଶୈଶବରୁ ଜନନୀ ହରାଇ ସେ କିପରି ଶୋକୋଚ୍ଛ୍ୱସିତ ହୋଇଥିଲେ ତାହା ଏଥିରେ ବ୍ୟକ୍ତ । ମାତୃହୀନର କରୁଣ ବେଦନ ଏଠି ବ୍ୟକ୍ତିଗତ । କବି ଦୁନିଆର ସୁଖଦୁଃଖକୁ ବ୍ୟକ୍ତିଗତ କରି ପରିବେଷଣ କରେ । ବ୍ୟକ୍ତିଗତ ଦୁଃଖକୁ ସାର୍ବଜନୀନ କରି ପ୍ରକାଶ କରିବାର ଅଧିକାର ଓ ଶକ୍ତି ମଧ୍ୟ ତାର ଅଛି ।

ଅତି ମଳିନ ମୋ ଅଙ୍ଗ ଧୂଳି ଧୂସରିତ ହେ
ପୋଛୁଣ ଶ୍ରୀକରେ,
ମା' ମୋର ଆନନ୍ଦମୟୀ ମଧୁର ବଚନ କହି
ଆନନ୍ଦେ ଧରନ୍ତି ମୋତେ ଅମୃତ କ୍ଷରେ ହେ
ଅମୃତ ବକ୍ଷରେ ।
ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଧା କ୍ଷଣି ହେ ଅତି ସୁଖମୟ,
କାହିଁ ପଟାନ୍ତର ତାର ସ୍ୱର୍ଗ ବିଭବ କି ଛାର,
କାହିଁ ଅଛି ସନ୍ତାନର ସେପରି ଆଶ୍ରୟ ହେ ସେପରି ଆଶ୍ରୟ ?
ପାଞ୍ଚ ବର୍ଷ ଦିନୁଁ ମୁହିଁ ଅଟଇ ଅନାଥ ହେ
ହରାଇ ଜନନୀ ।
—ପୃ: ୧୩, ଗୁନ୍ଦମାଳା

ଏଇ ଦୁଃଖ ପ୍ରତି ମାତୃସ୍ମରଣର ଅନ୍ତରରେ କରୁଣତମ ମୂର୍ଚ୍ଛନାରେ ବାଜି ଉଠେ । କିନ୍ତୁ ବ୍ୟକ୍ତିଗତ ଦୁଃଖପ୍ରକାଶକୁ ବସ୍ତୁନିଷ୍ଠ ଗୀତିକବି ନିତାନ୍ତ ଶିଶୁସୁଲଭ ଓ ଅବାନ୍ତର ମନେକରି ଶିଶୁକବିତା ଶ୍ରେଣୀର ଅନ୍ତର୍ଭୁକ୍ତ କରିଛନ୍ତି । ଏହା ଗୀତିକବିତାଶ୍ରେଣୀର ଅନ୍ତର୍ଗତ ହେବାରେ କୌଣସି ଅନ୍ତରାୟ ନଥିଲା । ଘଟଣା ବ୍ୟକ୍ତିଗତ ହୋଇଥିଲେ ବି ଅଭିବ୍ୟକ୍ତି ସାର୍ବଜନୀନ ହୋଇଅଛି । ବାଲ୍ୟଜୀବନର ଏହି କରୁଣତମ ବେଦନା ପ୍ରକାଶରେ ଗୀତିକବିଙ୍କୁ କେହି ବଳି ଯାଇନାହିଁ । ଏହା ତାଙ୍କ ଶ୍ରେଷ୍ଠ ଗୀତିକବିତା ସଙ୍କଳନରେ ସ୍ଥାନ ପାଇବାକୁ ଯୋଗ୍ୟ ।

କିନ୍ତୁ ଗୋଦାବରୀଶଙ୍କର ସଙ୍କୋଚ ଜାତ ହୋଇନାହିଁ । ଗମ୍ଭୀରତମ ବସ୍ତୁନିଷ୍ଠ କବିତା ପରି ସେ ବ୍ୟକ୍ତିଗତ ଶୋକୋଚ୍ଛ୍ୱାସକୁ ପ୍ରକାଶ କରି ଯାଇଛନ୍ତି—

କେଡ଼େ ତ୍ୱରା ବିତିଗଲା ସତର ବରଷ,
ଆଜି ବୋଉ ପାଳୁଛି ମୁଁ ତୋ ଶ୍ରାଦ୍ଧଦିବସ ।
ଦୁଇଦିନ କଟାଇଛୁ ଖାଇ ପୋଡ଼ା ଡାଲି,
ଆଜି କି ପାଲଟିଯିବ କାଲିର କପାଳ ?

ବିଷୟ ବ୍ୟକ୍ତିଗତ ବା ବିଶ୍ୱଗତ ହେଉ, କିଛି ଯାଏ ଆସେ ନାହିଁ । ଅନୁଭୂତି-ପ୍ରକାଶର ଦୃଷ୍ଟିଭଙ୍ଗୀରେ ଓ ରସୋଚ୍ଛଳ ଭାଷାରେ ହିଁ ତାର ମହତ୍ତ୍ୱ ରହିଛି । ଏହା ଗୋଦାବରୀଶଙ୍କର ବିଶ୍ୱାସ ଥିଲା ।

'ଆହା ମୋର ଗଣ୍ଠିଧନ' ଓ 'ବୁଜିଦେଲି ଆଖି' ପ୍ରଭୃତି କବିତା ଗ୍ରାମ ବା ସଂସାରଶ୍ରେଣୀର ଅନ୍ତର୍ଗତ । ପରିବାର ପ୍ରତି ସମବେଦନା ଏଥିରେ ବିଚିତ୍ରତର ହୋଇଅଛି । ଗୃହର ପରିଧିକି ବିଶ୍ୱମୟ, ସ୍ନେହ ଓ ସମବେଦନାକୁ ଅପରିସୀମ କରିବାରେ କବି-ଲେଖନୀ ସାର୍ଥକ ହୋଇଅଛି—

ଉଡ଼ି ଯାଇଅଛି ନଡ଼ା ବତା ନାହିଁ ଗୃହେ,
ଏ ଯେ ବର୍ଷଗୃଏ ଘର ଗ୍ରାମର ବାହାରେ ।
ପାଞ୍ଚ ବର୍ଷ ଅବା କାନ୍ଥେ ଲୁଣ୍ଡା ନାହିଁ ବାଜ,
ଅଡ଼ଙ୍ଗ ପାହାଚ ପିଣ୍ଡା ପଡ଼ିଅଛି ଭାଜ ।
ଜନପ୍ରାଣୀ କେବେ ରହି ପାରନ୍ତି ସେ ଘରେ ?
ଗାଆଁ ପିଲେ ନ ମାଡ଼ନ୍ତି ପାଖ ଲୋକ ଡରେ ।

ଯେଉଁ ଗୃହ କବିଙ୍କ ମନର ଆବାସ ସେ କଣ କବିଙ୍କ ପ୍ରକୃତ ଗୃହ ନୁହେଁ ? ଏ ଗୃହ ମଧ୍ୟରେ ଯେଉଁ ପ୍ରାଣୀ ଅଛି ସେ କଣ କବିଙ୍କର ପରମ ଆତ୍ମୀୟ ନୁହେ ? ଯାହାର କେହି ଆତ୍ମୀୟ ନାହାନ୍ତି, କବି ତାର ଆତ୍ମୀୟ । ଯାହା ଲାଗି କାହାର ଆଖିରେ ଲୁହ ନାହିଁ, କବିର ଲେଖନୀ ତାର ଲାଗି କାନ୍ଦେ—କାନ୍ଦେ ଘନତର ମସୀ ବିନ୍ଦୁରେ ।

ତେଣୁ କବି ଦରିଦ୍ର କାଶିଆ ଲାଗି ସ୍ୱର୍ଗବାସର ବ୍ୟବସ୍ଥା କରିନାହାନ୍ତି । ସ୍ୱର୍ଗ ଅଳସ ମନର କଳ୍ପନା । ସତ୍ୟନ୍ୟାୟର ତୁଳାଦଣ୍ଡ ଧର୍ମ ହସ୍ତରେ, ଦାନପୁଣ୍ୟର ଏକଗୃଟିଆ ବ୍ୟବସାୟୀ ସେ । ଧର୍ମୀକର କଳ୍ପନାରେ ଲାଳିତ, ହୁଏତ କର୍ତ୍ତୃତ୍ୱରେ ପରିଚାଳିତ ସ୍ୱର୍ଗରେ କଣ କାଶିଆର ଲାଞ୍ଛନା ଊଣା ହେବ ? ସେଠି କଣ ତାକୁ ନ୍ୟାୟ ମିଳିବ ? ସେଇ କ୍ଷୁଧାହୀନ, ଶ୍ରମଶୂନ୍ୟ ରାଜ୍ୟରେ କଣ ତାର ସ୍ୱେଦାଶ୍ରୁର ମୂଲ୍ୟ ମିଳିବ ?

ତାଙ୍କ ଲେଖନୀରେ ପଲ୍ଲୀର ପ୍ରେମ ଅଧିକ ପ୍ରୀତିକର, ସୁଖଦୁଃଖ ଗଭୀରତର, ସ୍ନେହ ମଧୁରତର ହୋଇଅଛି । ତାଙ୍କ ଚିନ୍ମୟ ପଲ୍ଲୀର ବାସିନ୍ଦା ହେବାକୁ କାହାର ଲୋଭ ନ ହେବ ?

ତାଙ୍କ ପ୍ରକୃତି ଇନ୍ଦ୍ରିୟଗ୍ରାହ୍ୟ, ଏହା ଉପାସ୍ୟ, ଉପେୟ ନୁହେଁ; ଭାବ-ରାଜ୍ୟରେ ପ୍ରବେଶ ଲାଗି ପ୍ରେରଣା ଦିଏ ମାତ୍ର । ସ୍ୱତନ୍ତ୍ର ଭୂମିକାରେ ନୁହେଁ, ମାନବିକ ଭାବର ବିଳାସ ବିକାଶ ମଧ୍ୟରେ ହିଁ ପ୍ରକୃତି ଦେଖା ଦେଇଛି । ଏହା ପରମ୍ପରାର କାବ୍ୟିକ ଅନୁକରଣ ମାତ୍ର ନୁହେଁ । ଆଖିରେ ଦେଖା, ମନରେ ଅଙ୍କା ପ୍ରକୃତି, ନିବିଡ଼ ଅନୁଭୂତିରେ ରସାଣିତ ହୋଇ ମଧୁଧାରାରେ ନିଃସୃତ ହୋଇଅଛି ।

କବି ମାନବବାଦୀ । କିନ୍ତୁ ମାନବ ମାନେ ତାଙ୍କ ଛନ୍ଦରେ ଧରା ଦେଇ ନାହାନ୍ତି । ମହତ୍ ବ୍ୟକ୍ତି ହୁଏତ ତାଙ୍କର ଅଦର୍ଶ । ମହତ୍ ହେବା ଲାଗି ଯାହାର ସୁଯୋଗ ନାହିଁ, ଅବକାଶ ନାହିଁ, ସେ ତାଙ୍କ କବିତାର ଏକାନ୍ତ ପ୍ରାଣମୟ ବସ୍ତୁ, ତାଙ୍କ ସମବେଦନା ସେଠି ଅଜସ୍ର ଧାରାରେ ଢାଳି ହୋଇ ଯାଇଛି ।

—✱—

## ହିନ୍ଦୀ ସାହିତ୍ୟକୁ ଓଡ଼ିଆ ସାହିତ୍ୟିକମାନଙ୍କ ଦାନ

ଓଡ଼ିଆ କବିମାନେ ହିନ୍ଦୀରେ କ୍ୱଚିତ୍ ଲେଖିଛନ୍ତି; ଲେଖିବାର କୌଣସି ପ୍ରୟୋଜନ ନଥିଲା । ହିନ୍ଦୀ ସାହିତ୍ୟ ଓଡ଼ିଆ ସାହିତ୍ୟ ଅପେକ୍ଷା ଅଧିକ ସମୃଦ୍ଧ ନଥିଲା । କିମ୍ବା ଅନ୍ୟ ପ୍ରାଦେଶିକ ଭାଷାମାନଙ୍କ ଅପେକ୍ଷା ଏହା ଅଧିକ ସମ୍ମାନଜନକ ଆସନ ଅଧିକାର କରି ନଥିଲା । ବିପୁଳ ହିନ୍ଦୀଭାଷାଭାଷୀ ଅଞ୍ଚଳରେ ପରିଚିତ ହେବା ଆକାଙ୍‌କ୍ଷାରେ କୌଣସି ଓଡ଼ିଆ କବି ହିନ୍ଦୀରେ କିଛି ରଚନା କରି ନ ଥିଲେ । ରାୟ ରାମାନନ୍ଦ, ଜଗନ୍ନାଥ, ବଳରାମ ପ୍ରଭୃତି ପ୍ରାଚୀନ କବିମାନେ ବ୍ରଜବୁଲି ଭାଷାରେ ବୈଷ୍ଣବ ପଦାବଳୀ ରଚନା କରି ଯାଇଛନ୍ତି । କିନ୍ତୁ ଏହିଭଳି ପଦାବଳୀ ସଂକଳନର ଚେଷ୍ଟା ଏପର୍ଯ୍ୟନ୍ତ ଓଡ଼ିଶାରେ ହୋଇନାହିଁ । ବଙ୍ଗଳା ବ୍ରଜବୁଲି ପଦାବଳୀ ସଂକଳନମାନଙ୍କରେ ଓଡ଼ିଆ କବିମାନଙ୍କ ରଚନାର ସନ୍ଧାନ ମିଳେ ।

ଢେଙ୍କାନାଳର କବି ବ୍ରଜନାଥ ବଡ଼ଜେନା ଅଷ୍ଟାଦଶ ଶତାବ୍ଦୀର କବି । ସେ ସଂସ୍କୃତ, ପ୍ରାକୃତ, ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଭାଷାରେ ସୁପଣ୍ଡିତ ଥିଲେ । ଏଇସବୁ ଭାଷାରେ ତାଙ୍କର ଯତ୍‌ସାମାନ୍ୟ ରଚନା ମଧ୍ୟ ମିଳିଅଛି । 'ଗୁଣ୍ଡିଚା ବିଜେ' ଏହି କବିଙ୍କର ଖଣ୍ଡିଏ ସ୍ୱତନ୍ତ୍ର ହିନ୍ଦୀ କବିତା ଗ୍ରନ୍ଥ । ସେ କିନ୍ତୁ ସ୍ୱତଃପ୍ରବୃତ୍ତ ହୋଇ ଏହା ରଚନା କରି ନ ଥିଲେ । ସେ ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବଙ୍କ ଦରବାର କବି ଥିଲାବେଳେ ତାଙ୍କ ନିର୍ଦ୍ଦେଶରେ ଏହା ରଚନା କରିଥିଲେ ।

ଜଗନ୍ନାଥଙ୍କ ବାରମାସରେ ତେରଯାତ୍ରା ମଧ୍ୟରେ ରଥଯାତ୍ରା ସର୍ବଶ୍ରେଷ୍ଠ । ପୁରୁଷୋତ୍ତମ କ୍ଷେତ୍ରରେ ଏହି ଯାତ୍ରା ସମୟରେ ସର୍ବାଧିକ ଜନସମାଗମ ହୋଇଥାଏ । ଭାରତର ସର୍ବାଞ୍ଚଳରୁ ଯାତ୍ରୀମାନେ ଆସିଥାନ୍ତି । ସେଥିମଧ୍ୟରେ ହିନ୍ଦୀଭାଷାଭାଷୀ ବା ହିନ୍ଦୀ ବୁଝୁଥିବା ବ୍ୟକ୍ତିଙ୍କ ସଂଖ୍ୟା ବହୁତ । ସେମାନଙ୍କୁ ରଥଯାତ୍ରା ବିଷୟରେ ଅବହିତ କରିବା ଲକ୍ଷେ ରାଜାରେ ମହୁଡ଼ମଣି ଠାକୁର ରାଜା ଦିବ୍ୟସିଂହ ଦେବଙ୍କ ଉଦ୍ଦେଶ୍ୟ ଥିଲା । ପ୍ରାୟ ୧୭୯୫ ଖ୍ରୀଷ୍ଟାବ୍ଦରେ 'ଗୁଣ୍ଡିଚା ବିଜେ' ରଚିତ ହୋଇଥିଲା । ଢେଙ୍କାନାଳର ପଣ୍ଡିତ ଗଣେଶ୍ୱର ମିଶ୍ର ୧୯/୧ରେ ପ୍ରଥମେ ଏହି ପୁସ୍ତକ ପ୍ରକାଶ କଲେ । ଏହାର ଭାଷା କେତେଦୂର ହିନ୍ଦୀର ନିକଟବର୍ତ୍ତୀ ତାହା ହିନ୍ଦୀ ବିଶେଷଜ୍ଞମାନେ ବିଚାର କରିବେ ।

ମଙ୍ଗଳାଚରଣରେ ଗ୍ରନ୍ଥାରମ୍ଭ ହୋଇଅଛି—

ଶ୍ରୀ ରାଧାପତି ପଦ ଚନ୍ଦ୍ରକେ ସକଲ ବିଘ୍ନକର ନାଶ,
କର ତହିଁ ନରହରି ଗୁଣ୍ଡିଚିଯାତ ବିଧି ପରକାଶ ।
ଆଷାଢ଼ ମାସ ପ୍ରବେଶ ଭଏ ଦୁସରେ ପ୍ରତିପଦକେ ଦିନ,
ଦୀନ ଜଗବନ୍ଧୁ ଯୋ ନେତ୍ର ଜାତ ବିଧି କିନ ।
ଦେବଗଣମେଁ କେ ବଡ଼ ଭୋରସେ ଚଞ୍ଚଲ ଲୋକ ତୟାର,
ସବ୍ ନିଜ ସେବକ ସ୍ୱାମୀକେ ଦାଖିଲ ଦେଉଲ ଦୁଆର ।
ପରିଚ୍ଛ ତଲଚ୍ଛ କିଏ ଭୋରସେ ଦଏତାପତି ପଢ଼ିଆର,
ପଣ୍ଡା ପଢ଼ିଆର ପଶୁପାଲକ ଔର ଖିଦମତ୍-ଗାର ।
ଗହ ଗହ୍ ଗହଲ ଉଛୁଲ ଯୋ ଖିର ନୀର ନିଧି ଦାନ,
ଜୟଜୟ ହରିହରି ହୋଅ ତହୁଁ ପୂରଗଇ ସବ କାନ ।

ଜଗନ୍ନାଥ ଧାମ ଭାରତର ଚାରିଧାମ ମଧ୍ୟରେ ଗୋଟିଏ । ଜଗନ୍ନାଥ ହିନ୍ଦୁର ଇଷ୍ଟଦେବତା । "ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ"—ଏହି ବିଶ୍ୱାସ ଦୃଢ଼ ଥିବାରୁ ଅଙ୍ଗ, ବଙ୍ଗ, ଗଙ୍ଗ, କାଶୀ, କାଶ୍ମୀର, କଳିଙ୍ଗ, ନେପାଳ, ପଞ୍ଚାଳ, ମୁଲତାନ, ଲହୋର, ରୋହିଲଖଣ୍ଡ, ବୁନ୍ଦେଲଖଣ୍ଡ, ନୀଳଗିରି, ଗୋପ, କର୍ଣ୍ଣାଟ, କୋଶଳ, କାଞ୍ଚି, ଗୁଜୁରାଟ, ଦିଲ୍ଲୀ, ମାଳବ, କଚ୍ଛ ପ୍ରଭୃତି ଅଞ୍ଚଳରୁ ଯାତ୍ରୀମାନେ ଆସିଥିବା କଥା କବି ଉଲ୍ଲେଖ କରିଛନ୍ତି । କବିଙ୍କ ଭୂଗୋଳ ଜ୍ଞାନର ପରିଚୟ ଏଥିରୁ ମିଳୁଛି । ସେ ତୀର୍ଥଯାତ୍ରୀ ହୋଇ ଏ ମଧ୍ୟରୁ କେତେକ ସ୍ଥାନ ଦର୍ଶନ କରିଥିବେ, ସନ୍ଦେହ ନାହିଁ । ସେ କାଳରେ ଯାତାୟାତ ପଥ ଉତ୍ତମ ନ ଥିଲା କିମ୍ବା ଦ୍ରୁତଗାମୀ ଯାନବାହନ ପ୍ରଚଳିତ ନ ଥିଲା । ପଥ ବ୍ୟାଘ୍ର ଭଲ୍ଲୁକସଙ୍କୁଳ, ଚୌରଦସ୍ୟୁବାଧା ଯୋଗୁଁ ସଙ୍କଟପୂର୍ଣ୍ଣ ଥିଲା । କେହି ହସ୍ତୀରେ, କେହି ଅଶ୍ୱରେ, କେହି ଉଷ୍ଟ୍ରରେ, କେହି ପାଲିଙ୍କିରେ ଦୂରବର୍ତ୍ତୀ ତୀର୍ଥସ୍ଥାନକୁ ଯାତ୍ରା କରୁଥିଲେ । ପଦବ୍ରଜରେ ଯାତ୍ରାକରି ଜଗନ୍ନାଥ ଦର୍ଶନକଲେ ଧର୍ମ ହୁଏ ବୋଲି ଯାତ୍ରୀମାନଙ୍କର ବିଶ୍ୱାସ ଥିଲା ।

ପହଣ୍ଡି ବିଜେ ଓ ରଥଯାତ୍ରାବେଳେ ଯେଉଁ ଯେଉଁ ବାଜା ବାଜେ ତାର ଚିତ୍ର କବି ଅଙ୍କନ କରିଛନ୍ତି—

ପଖାଉଜ ବୀଣା ମୁରୁଦଙ୍ଗ ମନ୍ଦିରା
ପିନାକୀ ରବା ସାରଙ୍ଗୀ ଔର ତମ୍ବୁରା
ଡମ୍ବୁରୁ ଖଞ୍ଜରୀ ଅମୃତୀ ବେଣୁ ବାଏ
କୌନ କାଠତାଲ୍ ମଗନମେ ଝୁଲ୍ଏଁ ।

ରଥ ଚଳିବା ଆଗରୁ ଉତ୍କଳର ରାଜାଙ୍କ ଛେରାପହଁରା ବିଧି ଅତି ପ୍ରାଚୀନ । ଏହି ଛେରାପହଁରା ଦେଖି ମେହେନ୍ତର କାର୍ଯ୍ୟ କରୁଛନ୍ତି ବୋଲି କାଞ୍ଚିରାଜା ଗଜପତି ରାଜାଙ୍କୁ ଅପମାନ ଦେଇଥିଲେ । ସେଥିଲାଗି ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନ କରିଥିଲେ ଓ କାଞ୍ଚି ରାଜାଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତକରି ତାଙ୍କ କନ୍ୟା ପଦ୍ମାବତୀଙ୍କର ପାଣିଗ୍ରହଣ କରିଥିଲେ ବୋଲି କିମ୍ବଦନ୍ତୀ ପ୍ରଚଳିତ ଅଛି । ଦିବ୍ୟସିଂହ ଦେବଙ୍କ ଛେରାପହଁରା ବର୍ଣ୍ଣନା ବିଶେଷ ପ୍ରୀତିକର—

ଲଖରାଜନକେ ମୁକୁଟମଣି ଏକ ଛତ୍ରଧର ଯହିଁ
ଶ୍ରୀ ଦିବ୍ୟସିଂହ ଦେବ ମହୀପାଲ ଭୂପବର ଶୂରବୀର ନରସିଂହ ।
ମୃଗମଦ କର୍ପୂର ମିଶ୍ରିତ ଚନ୍ଦନ, କନକକର ହେବନ ଝାଡ଼ୁକେ ସ୍ୟନ୍ଦନ ।
ଚନ୍ଦ୍ରିତ ପଟ ଡୁଲି ଶିରଲେଁ,
ରାଜନ ଠେଲତ ସୁନ୍ଦର ରଥବର ଘନ ଘନ ।

ରଥଯାତ୍ରାବେଳେ ଚତୁର୍ଦ୍ଦିଗରେ ନାନା ଉତ୍ସବ—କେଉଁଠି ଗୀତନାଟ୍ୟ, କେଉଁଠି ବେଦପାଠ, କେଉଁଠି ଘଣ୍ଟାମାଦଳ, କେଉଁଠି ନାମ ସଙ୍କୀର୍ତ୍ତନ ହେଉଛି; ଯୋଗୀ ସନ୍ଥ, ମହନ୍ତ, ଦଣ୍ଡୀ, ନାନକ-ପନ୍ଥୀ, ଜ୍ଞାନୀ, ଧ୍ୟାନୀ, ଦାସ, ଉଦାସ, ରାଜା, ନବାବ, ଦୁର୍ଗୀରଙ୍ଗୀ, ଦିଗମ୍ବର ରଥଦଉଡ଼ି ଭିଡୁଛନ୍ତି । କେଉଁଠି ସନ୍ଥ, ଭକ୍ତ ଓ ବୈଷ୍ଣବମାନେ ଚାମର ପକାଉ ଅଛନ୍ତି । ରାଜଦ୍ୱାରରେ, ମଠ ଦ୍ୱାରରେ, ମାଉସୀ ମାଆ ଦୁଆରେ ଗ୍ରାମୁଣ୍ଡିଆ ହୋଇଅଛି । ଏହି ସ୍ଥାନମାନଙ୍କରେ କଦଳୀ, ଖଣ୍ଡ ନଡ଼ିଆ, ରସପୁଳି, ପିଜୁଳି, ସପୁରି, ପଣସ, ନାରଙ୍ଗ, ଅଧାମ, ଇଣ୍ଡୁରି ଖୁରମା, ଗୋଟିକା, ଲହୁଣୀ, ଅମାଲୁ, ନାଡ଼ୁ, ବରଲଡ଼ୁ, ବୁନ୍ଦିଆ, ମନୋହର, କାନ୍ତି ଉଖୁଡ଼ା ଇତ୍ୟାଦି ପନ୍ତିଭୋଗ ହେଉଛି ।

ଗୁଣ୍ଡିଚା ବର୍ଣ୍ଣନାର ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଦୋହା ଲିଖିତ ହୋଇଅଛି । ବର୍ଷାକାଳ ଓ ପ୍ରେମିକପ୍ରେମିକାଙ୍କ ବିରହ ବର୍ଣ୍ଣନା ରୁଚିକର ହୋଇ-ଅଛି । ଶେଷରେ ଗୋଟିଏ ଲେଖାଏଁ ଚୂର୍ଣ୍ଣିକ ସନ୍ନିବେଶିତ ହୋଇଅଛି । ଗୁଣ୍ଡିଚା ବିଜେରେ ଲେଖନକାରଙ୍କ ଅସାବଧାନତା ହେତୁରୁ ହେଉ କିମ୍ବା କବିଙ୍କ ଅଜ୍ଞାନତା ହେତୁରୁ ହେଉ 'ବହୁ ଓଡ଼ିଆ ଶବ୍ଦ' ମିଶ୍ରିତ ହୋଇଅଛି ।

ଭଗବାନ୍‌ଙ୍କ ମହିମା ବର୍ଣ୍ଣନା ଉପନିଷଦ୍ ବର୍ଣ୍ଣନାର ଅନୁରୂପ ହୋଇଛି—

ପାପୀକୋ ଯୈସେ ବିକରାଲ, ଛବି କାଲ ହୈ
ଭକ୍ତକୋ ପୂର୍ଣ୍ଣ ଆନନ୍ଦ ଧାମ
ଯୋଗୀକୋ ଜ୍ୟୋତି ପ୍ରକାଶ ନିଜଦାସ କୋ କଳ୍ପତରୁ
ତରୁଣୀ କୁଲ ପ୍ରେମ କାମ;

କୁଟିଲ ହୃଦ କପଟୀ କୋ ଗହନ ଅନ୍ଧକାର
ବିଷୟୀ କୋ ଛନ୍ଦେ ଜଞ୍ଜାଲ ସୀମା,
ସନ୍ତକୋ ସ୍ୱଚ୍ଛ ଅତି ତେଜ ରୂପବନ୍ତ
ଦୁଷ୍ଟକୋ ଚଣ୍ଡକର ରୂପସୀମା !

ବ୍ରଜନାଥ ବଡ଼ଜେନାଙ୍କ ପ୍ରସିଦ୍ଧ ସମର କାବ୍ୟ 'ସମରତରଙ୍ଗ'ରେ ମଧ୍ୟ କେତୋଟି ହିନ୍ଦୀଗୀତ ସନ୍ନିବେଶିତ ହୋଇଅଛି । ଏହାର ଅନୁକରଣରେ ନୃସିଂହ କବିଚନ୍ଦ୍ର ରାୟଗୁରୁ ତାଙ୍କ ରଚିତ 'ସୋମନାଥ ସିଂହ ଜଗଦ୍ଦେବ' କାବ୍ୟରେ କେତୋଟି ହିନ୍ଦୀ ଗୀତ ସନ୍ନିବେଶିତ କରିଛନ୍ତି । ଏହି କବିଙ୍କ ଜନ୍ମ ୧୮୧୪-୧୫ ରେ, ସେ ଅନୁଗୁଳର ରାଜା ସୋମନାଥ ସିଂହଙ୍କଠାରୁ କବିଚନ୍ଦ୍ର ଉପାଧି ଲାଭ କରିଥିଲେ । ୧୮୫୩ ସାଲରେ ହଜାରିବାଗ ଜେଲ୍‌ରେ ରାଜାଙ୍କ ମୃତ୍ୟୁପରେ ବୋଧହୁଏ 'ରାଜା ସୋମନାଥ ସିଂହ ଜଗଦ୍ଦେବ' ଗ୍ରନ୍ଥଟି ରଚିତ ହୋଇଥିଲା । ବିଦ୍ରୋହୀ ଅନୁଗୁଳ ରାଜା ସୋମନାଥ ସିଂହଙ୍କ ପରାକ୍ରମ ସମ୍ପର୍କରେ ମିଲ୍‌ସ ସାହେବ କଲିକତାକୁ ନିମ୍ନଲିଖିତ ରିପୋର୍ଟ ଦେଇଥିଲେ—

ଆରେ ତୁମ୍ କ୍ୟା ନବାବ୍ ହୋ ଅନୁଗୁଲ୍ ରାଜା ବଡ଼ା,
ସାରି ଯାହାନ୍‌ମେ ହୁକୁମ୍ ଫିରିଏ ସ୍ୱହିଁ ହାଁକେ ଘୋଡ଼ା ।
ଘଡ଼ି ଘଡ଼ିମେ ଫଉଜ ଚଲିଏ ହିନ୍ଦୋଲଗଡ଼ ହୁଆ ଉଡ଼ା,
ଶୁରୁ ମିଠା ହବେଲି କବେଲି ଯେତ୍‌ନା ଦୌଲତ ପୋଡ଼ା ।
ମହାଜନ ଲୋକ ସୁଧାଝୁଣ୍ଡ ହଇନୁ କୁମାରେ କୋଡ଼ା,
କାଁପନ୍ତି ଅସ୍ଥିନ ମେ ନୟନ ଦେଖନହି ଦେଶ ଦେଶ କହିଁ ପୋଡ଼ା ।
ହଜାର ହଜାର ନୌକର ଲୋକ ଲିଏ ହଜାର ହଜାର ଘୋଡ଼ା,
କୃଷ୍ଣଚକ୍ରମେ ବହୁତ ପାହାଡ଼ ହୈ ଫେର୍ ଫେର୍ ଚହିଁ ଗୋଡ଼ା ।
ଟୈପ ଟୈପ କେ ତୋପ ତୋପ ହେଁ ଧୋପ ଧୋପ ନେ ଟ୍ରୌଡ଼ା,
ଭୂପ ଭୂପ କୁଲ ଚୁପ୍ ଚୁପ୍ ନେହିଁ ଇନକା ଲଠିନା ଥୋଡ଼ା ।
ଅନୁଗୁଲ୍ ରାଏ ଡିରି ଦେଖାୟା ଡରକେ ଭାଗା ବୁଡ୍‌ଢ଼ା,

ଏଇ ଖବରୁ ରିପୋର୍ଟଟି ପାଇ କଲିକତାରୁ ଲାଟ୍‌ସାହେବ ବିରକ୍ତ ହୋଇ ଲେଖିଲେ—

ଆରେ ତୁମ୍ କ୍ୟା ଦୁଖେଇରେ ସଦର ଚଲମିଲ୍ ମୋଡ଼ା,
ଅନୁଗୁଲ ରାଏ ଘୁସ୍ ଦେଖାଏ କେତା ରୁପୟା ଛୋଡ଼ା ।
ପାଗଲ ଲୋକ ବିଗୁର ଗୈଲ ସେ ସକଲ ଦୌଲତ ବୁଡ଼ା,
ଛୁଗଲ ଛୁରକି ଶେର ଜାନୁଆର ହିରନ୍‌କର ମନ୍ ଲୋଡ଼ା ।

ଦେଖୋ ଅଙ୍ଗବଙ୍ଗ ରଣଜିତ୍ ସିଂହ ଇନ୍‌କୋ ଦିଆ ଉଡ଼ା,
ଚଉଦ ଗଡ଼ମେ ଚଉଦ ତୋପ ନେହିଁ ଇନ୍‌କା ଲଢ଼ନା ଲୋଡ଼ା ।
କ୍ୟାମିଲ ସାହେବ କେ ହୁକୁମ ଦିୟୋ ତୁମ୍ ଜଲ୍‌ଦି ଯାଏ ବୁଡ୍‌ଢ଼ା,
ରାହିଁକା ଆସିଦଣ୍ଟ (Assistant) ପାଠ ଲେକ ଅନୁଗୁଲ ଦିଏ ଉଡ଼ା ।
ଲାଖ୍ ଲାଖ୍ ତୋପ ଲାଖ୍ ଲାଖ୍ ଲେ ଲାଖ୍ ଲାଖ୍ ଲିୟେ ଘୋଡ଼ା,
ବିପ୍ର ଶ୍ରେଷ୍ଠ କବିଚନ୍ଦ୍ର କହେ ଅନୁଗୁଲ କିସ୍‌ମତ୍ ଥୋଡ଼ା ।

ଏହାପରେ ଆମେ ଆଧୁନିକ ଯୁଗକୁ ଆସୁଁ । ଊନବିଂଶ ଶତାବ୍ଦୀର ଶେଷ-ଭାଗରେ ରାୟପୁର ରାଜକୁମାର କଲେଜ ପ୍ରିନ୍‌ସିପାଲଙ୍କ ଅନୁରୋଧ କ୍ରମେ ବାମଣ୍ଡାର ସାହିତ୍ୟିକ ରାଜା ବାସୁଦେବ ସୁଢ଼ଳଦେବ 'ଧର୍ମଶିକ୍ଷା' ନାମକ ଗ୍ରନ୍ଥ ହିନ୍ଦୀରେ ପ୍ରଣୟନ କରିଥିଲେ । ସେ ଯୁଗରେ ଧର୍ମଶିକ୍ଷା ପାଠ୍ୟ ନିର୍ଘଣ୍ଟର ଅନ୍ତର୍ଗତ ଥିଲା । ରାଜାସାହେବ ଉପନିଷଦର କେତେକ ପ୍ରଧାନ ଶ୍ଳୋକ, ତାର ହିନ୍ଦୀ ପଦ୍ୟାନୁବାଦ ଓ ଏହି ପଦ୍ୟର ସରଳାର୍ଥ ବ୍ୟାଖ୍ୟା କରିଛନ୍ତି । ହିନ୍ଦୁଧର୍ମ କାହାକୁ କହନ୍ତି, ନିରାକାର ଓ ସାକାର ଈଶ୍ୱରଙ୍କୁ କିପରି ଉପାସନା କରାଯିବ, ଈଶ୍ୱରପ୍ରାପ୍ତି ଲାଗି କି କି ଉପାୟ ଅବଲମ୍ବନ କରାଯିବା ଉଚିତ, ଗୃହଧର୍ମ କାହାକୁ କହନ୍ତି, ଇନ୍ଦ୍ରିୟ-ସଂଯମ କିପରି କରାଯିବ, ମନକୁ ପବିତ୍ର ରଖିବା ଲାଗି କି କି ଉପାୟ ଅବଲମ୍ବନ କରିବା ବାଞ୍ଛନୀୟ, ସତ୍‌ସଙ୍ଗରେ କି ଫଳ ଲାଭହୁଏ, ପିତାମାତା, ଗୁରୁଜନ ଓ ପ୍ରଭୁମାନଙ୍କ ପ୍ରତି କିପରି ଭକ୍ତିଭାବ ପ୍ରଦର୍ଶନ କରିବ, ଦରିଦ୍ର, ଅନ୍ଧ, ବଧିର ଓ ଖଞ୍ଜଙ୍କୁ କିପରି ସାହାଯ୍ୟ କରାଯାଇ ପାରିବ ଇତ୍ୟାଦି ନାନା ଦୃଷ୍ଟାନ୍ତ ଦେଇ ସରଳ ଭାଷାରେ ରାଜକବି ବୁଝାଇ ଦେଇଛନ୍ତି ।

"ପରୋପକାରାୟ ସ୍ୱର୍ଗାୟ"
"ଶ୍ରୁତିଶ୍ଚ ଭିନ୍ନା ସ୍ମୃତୟଶ୍ଚ ଭିନ୍ନା
ନାନା ମୁନୀନାଂ ମତୟଶ୍ଚ ଭିନ୍ନା
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥା"
"ଏକ ଏବ ସୁହୃଦ ଧର୍ମୋ ନିଧନେଽପ୍ୟନୁଯାତି ଯଃ
ଶରୀରେଣ ସମଂ ନାଶଃ ସର୍ବ ମନ୍ୟତ୍ତୁ ଗଚ୍ଛତି ।"
"ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ"

ଏହିସବୁ ଶିକ୍ଷଣୀୟ ଶ୍ଳୋକ ମହାଭାରତ, ରାମାୟଣ, ଭାଗବତ ଓ ଉପ-ନିଷଦ୍‌ରୁ ଉଦ୍ଧାର କରି ବୁଝାଇଛନ୍ତି ।

ତତ୍ପରେ ବ୍ୟାବହାରିକ ଧର୍ମ, ବେଦ ଅବତାର, ହିନ୍ଦୁ ସଂପ୍ରଦାୟ, ଜୀବାତ୍ମାକା କର୍ତ୍ତବ୍ୟ, ଈଶ୍ୱରସେବା, ଉପନିଷଦ୍ କା ଉପଦେଶ ପ୍ରଭୃତି ଧର୍ମ ସମ୍ପର୍କୀୟ ହିନ୍ଦୀ ପ୍ରବନ୍ଧ 'ବାସୁଦେବ ଗ୍ରନ୍ଥାବଳୀ'ରେ ସନ୍ନିବିଷ୍ଟ ହୋଇଅଛି ।

ଆଧୁନିକ ଯୁଗର ନାରୀ କବି କୁନ୍ତଳା କୁମାରୀ ସାବତ (ଜନ୍ମ ୧୯୦୦) ହିନ୍ଦୀ ଭାଷାରେ ବିଶେଷ ପ୍ରବୀଣତା ଅର୍ଜନ କରିଥିଲେ । ତାଙ୍କ ଡାକ୍ତରୀ ବ୍ୟବସାୟ ସାହିତ୍ୟସାଧନାର ଅନ୍ତରାୟ ହୋଇ ନଥିଲା । ଦିଲ୍ଲୀ ରହଣି କାଳରେ ହିନ୍ଦୀ ସାହିତ୍ୟ ପତ୍ରିକାମାନଙ୍କରେ ତାଙ୍କ କବିତା ଓ ସନ୍ଦର୍ଭମାନ ନିୟମିତ ପ୍ରକାଶିତ ହେଉଥିଲା । ସେତେବେଳେ 'ମହାବୀର', 'ଜୀବନ', 'ନାରୀ' ଓ 'ଭାରତୀ' ପ୍ରଭୃତି ପତ୍ରପତ୍ରିକାର ସମ୍ପାଦିକା ଭାବରେ ମଧ୍ୟ ସେ କୃତିତ୍ୱ ଅର୍ଜନ କରିଥିଲେ । ଜଣେ ଓଡ଼ିଆ ନାରୀ (ବସ୍ତର୍ ଷ୍ଟେଟ୍‌ରେ ଯାହାଙ୍କର ଜନ୍ମ, ବର୍ମାରେ ଲାଳନ) ପକ୍ଷରେ ଏହା ସାମାନ୍ୟ ଗୌରବର କଥା ନୁହେଁ । ସେ 'ବରମାଲା' ନାମକ ଖଣ୍ଡିଏ କବିତା-ଗ୍ରନ୍ଥ ମଧ୍ୟ ହିନ୍ଦୀରେ ରଚନା କରିଥିଲେ । କୁନ୍ତଳାଙ୍କ ବ୍ୟକ୍ତିଗତ ଜୀବନ ଦୁଃଖମୟ ଥିଲା । ନିଜ ଗଭୀର ବେଦନାର ବିଶ୍ୱସ୍ତ ସାଥୀ ନ ପାଇ ସେ ଭଗବତ୍ ଚରଣରେ ଆଶ୍ରୟ ଗ୍ରହଣ କରିଥିଲେ । ଭଗବାନ୍ ତାଙ୍କର ପ୍ରାଣପ୍ରିୟ ଓ ଏକମାତ୍ର ଗତିମୁକ୍ତି-ଦାତା । ତାଙ୍କ ଚରଣରେ ଶରଣ ଲୋଡ଼ି କବି କହିଛନ୍ତି—

ମେରୀ ଜୀବନ ନାବ କୋ ଜୀବନ ନାଥ ହୈ
ଶାମ ହୋନେ ସେ ପହଲେ ତେରେ ଘାଟପର ବା ଧନାହୈ
ତୁଝେ ମେରୀ ଖେବନ ହାରୀ ବନାନେ କି ସାଧନା ହୈ ।
ଯୁଦ୍ଧ ସାରେ ନଭ ଗ୍ରୁବେ ବାଦଲ୍ ବଜେ ଭୈରବ ମାଦଲ
ତୁମ୍ ହୋ ସାଥମେ ମୁଝେ କ୍ୟା ଭୟ୍ ଆବୈ ନ ପ୍ରଲୟ୍
ଲହରୋଁ ବୀଚ ଲୟ୍ ହୋନା ଅତଲ ତଲ ମେଁ ଡାଲ ବିଗ୍ରୋନା—
ଯଦି ବଡ଼ବାନଲ୍ ଶିଖାଓ ମେ କୁଦ୍‌ନା ହୈ
ଏକ ସାଥ ହି ଡୁବନା, ନହିଁ କୋଇ ଭାବନା
ତୁମ୍ହାରେ ହରପର ମରନା, ନିବିଡ଼ ଅନୁଭୂତି ଓହିତ ମମ
ଜୀବନ ଆରାଧନା ହୈ ।

କବି 'ମନକୀ ବାତ୍' କବିତାରେ ମନର ଗଭୀର ଦୁଃଖ ପ୍ରକାଶ କରିଛନ୍ତି । ବନ ପୋଡ଼ିଗଲେ ଜଗତ ଜାଣେ, ମନ ପୋଡ଼ିଗଲେ କେହି ଜାଣନ୍ତି ନାହିଁ ।

ମନ୍‌କା ସବ୍ ବାତ୍ କୈସେ ବତାଉଁ
ମନ୍‌କା ଅପ୍‌ନା ଜନ ବୀନ ସଖୀ

ଚାନ୍ଦନୀ ଶ୍ରେଷ୍ଠ କସେ ଦେଖଲାଉଁ
କୋଇ କବ ନହିଁ ସୋବେ ଉସେ ଇଖି
ମନକୀ ଜଲନ କୋ କୋ ହୈ ପହଚାନା
ଛୁପା ଛୁପା କର ଆଁସୁ ଆ ବହନା
ଯୋନେକୋ କସୋଟି ଭଲେହି ମିଲ ଯାୟ
ମିଲେ କ୍ୟା ରେ ସଚ୍ଚ ହଲ୍‌କା ପାରଖି
ଜଙ୍ଗଲ ମେଁ ଆଗ ଲଗତେ ସ୍ତ୍ରୀ ଦେଖେ ଜଗ୍‌
ଆଗ ଲଖ ଅନ୍ଦର ଜବ ଭରଗୋ ରଗ
କୋନ ଦେଖେ ଉସେ କୋନସା ବୁଝାଓ ଏ
ହାୟ ! ଜୀବ୍‌ କୋ ନକଲେ ବାଲଖି ।

ଆଧୁନିକ କେତେକ ଓଡ଼ିଆ ଲେଖକ ହିନ୍ଦୀରେ ପ୍ରବୀଣତା ଅର୍ଜନ କରିଛନ୍ତି; ଅଧ୍ୟାପକ ଗୋଲୋକବିହାରୀ ଧଳଙ୍କ 'ଧ୍ୱନିବିଜ୍ଞାନ' ହିନ୍ଦୀ ଭାଷାର ଗୋଟିଏ ବଡ଼ ଅଭାବ ଦୂର କରିଛି । ଅଧ୍ୟାପକ ତାରିଣୀଚରଣ ଦାସ (ଚିଦାନନ୍ଦ) 'କଲା ଔର ସାହିତ୍ୟ' ନାମକ ଖଣ୍ଡିଏ ପ୍ରବନ୍ଧ ଗ୍ରନ୍ଥ ରଚନା କରିଛନ୍ତି । ଏଥିରେ କଳା କଣ, ସାହିତ୍ୟ କାହାକୁ କହନ୍ତି, ସାହିତ୍ୟର ବିଭିନ୍ନ ବିଭାବ ଓ ପ୍ରବୃତ୍ତି, ଭାସ୍କର୍ଯ୍ୟ, ଚିତ୍ର ଓ ସଙ୍ଗୀତ ମଧ୍ୟରେ ସାହିତ୍ୟ କାହିଁକି ଶ୍ରେଷ୍ଠ, ସେ ଆଲୋଚନା କରିଛନ୍ତି । ଗୋପବନ୍ଧୁ ଦାସଙ୍କ 'ଧର୍ମପଦ', କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' (ମିଟ୍ଟୀ କା ପୁତଲା) ପ୍ରଭୃତି କେତେକ ଓଡ଼ିଆ ଗ୍ରନ୍ଥ ହିନ୍ଦୀରେ ଅନୁବାଦିତ ହୋଇଛି । ଉତ୍କଳ ପ୍ରାନ୍ତୀୟ ରାଷ୍ଟ୍ରଭାଷା ପ୍ରଚାର ସଭା ପକ୍ଷରୁ ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ ପ୍ରକାଶ ପାଇଅଛି । ସେଥିରେ ଓଡ଼ିଶାର ଭୂଗୋଳ, ପୁରାତତ୍ତ୍ୱ, ଭାଷା ଲିପି, ଓଡ଼ିଆ ସାହିତ୍ୟର କ୍ରମ ବିକାଶ, ଧର୍ମ, ଓଡ଼ିଆ ଲୋକଗୀତ ଓ ଲୋକକଥା ସମ୍ବନ୍ଧରେ ବହୁ ଉପାଦେୟ ପ୍ରବନ୍ଧ ହିନ୍ଦୀ ଭାଷାରେ ପ୍ରକାଶିତ ହୋଇଛି ।



# କ୍ଷୁଦ୍ରଗଳ୍ପ ଓ ଓଡ଼ିଆ ଗଳ୍ପକାର

କ୍ଷୁଦ୍ରଗଳ୍ପ ଓ ଲୋକଗଳ୍ପର ନିର୍ମାଣ କଳା ପରସ୍ପରଠାରୁ ଭିନ୍ନ । ଲୋକ-ଗଳ୍ପର ନିର୍ଦ୍ଦିଷ୍ଟ ରଚକ ନାହିଁ; ଏହା ବହୁ ଜନଙ୍କ କୀର୍ତ୍ତି । ଏହାର ଅନ୍ତର୍ନିହିତ ଆବେଗ ସ୍ୱତଃସ୍ଫୂର୍ତ୍ତି, ଗତି ପ୍ରାକୃତିକ । ଏହାର ପ୍ରାରମ୍ଭ ଓ ପରିଣାମ ନିର୍ଦ୍ଦିଷ୍ଟ; କଥାଣିରେ ଏହାର ଆଦି, କଥାଣିରେ ଏହାର ଅନ୍ତ । କେତେକ ସୁକଳ୍ପିତ ପ୍ରବୃତ୍ତି ମଧ୍ୟରେ ଏହାର ଗତିବେଗ, କେତେବେଳେ କଳ୍ପନାରେ ବିଳସିତ, କେତେବେଳେ ସ୍ୱପ୍ନରେ ନିବିଡ଼ । ରାଜାରାଣୀଙ୍କଠାରୁ ଆରମ୍ଭ କରି ଭବିଷ୍ୟତବକ୍ତା ପକ୍ଷୀ ଓ ମାନବଭାଷୀ ପଶୁ ଏହାର ପରିସର ମଧ୍ୟରେ ଆସନ୍ତି, କିନ୍ତୁ କ୍ଷୁଦ୍ରଗଳ୍ପ କୃତ୍ରିମ; ଗଳ୍ପକାର ଏଥିରେ ଶିଳ୍ପାୟନ ଲାଗି ସଚେତନ ପ୍ରୟାସ କରିଥାଏ । ଜୀବନର ବାଜିଗର ନୁହେଁ ସେ, ବ୍ୟାଖ୍ୟାକାର । ବାସ୍ତବତା ତାର ନର୍ମସଖୀ । ପ୍ରକୃତ ବାସ୍ତବତା ଅନୁସନ୍ଧାନରେ ସେ ମନୁଷ୍ୟର ନିଭୃତତମ ଅବଚେତନ ସ୍ତରରେ ପ୍ରବେଶ କରେ । ଜୀବନକୁ ବୃହତ୍ତର ଓ ସୁନ୍ଦରତର କରି ଚିହ୍ନାଇବାରେହିଁ ତାର କୃତିତ୍ୱ ।

ଲୋକଗଳ୍ପ ସହିତ ଜାତକଗଳ୍ପ, କଥାସରିତ୍‌ସାଗର, ଦଶକୁମାର ଚରିତ, ବତ୍ରିଶ ସିଂହାସନ, ବେତାଳ ପଞ୍ଚବିଂଶତି, ଶୁକ-ସପ୍ତତି, ପଞ୍ଚତନ୍ତ୍ର, ମିତ୍ରଲାଭ ପ୍ରଭୃତି ପ୍ରାଚୀନ ଭାରତୀୟ ଗଳ୍ପସଂଚୟନମାନଙ୍କର ସମ୍ପର୍କ ନିବିଡ଼ । କ୍ଷୁଦ୍ରଗଳ୍ପ ଯୁଗରେ ବି ସେ ସବୁ ଲୋକପ୍ରିୟତା ହରାଇ ନାହିଁ; କ୍ଷୁଦ୍ରଗଳ୍ପ ମଧ୍ୟ ସେ ସମସ୍ତର ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇ ପାରିନାହିଁ ।

ନାମତଃ କ୍ଷୁଦ୍ରଗଳ୍ପ ହେଲେବି ଏହା ଆକାରରେ ବୃହତ୍ ହୋଇପାରେ । ତଥାପି ତାର ଗୋଟିଏ ସୀମା ଅଛି, ସାହିତ୍ୟଶାସ୍ତ୍ର ତାହା ନିର୍ଦ୍ଧାରଣ ନ କଲେ ବି କ୍ଷୁଦ୍ରଗଳ୍ପର ସୃଷ୍ଟିର ମୂଳରେ ହିଁ ଏହାର ସୀମାର ଏକ ସ୍ଥୂଳ ଧାରଣା ରହିଅଛି । ଶିଳ୍ପଯୁଗରେ ମନୁଷ୍ୟର ଅବସର ଅଳ୍ପ; ତାହାର ଯତ୍‌କିଞ୍ଚିତ୍ ସମୟ ବିନୋଦନରେ ବିନିଯୋଗ କରିବା ଲାଗି ଲେଖକ ଏହି ସ୍ୱଳ୍ପାୟତନ ମାଧ୍ୟମ ସୃଷ୍ଟି କରିଅଛି । ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ କ୍ଷୁଦ୍ରଗଳ୍ପଟିଏ ପଢ଼ି ଶେଷ କରିହୋଇ-ପାରେ । ଏହାର ଚରିତ୍ର ସଂଖ୍ୟା ସୀମିତ, ଜୀବନର ଗୋଟିଏ ବିଶେଷ ମୁହୂର୍ତ୍ତର ଚିତ୍ର ଏଥିରେ ପ୍ରତିଫଳିତ, କୌଣସି ଗୋଟିଏ ରସ ପରିଣାମ ଏହାର ଲକ୍ଷ୍ୟ । ମୁହୂର୍ତ୍ତରେ ପୂର୍ଣ୍ଣାଙ୍ଗ ଜୀବନର ଗାଥା ପ୍ରତିବିମ୍ବିତ ହୋଇଥାଏ, ଶିଶିର ବିନ୍ଦୁରେ ଆକାଶ ଭଳି ଜୀବନର ସେଇ ଚିତ୍ତାକର୍ଷକ ମୁହୂର୍ତ୍ତ ଉପରେ ପ୍ରତିଭାଶାଳୀ ଲେଖକ

ଉଜ୍ଜ୍ୱଳତମ ଆଲୋକ ନିକ୍ଷେପ କରେ; ସେହି ଆଲୋକର ଦୀପ୍ତିରେ ଆମେ ସେହି ଜୀବନକୁ ଦେଖୁ, ରସୋପଭୋଗ କରୁ । ନିତାନ୍ତ ଲୌକିକ ଘଟଣା ଅଲୌକିକ ରୂପରେ ହିଁ ଆମ ସମକ୍ଷରେ ପ୍ରତିଭାତ ହୁଏ । ତେବେ ସେ ଜୀବନ ଯେ କୌଣସି ଜୀବନ ନୁହେଁ; ଘଟଣା ବା ଦୁର୍ଘଟଣାର ଏକ ଆକର୍ଷଣୀୟ ଜୀବନ, ପ୍ରତିକ୍ରିୟାମୂଳକ କ୍ଷୁଦ୍ରଗଳ୍ପରେ ଲେଖକ ଆମକୁ ନୂତନ ଉପଲବ୍ଧିର ବାର୍ତ୍ତା ଶୁଣାଏ, ତାର ରସୋଚ୍ଛ୍ୱସିତ ମର୍ମରୁ । ସେଇ ଖଣ୍ଡାଂଶ ଜୀବନର ରସନିବିଡ଼ ରୂପହିଁ କ୍ଷୁଦ୍ରଗଳ୍ପ ।

କ୍ଷୁଦ୍ରଗଳ୍ପର ସଫଳ ଲେଖକ ହେବାଲାଗି କିଛି ବିଶେଷ ଗୁଣ ଆବଶ୍ୟକ । ପ୍ରତିଦିନ ଶତଶତ ଗଳ୍ପ ମଧ୍ୟରେ ବାସ କରିବାର ଅନୁଭୂତି ତାର ଥାଏ । ଅନୁଭୂତି ଯେତିକି ନିବିଡ଼, ତାର ବାକ୍ ସେତିକି ସଂଯତ ହୁଏ । ବହୁତ କହିବାକୁ ଥିଲେବି ସେ ଅଳ୍ପ କହେ । କ୍ଷୁଦ୍ରଗଳ୍ପଶିଳ୍ପର ଏହା ସୂତ୍ର । ଶିଳ୍ପୀକୁ ଅନାବଶ୍ୟକ କଥା, ଅନାବଶ୍ୟକ ଚରିତ୍ର, ଅନାବଶ୍ୟକ ଭାଷା କଠୋର ଭାବରେ ବର୍ଜନ କରିବାକୁ ହୁଏ । ଆତ୍ମନିୟନ୍ତ୍ରଣ, ଆତ୍ମସଂଯମ ଭାବକୁ ସନିଦ୍ଧ କରେ, ଆମୂଳଚୂଳ ଏହାର ଐକ୍ୟ ଅବ୍ୟାହତ ରଖେ, ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ପାଠକକୁ ରସସ୍ରୋତରେ ଅଗ୍ରସର କରାଏ ।

କ୍ଷୁଦ୍ରଗଳ୍ପର ଆରମ୍ଭ ଯେପରି ଚମକପ୍ରଦ, ତାର ଉପସଂହାର ମଧ୍ୟ ସେହିପରି ଆକସ୍ମିକ ହୋଇପାରେ । ନାଟକୀୟତା ସୃଷ୍ଟି କରି ନ ପାରିଲେ କ୍ଷୁଦ୍ରଗଳ୍ପ ନୀରସ, ନିର୍ଜୀବ ହୋଇପାରେ । ପ୍ରତିଭାଶାଳୀ ଲେଖକ ଜାଣେ— କେଉଁଠୁ କ୍ଷୁଦ୍ରଗଳ୍ପ ଆରମ୍ଭ କରିବାକୁ ହେବ, କେଉଁଠି ବା ଶେଷ କରିବାକୁ ହେବ । ସେ ପ୍ରଶ୍ନ କରେ, ସମସ୍ୟା ଉତ୍‌ଥାପନ କରେ, କିନ୍ତୁ ଉତ୍ତର ଦିଏନାହିଁ, ସମାଧାନ କରେନାହିଁ । କାରଣ ଏହାର ଉତ୍ତର ଗୋଟିଏ ନୁହେଁ, ସମାଧାନ ମଧ୍ୟ ଗୋଟିଏ ପ୍ରକାରେ ହୁଏନାହିଁ, କାରଣ ଜୀବନ ଗଣିତ ନୁହେଁ, ନ୍ୟାୟଶାସ୍ତ୍ର ନୁହେଁ, ହୁଏତ ଏ ଦୁଇର ବହିର୍ଭୂତ ବୃହତ୍ତର କିଛି; ଲେଖକ ମଧ୍ୟ ବିଚାରକ ନୁହେଁ—ନିୟମ ବା ପ୍ରମାଣ ଅପେକ୍ଷା ମାନବତାହିଁ ତାର ଚିନ୍ତାଧାରାକୁ ଅଧିକ ପ୍ରଭାବିତ କରେ ।

ଘଟଣାର ଘନଘଟା, ବର୍ଣ୍ଣନାର ଛଟା, ତତ୍ତ୍ୱ ଉପଦେଶ, ଗୂଢ଼ ଦର୍ଶନ କିମ୍ବା ଜୀବନର ଗଭୀର ରହସ୍ୟଭେଦ ଅନ୍ୟ ଯେଉଁ ସାହିତ୍ୟିକ ରୂପର ସଦ୍‌ଗୁଣ ହେଉ ପଛେ, କ୍ଷୁଦ୍ରଗଳ୍ପର ରସଭଙ୍ଗକାରୀ । ଇଙ୍ଗିତପୂର୍ଣ୍ଣ ଭାଷାରେ ବ୍ୟଞ୍ଜନାର ଉଜ୍ଜ୍ୱଳ ଦୀପ୍ତି ଏହାକୁ କବିତାର ସମୀପବର୍ତ୍ତୀ କରେ; କିନ୍ତୁ ପୂର୍ଣ୍ଣତାର ଆସ୍ୱାଦ ଏଥିରେ ଦୁର୍ଲ୍ଲଭ; ଏହା ଶେଷ ହୋଇବି ଶେଷ ହେଲାପରି ଲାଗେନାହିଁ । ସାବଲୀଳ, ସ୍ୱଚ୍ଛ ସଂଳାପ ଓ ପରିମିତ ବର୍ଣ୍ଣନା ମଧ୍ୟରେ ଚରିତ୍ରସବୁ ଚିତ୍ରିତ ହୋଇଥାନ୍ତି;

ଖଣ୍ଡିତ ମଧ୍ୟରେ ଅଖଣ୍ଡର, କ୍ଷଣ ମଧ୍ୟରେ ଚିରନ୍ତନର, ଅପୂର୍ଣ୍ଣ ମଧ୍ୟରେ ପୂର୍ଣ୍ଣତାର ଆଭାସ ଆମେ ପାଉଁ ।—କ୍ଷୁଦ୍ରଗଳ୍ପ ଏକ ସ୍ୱୟଂସମ୍ପୂର୍ଣ୍ଣ ଶିଳ୍ପସୃଷ୍ଟି ।

ବିଷୟବସ୍ତୁ ଦିଗରୁ କ୍ଷୁଦ୍ରଗଳ୍ପକୁ ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇ-ପାରେ; ପ୍ରେମ ଅଧିକ ସଂଖ୍ୟକ କାହାଣୀର ଉପଜୀବ୍ୟ; ବିରହ-ବିଚ୍ଛେଦରେ ହୁଏତ କେତେକ ଶୋକସଂକୁଳ ହୋଇ ଉଠିଛି; କେତେକ ଅତି ପ୍ରାକୃତ, ଜୀବନ ଆରପାରିର କଳ୍ପିତ ଜୀବନ ଓ ପାର୍ଥିବ ଜୀବନ ସହିତ ତାର ସମ୍ପର୍କକୁ ନେଇ ରଚିତ । କେତେକ ଦାରିଦ୍ର୍ୟ ଆଧିବ୍ୟାଧିମୟ ଭାରଗ୍ରସ୍ତ ଜୀବନକୁ ସହଜସହ୍ୟ, ହାସ୍ୟୋଜ୍ଜ୍ୱଳ କରେ । କେତେକ ଜୀବନର ପ୍ରତ୍ୟକ୍ଷ ଅନୁଭୂତି ସଙ୍କେତରେ ପ୍ରକାଶିତ ହୋଇଥାଏ । କେତେକ ଗଳ୍ପ ଇତିହାସ ବା କିମ୍ବଦନ୍ତୀ ସମ୍ବଳିତ । କେତେକ ବା ବୈଜ୍ଞାନିକ ଉଦ୍‌ଭାବନକୁ ନେଇ ରଚିତ, ଅଗ୍ରଗତିର ସୂଚନା ଦେଇଥାଏ, କେତେକ ଅବଚେତନ ମନର ବିଶ୍ଳେଷଣ କରେ—ପ୍ରକଟିତ ଚରିତ୍ର ତଳେ ଆଉ ଏକ ଭାବର ଧାରା ଯେ ପ୍ରବାହିତ, ତାହା ବ୍ୟାଖ୍ୟା କରିଥାଏ । କେତେକ ପାରିବାରିକ, କେତେକ ମନୁଷ୍ୟେତର ପ୍ରାଣୀଙ୍କ ଜୀବନଯାତ୍ରା ନେଇ ରଚିତ । କେତେକ ରହସ୍ୟ ରୋମାଞ୍ଚମୟ—ନରହତ୍ୟା, ଡକାୟତି, ପୁଲିସ୍ କର୍ମଚାରୀଙ୍କ ସୂକ୍ଷ୍ମବୁଦ୍ଧି ଓ କର୍ମତତ୍ପରତା ନେଇ ରଚିତ ।

ଓଡ଼ିଆ କ୍ଷୁଦ୍ରଗଳ୍ପ ଅନ୍ୟାନ୍ୟ ଭାରତୀୟ ପ୍ରାଦେଶିକ ସାହିତ୍ୟର କ୍ଷୁଦ୍ରଗଳ୍ପ ସହିତ ସମାନ ତାଳ ରଖି ଗଢି ଉଠିଛି । ପ୍ରାୟ ଊନବିଂଶ ଶତାବ୍ଦୀର ଶେଷପାଦରେ ଏହାର ଆରମ୍ଭ, ଫକୀରମୋହନ ଏହାର ପିତା । ତାଙ୍କ ବଳିଷ୍ଠ ଲେଖନୀବଳରେ ଜନ୍ମରୁହିଁ ଏହାର ନାବାଳକୀ କଟିଛି । ସାହିତ୍ୟର ଅନ୍ୟାନ୍ୟ ବିଭାଗ ସହିତ ଏହା ସମାସନ ଲାଭ କରିବାକୁ ସମର୍ଥ ହୋଇଛି । ଆଙ୍ଗିକ ଦିଗପ୍ରତି ସେ ସଦା ସଚେତନ ରହିପାରି ନାହାନ୍ତି । ତାଙ୍କର କେତେକ ଗଳ୍ପ ଉପନ୍ୟାସର ସମପର୍ଯ୍ୟାୟବାଚୀ ହୋଇପାରେ । ଆଙ୍ଗିକ ଅପେକ୍ଷା ଆଖ୍ୟାନ ଉପରେ, ବ୍ୟଞ୍ଜନା ଅପେକ୍ଷା ବର୍ଣ୍ଣନା ଉପରେ ସେ ଅଧିକ ଦୃଷ୍ଟି ଦେଇଛନ୍ତି - କେତୋଟି ମୁହୂର୍ତ୍ତର ଜୀବନ ଅପେକ୍ଷା ସମଗ୍ର ଜୀବନ ସଂକ୍ଷିପ୍ତ ରୂପରେ ଫୁଟି ଉଠିଛି । ଲୋକକଥକ-ମାନଙ୍କଠାରୁ କହିବାର ଭଙ୍ଗୀ ଶିଖି ସେ ଆୟତ୍ତ କରିଛନ୍ତି—ପ୍ରଚଳିତ କ୍ଷୁଦ୍ରଗଳ୍ପର ସ୍ଥୂଳ ଗ୍ରନ୍ଥି ମଧ୍ୟ ଗ୍ରହଣ କରିଛନ୍ତି । ପରମ୍ପରା ଓ ପରିସ୍ଥିତି ଉଭୟକୁ ସେ ଗ୍ରହଣ କରିଛନ୍ତି—ଅତୀତ ଓ ବର୍ତ୍ତମାନ ଉଭୟର ମଣିକାଞ୍ଚନ ସଂଯୋଗ ଘଟାଇଛନ୍ତି । ଊନବିଂଶ ଶତାବ୍ଦୀର ମଧ୍ୟବିତ୍ତ ସମାଜର ଶିକ୍ଷାଭାବ, ଦୁଃଖଦୁର୍ଦ୍ଦଶା, କାର୍ପଣ୍ୟ, ସଙ୍କୀର୍ଣ୍ଣତା, କୁସଂସ୍କାର, ଅନ୍ଧବିଶ୍ୱାସର ଚିତ୍ର ଅଙ୍କନ କରିବାକୁ ସେ ସମର୍ଥ ହୋଇଛନ୍ତି । ତାଙ୍କର ଅଧିକାଂଶ ଗଳ୍ପ କଟକ, ବାଲେଶ୍ୱରର ପଲ୍ଲୀଜୀବନକୁ ନେଇ ରଚିତ ।

ଲକ୍ଷ୍ମୀକାନ୍ତ ମହାପାତ୍ର ଓଡ଼ିଆ କ୍ଷୁଦ୍ରଗଳ୍ପକ୍ଷେତ୍ରକୁ ପ୍ରଶସ୍ତତର କରିଛନ୍ତି । ପୁରାତନ ପଲ୍ଲୀରୁ ନୂତନ ନଗର ଜୀବନ ଉପରେ ସେ ଆଲୋକ ସମ୍ପାତ କରିଛନ୍ତି; ତାଙ୍କ ହାସ୍ୟରସ ଏକ ନୂତନ ଆମଦାନୀ ନ ହେଲେହେଁ, ସ୍ୱାଭାବିକ, ସରଳ ଓ ନିର୍ମଳ । ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ତାଙ୍କ ଗଳ୍ପ ଉଚ୍ଚତର ସ୍ତରକୁ ଗତି କରିପାରିନାହିଁ । ତାଙ୍କ ବୁଢ଼ା ଶଙ୍ଖାରି ଗୋଟିଏ ସଫଳ କୃତି, କିନ୍ତୁ ଏହା ରବୀନ୍ଦ୍ରଙ୍କ କାବୁଲିଓ୍ୱାଲାର ଅନୁରୂପ ।

କାଳିନ୍ଦୀ ଚରଣ ପାଣିଗ୍ରାହୀ ଗଳ୍ପ କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶକ । ଦ୍ୱାଦଶୀ ଓ ସାଗରକୂଳରେ ତାଙ୍କ ଦୃଷ୍ଟିକୋଣ କାବ୍ୟିକ । ପରବର୍ତ୍ତୀ ଯୁଗରେ ସ୍ୱପ୍ନ ଛନ୍ନ ରଙ୍ଗୀନ୍ କୁଜ୍‌ଝଟି ପଥ ଅତିକ୍ରମ କରି ସ୍ୱଚ୍ଛାଲୋକମୟ ବାସ୍ତବତାର ପ୍ରାଙ୍ଗଣରେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କ ଭାଷା ସଂଯତ, କ୍ୱଚିତ୍ ବ୍ୟଙ୍ଗରେ ଶାଣିତ, ହାସ୍ୟୋଜ୍ଜ୍ୱଳ । ତାଙ୍କ 'ମାଂସର ବିଳାପ' ଓଡ଼ିଶାର ଶ୍ରେଷ୍ଠ କ୍ଷୁଦ୍ର ମଧ୍ୟରେ ଅନ୍ୟତମ ।

ଗୋପୀନାଥ ମହାନ୍ତି ଗଳ୍ପରଚନା କ୍ଷେତ୍ରରେ ନୂତନ ପଦକ୍ଷେପ ନେଇଛନ୍ତି—ପଲ୍ଲୀଜୀବନର ବିଶ୍ୱସ୍ତ ଚିତ୍ର ଅଙ୍କନରେ ସେ ସୁନିପୁଣ; ତାଙ୍କ ରଚନାର ସ୍ତରେ ସ୍ତରେ କାବ୍ୟର ଆଭାସ, ନବନବ ଚିତ୍ରର ଯୋଜନା— ପରିଣାମରେ ପହଞ୍ଚିବା ଆଗରୁ ବହୁସ୍ଥାନରେ ମନ ଅଟକେ । ଉପନ୍ୟାସ ପରି ତାଙ୍କ ଗଳ୍ପରେ ବାକ୍‌ପଲ୍ଲବନ ଗୋଟିଏ ଦୋଷ—କାରଣ ଏହା କ୍ଷୁଦ୍ରଗଳ୍ପର ଆଦର୍ଶର ଅନ୍ତରାୟ ।

ଗଳ୍ପକାର ଭାବରେ ଗୋଦାବରୀଶ ମହାପାତ୍ରଙ୍କ ସୃଷ୍ଟି ପ୍ରତ୍ୟକ୍ଷ; ଘଟଣାର ପ୍ରତିକ୍ରିୟା ରେକ୍‌ଟୋକ୍, ଚିତ୍ରଣ ବାସ୍ତବ, ବ୍ୟଙ୍ଗାତ୍ମକ, ଚିର ବିପ୍ଳବୀ ସେ । ଶାଠ୍ୟ ବା ପାପ ସହିତ ତାଙ୍କର ସାଲିସ୍ ନାହିଁ, ପ୍ରଲେପ ଦେଇ ଘଟଣାର ରୁକ୍ଷତାକୁ କେବେ ମୁଲାୟମ୍ କରନ୍ତି ନାହିଁ । କଥାବସ୍ତୁକୁ ଅଳଂକାରରେ ଆଣି ସେ ସ୍ୱଧାରାରେ ପ୍ରବାହିତ କରନ୍ତି । ତାଙ୍କ ଗଳ୍ପରେ ଗୋଟିଏ ଅନାବଶ୍ୟକ ପଂକ୍ତି ପାଇବା ଦୁଷ୍କର, ଶବ୍ଦ ଯୋଜନା ସୁଚିନ୍ତିତ, ଆବେଗ ସ୍ୱତଃସ୍ଫୂର୍ତ୍ତି, ପ୍ରବାହ ସାବଲୀଳ ।

ରାଜକିଶୋର ରାୟ ଏକନିଷ୍ଠ ଗଳ୍ପଲେଖକ ଭାବେ ସୁପରିଚିତ । ତାଙ୍କ ଶୈଳୀ ଆଡ଼ମ୍ବରପୂର୍ଣ୍ଣ, ସଂସ୍କୃତ ଶବ୍ଦମୟ, କଳାତ୍ମକ ସଯତ୍ନ ପ୍ରୟାସ ଓ ପରିମାର୍ଜନାରେ କୃତ୍ରିମ, ବେଳେବେଳେ କ୍ଳିଷ୍ଟ ବୋଧହୁଏ ।

ରାଜକିଶୋର ପଟ୍ଟନାୟକ ପ୍ରଚଳିତ ମାମୁଲି ଘଟଣାକୁ ଅସାଧାରଣ ରୂପ ଦେବାର ଦକ୍ଷତା ଅର୍ଜନ କରିଅଛନ୍ତି । ତାଙ୍କ ରଚନାରୀତି ସରଳ, ସାବଳୀଳ;

ତୁଚ୍ଛାତିତୁଚ୍ଛ ଘଟଣା ଭିତରୁ କବିତ୍ୱ କାଢ଼ନ୍ତି ସେ—ଜୀବନର ଜୟଗାନ ମଧ୍ୟରେ ବେଳେ ବେଳେ ଉଚ୍ଚସ୍ତରର ମାନବିକ ଆବେଦନ ଝଲସି ଉଠେ ।

ଅନନ୍ତ ପ୍ରସାଦ ପଣ୍ଡାଙ୍କ ଅନ୍ତର୍ଦ୍ଦୃଷ୍ଟି ଗଭୀର ନ ହେଲେ ବି ମାନବିକ ଆବେଦନ ଯୋଗୁଁ ତାଙ୍କ ଗଳ୍ପସବୁ ଲୋକପ୍ରିୟ ହୋଇଥାଏ । ଜୀବନନଦୀର କୂଳେ କୂଳେ ସେ ବୁଲୁଥାନ୍ତି—ଗଳ୍ପର ବିଷୟବସ୍ତୁ ସତେ ଯେପରି ଅନାୟାସ ଉପଲ ଆହରଣ; ସନ୍ଧାନକଲେ ତା ମଧ୍ୟରେ ବେଳେବେଳେ ମୋତି ମାଣିକ ମିଳିଯାଏ ।

କିଶୋରୀ ଚରଣ ଦାସ ଗଳ୍ପରାଜ୍ୟରେ ଆସି ପହଞ୍ଚିଲେ ତ ଗଡ଼ ଜୟକଲେ; ତାଙ୍କ ସାଧନାର ଧାରା ନ ଦିଶିଲେ ବି ସିଦ୍ଧି ପ୍ରତ୍ୟକ୍ଷ ।

ସୁରେନ୍ଦ୍ର ମହାନ୍ତି ନଗର ଜୀବନ ଓ ଶିକ୍ଷିତ ସମାଜର ଉନ୍ନତ ଅଧୋଗତିର ବିଶ୍ୱସ୍ତ ଚିତ୍ର ଦେବାରେ ସିଦ୍ଧହସ୍ତ । ତାଙ୍କ ଦୃଷ୍ଟିକୋଣର ଆଧୁନିକତା ଓ ଅଭିନବତ୍ୱ ନାଟକୀୟ ରଚନାରୀତି ପାଠକ ଅନ୍ତରରେ କୌତୂହଳ ସୃଷ୍ଟି କରିବାକୁ ସମର୍ଥ । ଯେପରି ଐତିହାସିକ, ସେହିପରି ସାମାଜିକ ଜୀବନର ସ୍ୱରୂପ ରସାଳ ଓ ବ୍ୟଙ୍ଗାତ୍ମକ ଢଙ୍ଗରେ ପରିବେଷଣ କରି ସେ ଓଡ଼ିଆ ଗଳ୍ପଲେଖକମାନଙ୍କ ମଧ୍ୟରେ ପ୍ରଥମ ସ୍ତରକୁ ଉନ୍ନୀତ ହୋଇ ଅଛନ୍ତି ।

ବାମାଚରଣ ମିତ୍ରଙ୍କ ଦୃଷ୍ଟି ଦାର୍ଶନିକ; ଜୀବନସାଗରରେ ନିମଜ୍ଜିତ ହେବାକୁ ଚାହାନ୍ତି ସେ, ଯଦିବା କ୍ଷୁଦ୍ରଗଳ୍ପରେ ଏଥିଲାଗି ଅବକାଶ ଅଳ୍ପ । ଘଟଣାକୁ ଛୁଅଁି ଛୁଅଁି ପରିଣାମ ପ୍ରତି ପାଠକକୁ ଦଉଡ଼ାଇ ନେଇପାରି ନାହାନ୍ତି ସେ ।

ମହାପାତ୍ର ନୀଳମଣି ସାହୁ କେତୋଟି ଜୀବନ ବାଛି ନେଇ ସେମାନଙ୍କ ଉପରେ ତୀକ୍ଷ୍ଣ ଆଲୋକ ନିକ୍ଷେପ କରନ୍ତି—ଚରିତ୍ରର କୌଣସି ବିଭାବ ତାଙ୍କ ଲେଖନୀର କବଳରୁ ଖସି ଆସିବା ଅସମ୍ଭବ । ତାଙ୍କ ଦର୍ଶନ ପ୍ରତ୍ୟକ୍ଷ, ସର୍ବାଙ୍ଗୀନ, ତୀକ୍ଷ୍ଣ ବ୍ୟଙ୍ଗାତ୍ମକ, ସର୍ବାଙ୍ଗସ୍ପର୍ଶୀ । ଉପନ୍ୟାସ ପାଠର ସମ୍ପୂର୍ଣ୍ଣ ଆସ୍ୱାଦ ତାଙ୍କର କେତେକ ଗଳ୍ପରୁ ମିଳିଥାଏ ।

ଫତୁରାନନ୍ଦଙ୍କ ଦୃଷ୍ଟିକୋଣରେ ସୁଦୃଢ଼ ସ୍ୱାତନ୍ତ୍ର୍ୟ ଅଛି; ଶୈଳୀ ମୌଳିକ; ଘଟଣାପ୍ରବାହକୁ ସେ ସ୍ୱରୁଚିରେ ରୁଚିର ଓ ଚିତ୍ତଗ୍ରାହୀ କରିଥାନ୍ତି; ଶୁଖିଲା କାଠରୁ ରସ ନିଗାଡ଼ିବା ତାଙ୍କର ମାହାତ୍ମ୍ୟ, ଯଦିବା ଏହା ବେଳେ ବେଳେ ସୀମା ଅତିକ୍ରମ କରିଯାଏ ।

ଗଳ୍ପ ରଚନାରେ ଗୋଦାବରୀଶ ମିଶ୍ର, କୃଷ୍ଣପ୍ରସାଦ ବସୁ, କାହ୍ନୁଚରଣ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ହରିଶ୍ଚନ୍ଦ୍ର ବଡ଼ାଲ, ଅଖିଳ ମୋହନ ପଟ୍ଟନାୟକ,

ମନୋଜ ଦାସ ନୂତନ ପଦକ୍ଷେପ ନେଇଛନ୍ତି, ଏ କ୍ଷୁଦ୍ର ପ୍ରବନ୍ଧରେ ସେମାନଙ୍କ ଦାନର ମହତ୍ତ୍ୱ ଆଲୋଚନା କରାଯାଇ ପାରିନାହିଁ ।

ଓଡ଼ିଆରେ କ୍ଷୁଦ୍ରଗଳ୍ପ ରଚନା ପ୍ରୟାସ ୭୦ ବର୍ଷରୁ ଊର୍ଦ୍ଧ୍ୱ ନୁହେଁ । ତୁଳନା କରି ଦେଖିଲେ ସାହିତ୍ୟର ଅନ୍ୟାନ୍ୟ ଦିଗ ଅପେକ୍ଷା ଏ ଦିଗ ବରଂ ସମୃଦ୍ଧତର ମନେହୁଏ । ଆଧୁନିକ ଜୀବନର ଜଟିଳତା ମଧ୍ୟରେ ନାନା ନୂତନ ଚରିତ୍ରର ଆମଦାନୀ ହୋଇଛି । ମାର୍କ୍ସୀୟ, ଫ୍ରୟେଡ଼ୀୟ ଓ ନାନା ମନୋବୈଜ୍ଞାନିକ ଦୃଷ୍ଟି-କୋଣରୁ ଜୀବନର ପରିଖାରେଖ ଚାଲିଛି । ପଲ୍ଲୀ ଓ ନଗରଜୀବନ, କୃଷି ଓ ଶିଳ୍ପସଭ୍ୟତା, ଧର୍ମ ଓ ଧାର୍ମିକତା, କଠୋର ଜୀବନସଂଗ୍ରାମ, ସମାଜ ସଂସ୍କାର-ମୂଳକ ନାନା ପ୍ରୟାସ, ଗ୍ରାମର ନଗରୀକରଣ, କୁଟୀରରୁ ସୌଧ, ଶଗଡ଼ରୁ ଟ୍ରକ୍ ବସ୍ ଓ ରକେଟରେ ଚନ୍ଦ୍ରଲୋକଯାତ୍ରାର ଚିତ୍ର ଗଳ୍ପ ମଧ୍ୟରେ ଦେଖିବାକୁ ମିଳେ । ଜୀବନର ପ୍ରତ୍ୟେକ ବିଭବ ଗୁଡ଼ି ରଖିବାକୁ ଚେଷ୍ଟା କରିଛନ୍ତି ଶିଳ୍ପୀ—କିନ୍ତୁ ଯେପରି ହଜିବାର ନୁହେଁ, ଲଭିବାର ନୁହେଁ, ତଥାପି ମନେହୁଏ—ଏ ପ୍ରଦେଶରେ ଲେଖକର ପ୍ରସ୍ତୁତି ଅଳ୍ପ; ଜୀବନ ଜାଣିବା ଲାଗି କଷ୍ଟ ସହିବାର ପ୍ରବୃତ୍ତି ତାର ନାହିଁ —ଅଧିକାଂଶ ଧାରକରା ଜୀବନ କଳାରେ ମୀନାକରା ହୋଇ ପ୍ରକାଶ ପାଏ । ନିଜ ଆଖିରେ ନ ଦେଖି ଲେଖିବା ଲେଖକ ପକ୍ଷରେ ଏକ ଶାଠ୍ୟ; ଜୀବନଜ୍ଞାନର ଦାରିଦ୍ର୍ୟକୁ କେତେବା ଘୋଡ଼ାଇ ପାରିବ ଭାଷା ? ସାହିତ୍ୟ ବିପୁଳ ଜୀବନକୁ ତାର ନିର୍ଦ୍ଦିଷ୍ଟ ସ୍ତରରେ ସ୍ପର୍ଶ କରିପାରୁ ନାହିଁ । ଶ୍ରମକାତର, ସୁଖଲିପ୍ସୁ, ସହଜ ଯଶ-ଲିପ୍ସୁ ଓଡ଼ିଆ ଲେଖକ; କଳାହାଣ୍ଡିର ଦୁର୍ଭିକ୍ଷ, ବାଲେଶ୍ୱରର ବନ୍ୟା, କଟକର ବାତ୍ୟା, ଗଞ୍ଜାମର ଅତିବୃଷ୍ଟି, ପୁରୀର ମରୁଡ଼ିରେ ହନ୍ତସନ୍ତ ଜୀବନ ଦେଖି କେତେ-ଜଣ ଫୁଟାଇ ପାରିଛନ୍ତି କ୍ଷୁଦ୍ରଗଳ୍ପରେ ?

ବସ୍ତୁତଃ ଜୀବନ ଓ ଜୀବନୀ ଏବେ ବି ଲେଖକର ଚିନ୍ତା ପରିସରର ବାହାରେ ରହିଯାଇଛି । ପଡ଼ରପିନ୍ଧା ଶଅର, କଣ୍ଢିମାଳିଆ ଜୁଆଙ୍ଗ, ଘୁଙ୍ଗୁନାଚୁଆ ଭୂଆଁ, ପେଡ଼ୁଗୁଷୀ ଗଦ୍‌ବା, ମେଣ୍ଢା ବଳି ଦେଉଥିବା କନ୍ଧ, ଭୂତପ୍ରେତ ପୂଜାରୀ ସାନ୍ତାଳ, ପାରିକୁଦ ମାଲୁଦର କେଉଟ, ପୁରୀର ନୋଳିଆ, ହାଟୁଆ, ବାଟୁଆ, ମର୍ଦ୍ଦିଆଳଙ୍କ ଜୀବନଯାତ୍ରା, ଲୋକାଚାର, ଦେବଦେବୀ ପୂଜା, ବିଶ୍ୱାସ ସଂସ୍କାର, ଯାନିଯାତ୍ରା, ବିବାହ, ମୃତାହ କ୍ରିୟା, ଜୀବନର ଅଗଣିତ ସମସ୍ୟା କ୍ଷୁଦ୍ରଗଳ୍ପରେ ପ୍ରତିଫଳିତ ହୋଇପାରି ନାହିଁ । ଓଡ଼ିଆ ଲେଖକ ସୌଖୀନ, ତନ୍ଦ୍ରାଳସ ! ତାର କିଛି ଜୀବନ ଦୀକ୍ଷା ଅଛି, କିନ୍ତୁ ଜୀବନ ଦୀକ୍ଷା ନାହିଁ । ଫଳରେ ସ୍ୱାଧୀନତା ପରେ ସମାଜସଂସ୍କାର ହେଲେ ବି, ଜୀବନବିପ୍ଳବ ଘଟିନାହିଁ । ଅଦ୍ୟାପି ଉତ୍କଳୀୟ ସମାଜ ଶକ୍ତିଶାଳୀ ଲେଖନୀ ଅପେକ୍ଷାରେ ରହିଛି—ଯେ ପାହାଡ଼ୀ ପଲ୍ଲୀରୁ ମେହେନ୍ତରର ଓ ସବହରା ବସ୍ତି ପର୍ଯ୍ୟନ୍ତ ଅଗ୍ନିବୀଣା ବଜାଇ ପାରିବ—ଗାଇ ପାରିବ ଯଥାର୍ଥ ଜୀବନ ସଙ୍ଗୀତ, ଦୁଇକୋଟି ଜୀବନର ଐକ୍ୟ ତାନରେ ।

—*—

## ସାରଳା ମହାଭାରତରେ ଉତ୍କଳର ଚିତ୍ର

ଇଟାଲୀୟ ସାହିତ୍ୟରେ ଯେପରି ଦାନ୍ତେ, ଇଂରାଜୀ ସାହିତ୍ୟରେ ଯେପରି ସେକ୍ସପିଅର୍, ଜର୍ମାନ୍ ସାହିତ୍ୟରେ ଯେପରି ଗେଟେ, ଓଡ଼ିଆ ସାହିତ୍ୟରେ ସେହି-ପରି ସାରଳା ଦାସ ଉଚ୍ଚସ୍ଥାନର ଅଧିକାରୀ; ସାରଳା ଦାସଙ୍କୁ ବାଦ୍ ଦେଇ ଉତ୍କଳୀୟ ସଂସ୍କୃତି ଓ ସାହିତ୍ୟର କଳ୍ପନା କରିହୁଏ ନାହିଁ । ଉତ୍ତୁଙ୍ଗ କଳ୍ପନା; ଜୁଆର ପ୍ରବାହ ପରି ତାଙ୍କର ଭାଷା; ଉତ୍କୃଷ୍ଟ ତାଙ୍କର ଲୋକସମାଜର ରୂପାୟନ ଓ ଚରିତ୍ରଚିତ୍ରଣ । ଉଭୟ ଅନ୍ତର୍ଲୋକ ଓ ବହିର୍ଲୋକ ଚିତ୍ରଣରେ ସେ ସିଦ୍ଧିଲାଭ କରିଥିଲେ ।

ତାଙ୍କ କବିତାର ବିଷୟ ସର୍ବଭାରତୀୟ ହେଲେ ହେଁ ସେ ପାଦ ତଳର ମାଟି ଓ ମୁଣ୍ଡ ଉପରର ଆକାଶକୁ ଭୁଲିପାରି ନ ଥିଲେ । ସଂସ୍କୃତପ୍ରଧାନ ଯୁଗରେ ମହାନ୍ ସ୍ରଷ୍ଟାଭାବେ ସେ ଓଡ଼ିଆ ସାହିତ୍ୟକୁ ପ୍ରତିଷ୍ଠିତ କରିଥିଲେ, ଏକ ଅନାମ-ଧେୟ ପ୍ରାନ୍ତୀୟ ଭାଷାକୁ ଉଚ୍ଚ ଭାବ ପ୍ରକାଶର ମାଧ୍ୟମ କରି ପାରିଥିଲେ; ଉତ୍କଳୀୟ ପୂର୍ବ ସୂରିମାନଙ୍କଠାରୁ ସେ ଏ ଦିଗରେ କୌଣସି ପ୍ରେରଣା ପାଇ ନାହାନ୍ତି । ବାସ୍ତବରେ ସେ ଏକ ବିସ୍ମୟକର ଏକକ, ଜଗତର ଅଧିକାଂଶ ମହତ୍ ପ୍ରତିଭା ପରି ବୃନ୍ତହୀନ; ତଥାପି ତାଙ୍କର ବିକାଶ ବିପୁଳ, କାବ୍ୟର ରୂପ କମନୀୟ ଓ ବଳିଷ୍ଠ ।

କିମ୍ବଦନ୍ତୀ କହେ ଯେ ସାରଳାଙ୍କ କୃପାରୁ ଦାସେ କବିତ୍ୱ ଶକ୍ତି ଲାଭ କରି-ଥିଲେ । ସାରଳା ହୋଇଥିଲେ ତାଙ୍କ ଲେଖନୀରେ ଶାରଦା ବା ସରସ୍ୱତୀ—ଶକ୍ତି ଓ ବିଦ୍ୟାର ଏକ ସମନ୍ୱୟ ଦେବୀ । ଯେପରି ଦେବୀ ସାରଳା ନଗଣ୍ୟ ସିଦ୍ଧେଶ୍ୱର ପରିଡ଼ାକୁ ସ୍ୱନାମଧନ୍ୟ କବି କରିଥିଲେ, ସେହିପରି କବି ସାରଳା ଦାସ ଅନାମ-ଧେୟା ଦେବୀଙ୍କୁ ବିଦ୍ୟାଦେବୀ ଓ ବାଗ୍‌ଦେବୀରୂପେ ପ୍ରତିଷ୍ଠିତ କରିଥିଲେ । ସେହି ପରମ୍ପରାର ଦାୟାଦରୂପେ ପାଲା ଓ ପାଟୁଆ ଯାତ୍ରାର ଗାୟକମାନେ କଣ୍ଠରେ ବସି ପଦ ସୁମରଣା କରେଇ ଦେବା ଲାଗି ଏହି ଦେବୀଙ୍କୁ ଆବାହନ କରିଥାନ୍ତି । କାବ୍ୟ-କବିତାରେ ଆଧୁନିକ ଯୁଗସ୍ରଷ୍ଟା ରାଧାନାଥ ସେହି ପରମ୍ପରାର ଅନୁକରଣରେ ଲେଖିଛନ୍ତି—"ପଙ୍କଜବାସିନୀ ଦେବୀ ଉତ୍କଳଭାରତୀ, ସାରଳେ"; ଦେବୀ ସିଂହ-ବାହିନୀ ହୋଇଥିବା ସତ୍ତ୍ୱେ ହୋଇଥିଲେ ବୀଣାଧାରିଣୀ—"କହ ମା ସାରଳେ, କାହିଁକି ଉତ୍କଳେ ଆଉ ତୋ ବୀଣା ନ ବାଜେ ?"

ସାରଳା ଦାସ ଉତ୍କଳରେ ଜଗନ୍ନାଥପରମ୍ପରାର ଏକ ମହାନ୍ ପ୍ରତିଷ୍ଠାତା । ବିଶ୍ୱାବସୁ-ପୂଜିତ ନୀଳମାଧବ ଦାରୁବ୍ରହ୍ମ ପୁଣି ବୌଦ୍ଧରୂପୀ ଜଗନ୍ନାଥ-

ଭାବେ ନୀଳାଚଳରେ ପୂଜା ପାଇବା ଘଟଣା ସାରଳା ମହାଭାରତରେ ବସ୍ତୁତଃତର-ଭାବେ ବର୍ଣ୍ଣିତ ହୋଇଅଛି । ମହାଭାରତ ଜଗନ୍ନାଥସଂସ୍କୃତିର ବାହକ ଓ ଧାରକ । ଉଦ୍ଧୃତ ବର୍ଣ୍ଣନାରେ ଜଗନ୍ନାଥଙ୍କ ପ୍ରତି ଦାସଙ୍କ ମନୋଭାବ ସ୍ପଷ୍ଟତର ହୋଇଅଛି—

"ପୀତ କୁଙ୍କୁମ ବରଣ ସେଇ ବ୍ରହ୍ମା ମୂର୍ତ୍ତି
ଡାହାଣେ ଶୁକ୍ଳ ବର୍ଣ୍ଣ ମହାଦେବ ଜ୍ୟୋତି
ରୂପରେ ତ ନାରାୟଣ ବର୍ଣ୍ଣ ଅଟେ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ଦେବ ମେଳା,
ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନି ରୂପ
ବଉଦ୍ଧ ରୂପରେ ହେଲେ ଏମନ୍ତ ସ୍ୱରୂପ ।"
"ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି ।"
"ମହୋଦଧି ତଟେ ବଡ଼ ଦେଉଳରେ ବସି
ଦରିଦ୍ରମାନଙ୍କ ଦୁଃଖ ଦେଉଅଛ ଧ୍ୱଂସି
ବଉଦ୍ଧ ରୂପରେ କଳି ଯୁଗେ ଅବତାର
ହୋଇଣ ପାପୀ ଜନଙ୍କୁ କରୁଛ ଉଦ୍ଧାର ।"

ସାରଳା ଦାସ ଉତ୍କଳର ବହୁ ପ୍ରସିଦ୍ଧ ସ୍ଥାନ, ବୈତରଣୀ, ପ୍ରାଚୀ, ଚନ୍ଦ୍ରଭାଗା, ଚିତ୍ରୋତ୍ପଳା ପ୍ରଭୃତି ନଦୀ, ଶ୍ରୀକ୍ଷେତ୍ର, ଏକାମ୍ର, ଯାଜପୁର, ଝଙ୍କଡ଼ ଓ କୋଣାର୍କ ପ୍ରଭୃତି ତୀର୍ଥମାନଙ୍କର ବର୍ଣ୍ଣନା କରିଛନ୍ତି; ଯୁଧିଷ୍ଠିର ବୃଦ୍ଧ ବୟସରେ ଯାଜପୁରର ହରିସାହୁଙ୍କ କନ୍ୟାକୁ ବିବାହ କରିଛନ୍ତି । ଅସଙ୍ଗତ ବୋଧ ହେଲେ ହେଁ ଉତ୍କଳୀୟତାର ମୋହରେ ସାରଳା ଦାସ ଏହା କରିଛନ୍ତି ।

ସାରଳା ମହାଭାରତ ବ୍ୟାସକୃତ ମହାଭାରତର ଅନୁବାଦ ନୁହେଁ; କବି ସ୍ୱ-ଗ୍ରନ୍ଥରେ ବହୁ ନୂତନ ବିଷୟର ଅବତାରଣା କରିଛନ୍ତି; ତାଙ୍କ ପରିବେଷଣଶୈଳୀ ଅପୂର୍ବ ଓ ଅନବଦ୍ୟ, ସମସାମୟିକ ସମାଜର ଚିତ୍ର ଦେବାରେ ସେ ସିଦ୍ଧହସ୍ତ । ଉତ୍କଳ ସମ୍ରାଟ୍ କପିଳେନ୍ଦ୍ରଦେବଙ୍କର ଐତିହାସିକ ଜୟଯାତ୍ରାର ସମ୍ପୂର୍ଣ୍ଣ ଉପଯୋଗ ସେ ସ୍ୱମହାଭାରତରେ କରିଛନ୍ତି । ଗଜପତିଙ୍କ ବିଜିତ ଚନ୍ଦ୍ରଗିରି, ଉଦେଗିରି, କୁଣ୍ଡାବେଢ଼ ପ୍ରଭୃତି ପାଣ୍ଡବଙ୍କ ଦିଗ୍‌ବିଜୟର ରାଜ୍ୟରୂପେ ବର୍ଣ୍ଣନା କରିଛନ୍ତି । ଏହିପରି ସାରଳା ମହାଭାରତ ଖଣ୍ଡିଏ ମୌଳିକ ଗ୍ରନ୍ଥରେ ପରିଣତ ହୋଇଅଛି ।

ସାରଳା ମହାଭାରତ ଢଗଢ଼ମାଳିର ଏକ ଭଣ୍ଡାର; କବିଙ୍କ ଉକ୍ତି କାଳ-କ୍ରମେ ପ୍ରବାଦ ପ୍ରବଚନରେ ପରିଣତ ହୋଇଅଛି । "ଗାନ୍ଧାରୀଙ୍କୁ ବର ନାହିଁ, ଧୃତରାଷ୍ଟ୍ରଙ୍କୁ କନ୍ୟା ନାହିଁ ।" ଲୋକ ପ୍ରଚଳିତ ଋଢ଼ି ଅନୁସାରେ ଗାନ୍ଧାରୀ ଗୋଟିଏ

ସାହାଡ଼ା ଗଛକୁ ବିଭା କରିଥିଲେ । ବିବାହ ପରେ ସାହାଡ଼ା ଗଛଟି ମରିଯାଇଥିଲା । ଉଆଁସୀ କନ୍ୟା ଗାନ୍ଧାରୀ ବିଧବା ହୋଇ ତାପରେ ଧୃତରାଷ୍ଟ୍ରଙ୍କୁ ବିଭା ହୋଇଥିଲେ; ବରକୁ କନ୍ୟା, କନ୍ୟାକୁ ବର ନ ମିଳିଲେ, ପୁଣି ଏହିଭଳି ବରକନ୍ୟାଙ୍କର ବିବାହ ହେଲେ ଏଇ ଦୃଷ୍ଟାନ୍ତ ଦିଆଯାଇଥାଏ । ଭୀମଙ୍କୁ ଦୁର୍ଯ୍ୟୋଧନ 'ପବନ ପୁତ୍ର' କହି ଅପମାନ ଦେଲାବେଳେ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ଭୀମ ଦୁର୍ଯ୍ୟୋଧନଙ୍କୁ 'ଗେ ଲକ ପୁତ୍ର' (ସାହାଡ଼ା ଗଛର ପୁଅ) କହି ପ୍ରତିହିଂସା ନେଇଥିଲେ ।

"ପ୍ରଥମ ଥର ଭୀମ ହାରେ" । ଶିଶୁ ଭୀମଙ୍କ ଅଙ୍ଗୁଳି ଆଘାତରେ ଶତଶୃଙ୍ଗ ପର୍ବତର ଏକ ଶୃଙ୍ଗ ଭାଙ୍ଗିଯାଇଥିଲା; ପର୍ବତ କ୍ରୋଧରେ ଭୀମଙ୍କୁ ଅଭିଶାପ ଦେଇ-ଥିଲେ – ତୁ ପ୍ରଥମବାର ଯୁଦ୍ଧରେ ହାରିବୁ; କିନ୍ତୁ ଶତଶୃଙ୍ଗ ସ୍ମରଣ ମାତ୍ରେ ଦେହରେ ଶତସିଂହର ବଳ ଆସିବ । କାହାର ପରାଜୟ ହେଲେ ତାକୁ ଆଶ୍ୱାସନା ଦେବା ଲାଗି ଏହି ଉକ୍ତିର ପ୍ରୟୋଗ ହୋଇଥାଏ ।

ଭଗବାନ୍ ଗଧ ପାଦ ଧରିବା—ଜରାସନ୍ଧ ବଧ ପୂର୍ବରୁ ଦ୍ୱାରର ଜଗୁଆଳୀ ଗଧର ବୋବାଳି ବନ୍ଦ କରିବା ଲାଗି ଭଗବାନ୍‌ଙ୍କୁ ଗଧର ପାଦ ଧରିବାକୁ ପଡ଼ିଥିଲା । କାର୍ଯ୍ୟୋଦ୍ଧାର ଉଦ୍ଦେଶ୍ୟରେ ନିମ୍ନ ବ୍ୟକ୍ତିଙ୍କଠାରେ ଅନୁଗ୍ରହପ୍ରାର୍ଥୀ ହେଲେ ଏହି ଉକ୍ତିର ପ୍ରୟୋଗ ହୁଏ—

"ଗୋବିନ୍ଦ ବୋଇଲେ ଏଥେ ଏହିପରି ଅଛୁ
ଅସମୟ କାଳ ଏଥେ ଦୋଷ ନାହିଁ କିଛୁ ।"

ସ୍ୱଚକ୍ଷୁରେ ନ ଦେଖି ଅକାରଣେ ଭୟ କରିବାକୁ "କୋକୁଆ ଭୟ" କହନ୍ତି । ଜନସାଧାରଣ କପର ଶୁଣା କଥାରେ ମାତି ଉଠି ଅଘଟଣା ଘଟାନ୍ତି, ଶେଷରେ ଆତ୍ମଧ୍ୱଂସର କାରଣ ହୋଇଥାନ୍ତି, ସାରଳା ଦାସ କୋକୁଆର କଳ୍ପନା କରି ଶେଷରେ ଗର୍ବୋନ୍ମତ୍ତ ଯଦୁବଂଶର ଧ୍ୱଂସ ଘଟାଇଛନ୍ତି ।

"ଗଙ୍ଗା କହିଲେ ଥିବ, ଗାଙ୍ଗୀ କହିଲେ ଯିବ"—ଗଙ୍ଗା ଓ ଶାନ୍ତନୁଙ୍କ ଦାମ୍ପତ୍ୟଜୀବନକୁ ଉପଲକ୍ଷ୍ୟ କରି ଏଇ ଢଗ ରଚିତ; ସ୍ୱାମୀ ସ୍ତ୍ରୀ ସୋହାଗୀ ହୋଇଥିବ, ଏଥିରେ ବ୍ୟତିକ୍ରମ କଲେ ସ୍ତ୍ରୀ କ୍ରୋଧରେ ତ୍ୟାଗ କରିବ—ଏଇ ଅଶୋଭନୀୟ ଭାବ ଢଗରେ ବ୍ୟକ୍ତ ।

"ଛିମିଟି ଖେଳରୁ ମହାଭାରତ"—କୁରୁ ପାଣ୍ଡବଙ୍କ ମଧ୍ୟରେ ଛିମିଟି ଖେଳରୁ ରାଗରୁଷା ଉପୁଜି ଶେଷରେ ମହାଭାରତ ଯୁଦ୍ଧ ଭଳି ବଂଶ ଓ ଦେଶ ଧ୍ୱଂସକାରୀ ଯୁଦ୍ଧ ସଂଘଟିତ ହୋଇଥିଲା । ସାମାନ୍ୟ କଳିକଜିଆରୁ ବଡ଼ଧରଣର ମାଡ଼ପିଟ୍ ଘଟିଲେ ଏହି ଉକ୍ତିର ପ୍ରୟୋଗ କରାଯାଏ ।

'କର୍ଣ୍ଣ ମଲେ ପାଞ୍ଚ, ଅର୍ଜୁନ ମଲେ ପାଞ୍ଚ'—କର୍ଣ୍ଣ କିମ୍ବା ଅର୍ଜୁନ ମଲେ ପାଣ୍ଡବଙ୍କ ସଂଖ୍ୟା ଯେଉଁ ପାଞ୍ଚକୁ ସେଇ ପାଞ୍ଚ । ଲାଭ କ୍ଷତି ଉଭୟ ସମାନ ହେଉଥିବା ଭାବକୁ ଲକ୍ଷ୍ୟ କରି ଏହି ଉକ୍ତିର ପ୍ରୟୋଗ କରାଯାଏ ।

ସାରଳା ମହାଭାରତ ଓଡ଼ିଆ ଲୋକକାହାଣୀର ଭଣ୍ଡାର; ଲୋକରେ ପ୍ରଚଳିତ କାହାଣୀଗୁଡ଼ିକୁ ଦାସେ ବିଭିନ୍ନ ସ୍ଥଳେ ଦୃଷ୍ଟାନ୍ତରୂପେ ପ୍ରୟୋଗ କରିଛନ୍ତି—

(କ) ବରଦାୟକ ବ୍ରାହ୍ମଣ କଥା—

ଶିଶୁପାଳ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଶ୍ରୀକୃଷ୍ଣଙ୍କୁ ନିନ୍ଦା କରିବା ଛଳରେ ଏହି ଗଳ୍ପଟି କହିଥିଲା । "ମୁଁ ଶୂନ୍ୟ ପବନ ଆହାରରେ ବଞ୍ଚେ" କହି ବାବାଜୀ ଲୁଚି ଲୁଚି ଅତିଥି ଗୃହରେ ଅନ୍ନଗ୍ରାସ କରିବା ଓ ଶେଷରେ ଧରାପଡ଼ି ମୃଧା ମୁଖରେ ପଡ଼ିବା ଘଟଣା ଏଥିରେ ବର୍ଣ୍ଣିତ ।

(ଖ) ଶଶକ, ଶୃଗାଳ ଓ ସିଂହ ଗଳ୍ପ—

କୁରୁ ସଭାରେ ଭଗବାନଙ୍କ ମହିମା କୀର୍ତ୍ତନ ଲାଗି ଦ୍ରୌପଦୀଙ୍କ ମୁହଁରେ ଦାସେ ଏହା କୁହାଇଛନ୍ତି । ଗୋଟିଏ ଶଶକ ସିଂହ ମୁହଁରୁ ପଳାଇ ଯାଇ ବିଲୁଆ ଗାତରେ ପଶିବା, ବିଲୁଆ ତାକୁ ଖାଇବାକୁ ଗଲାବେଳେ ପଶୁମାନେ ତୁମକୁ ବଣର ରଜା କରିବା ଲାଗି ମୋତେ ପଠାଇଛନ୍ତି ବୋଲି କହିବା, ବିଲୁଆ ଗାତରୁ ବାହାରିବା ବେଳେ ସିଂହ ମୁହଁରେ ପଡ଼ିବା, ଏଥିରେ ବର୍ଣ୍ଣିତ ।

(ଗ) ସିଂହ, ଶାର୍ଦ୍ଦୁଳ ଓ ନକୁଳ ଗଳ୍ପ—

କୂଟ ବୁଦ୍ଧିରେ ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ ସମ୍ପତ୍ତି ଓ ରାଜ୍ୟାଧିକାରରୁ ବଞ୍ଚିତ କରିବାର ସହଜ ସୂତ୍ର ଆବିଷ୍କାର କରି ଏହି ଗଳ୍ପ ଛଳରେ କହିଅଛି । ଶୃଗାଳ ବୁଦ୍ଧି ବଳରେ ସିଂହ, ବ୍ୟାଘ୍ରାଦି ଜନ୍ତୁଙ୍କୁ ବଞ୍ଚିତ କରି ଏକାକୀ ମୃଗମାଂସ ଭକ୍ଷଣ କରିଥିଲା ।

(ଘ) ତୂଳାମୁହାଁ କାଙ୍କ, ତୁଳସୀ ବଣ ବାଘ—

ଭଣ୍ଡଧାର୍ମିକତାର ଭୟାବହ ପରିଣାମ ଏହି ଗଳ୍ପମାନଙ୍କରେ ବର୍ଣ୍ଣିତ ହୋଇଅଛି । ପ୍ରାଣୀନାଶ ଭୟରେ ମୁହଁରେ ତୂଳା ଦେଇ ଜଳପାନ କଲେ ବକ ଧାର୍ମିକ ହୁଏ ନାହିଁ; ସେହିପରି ତୁଳସୀ ବଣରେ ବାସ କଲେ ମଧ୍ୟ ବ୍ୟାଘ୍ରର ହିଂସ୍ର ପ୍ରକୃତି ବଦଳେ ନାହିଁ; ବାହାରୁ ଯେତେ ଧର୍ମଭେକ ପିନ୍ଧିଲେ ବା ଋଷି ଆଚରଣ ଦେଖାଇଲେ ମଧ୍ୟ ଅନ୍ତରର ଗଭୀର ପରିଚୟ ନ ପାଇବା ପର୍ଯ୍ୟନ୍ତ ତଥାକଥିତ ସନ୍ନ୍ୟାସୀଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ ।

ଶୁଭ ଯୋଗ ଲଗ୍ନ ଓ ଶକୁନ ଉପରେ ଅଦ୍ୟାପି ଉତ୍କଳୀୟ ଲୋକସାଧାରଣଙ୍କର ବିଶ୍ୱାସ ଅବିଚଳିତ ରହିଅଛି । ପୁରୁଷମାନେ ବାମରେ ଶୃଗାଳ, ଡାହାଣରେ ନକୁଳ ଦେଖିବା, ପୂର୍ଣ୍ଣକୁମ୍ଭ ଦେଖି ଓ ଦଧି ମାଛ ଖାଇ ଅନୁକୂଳ କରିଯିବା ଶିକ୍ଷିତମାନଙ୍କ ମଧ୍ୟରେ ମଧ୍ୟ ଏକ ପ୍ରଥାରେ ପରିଣତ ହୋଇଅଛି । ସାରଳା ଦାସ ନିମ୍ନଭାବେ ଶୁଭ ଶକୁନର ସୂଚନା ଦେଇଛନ୍ତି—

ଏମନ୍ତକାଳେ ଉତ୍ତର ଦିଗେ ହସ୍ତୀ ଛିଙ୍କି
ଶୁଭେ ନାରୀ ଡାକ ଦଧିମଙ୍ଗଳ ତହିଁକି
ଶ୍ରୀସ୍ତ୍ରୀ ନାମେ ବିଖ୍ୟାତ ଏକ ଗୋପାଳୁଣୀ
ସମ୍ମୁଖରେ ଡାକିଲା ଆସି ଦଧିଭାଣ୍ଡ ଘେନି ।
ଶଙ୍ଖଚିଲ ଡାକଇଏ ପଶ୍ଚିମ ମୂରତ
ଭଦଭଦଳିଆ ପକ୍ଷୀ ରମ୍ଭାବୃକ୍ଷେ ସ୍ଥିତ ।

ଓଡ଼ିଶାର ବହୁ ସାମାଜିକ ଚଳଣି ସାରଳା ମହାଭାରତରେ ରୂପାୟିତ ହୋଇଅଛି । ପଞ୍ଚୁଆତି, ଷଠୀ, ବାରଯାତ୍ରା, ଏକୋଇଶା ଆଦି ଜନ୍ମସଂସ୍କାର, ଥାଳୀରେ ଅକ୍ଷତ, ଗୁବାକ ସହିତ ସମ୍ଭ୍ରାନ୍ତମାନଙ୍କ ନିକଟକୁ ଚିଟାଉ ପ୍ରେରଣ, ପଞ୍ଚୁଗ୍ରାସୀ, ବନ୍ଦାପନା, କଉଡ଼ି ଖେଳ, ସାତମଙ୍ଗଳା, ଯୌତୁକ ସହ କନ୍ୟା ବିଦାୟ, ଭୋଜନରେ ଠା-ପିଢ଼ାର ବ୍ୟବସ୍ଥା, ଶାକର, ଆମ୍ବିଳ, ମଧୁରୁଚି, କାଞ୍ଜି ଓ ଭୋଜନ ପରେ କର୍ପୂର ବିଡ଼ିଆରେ ଅତିଥି ସତ୍କାର ଆଦିର ସବିଶେଷ ବର୍ଣ୍ଣନା ହୋଇଅଛି । ସାରଳା ମହାଭାରତ ଉତ୍କଳୀୟ ରୀତି ନୀତି ଓ ଆଚାର ଆଚରଣର ଏକ କୋଷଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବନାହିଁ ।

—✱—

## ଓଡ଼ିଆ ଲୋକ-ସଂସ୍କୃତି ଓ ବଉଳା ଗାଈ ଗୀତ

କଥାରେ ଅଛି, "ମାନିଲେ ଦେଅଁ, ନ ମାନିଲେ ପଥର।" ଲୋକରେ ଲୋକସାହିତ୍ୟର ଆଉ ମର୍ଯ୍ୟାଦା ନାହିଁ। ଲୋକେ ସ୍ୱରଚିତ ମୌଖିକ ଗୀତ ଗାଇବାକୁ ଏବେ ସଂକୋଚ ବୋଧ କରୁଛନ୍ତି। ଆଦିବାସୀ ଅଞ୍ଚଳରୁ ଲୋକ-ନୃତ୍ୟ ଲୋପ ପାଇ ଆସୁଛି। ସତେ ଯେପରି ଗୀତ ଗାଇବା, ନୃତ୍ୟ କରିବା ଅସଭ୍ୟତା। ସେଦିନ କେଉଁଝରର ଭୂୟାଁପୀଢ଼ର ଜଣେ ଅର୍ଦ୍ଧଶିକ୍ଷିତ ଯୁବକ କହିଲା—ଆମ ବୋହୂ ଭୂଆସୁଣୀ କାହିଁକି ଦାଣ୍ଡରେ ନାଚିବେ—ଆମର କଣ ମାନମର୍ଯ୍ୟାଦା ନାହିଁ? ଲୋକେ ସଭ୍ୟତା-ସଚେତନ ହେଉଛନ୍ତି, ନିଜର ସଂସ୍କୃତିକୁ ଭୁଲି ଯାଉଛନ୍ତି। ବହୁ କୁସଂସ୍କାର ସଙ୍ଗେ ସୁନ୍ଦର, ସରସ ପଦାବଳୀ, ରୋମାଞ୍ଚକର ନୃତ୍ୟ, ଚମତ୍କାର କିମ୍ବଦନ୍ତୀ, କଥା ଅବଲୁପ୍ତ ହୋଇଯାଉଛି। ମୌଖିକ-ସାହିତ୍ୟ ଯୁଗ ଯୁଗ ଧରି ଅଗଣିତ ହୃଦୟକୁ ମନ୍ତ୍ରମୁଗ୍ଧ କରି ରଖିଥିଲା। ଏବେ ସେଦିନ ଆଉ ନାହିଁ, ଜୀବନର ଧାରା ବଦଳି ଯାଇଛି; ନାଚିବା ଗାଇବାର ଅବସର ଆଉ ନାହିଁ। ଲୋକକଥା ଓ ଗୀତରେ ଲୋକଙ୍କ ସଂଗ୍ରାମ—ସଂଘର୍ଷର ରୂପ ନାହିଁ, ଏହା ବର୍ତ୍ତମାନ ଜୀବନରୁ ଖାପ୍‌ଛଡ଼ା। ଲୋକ-ଜୀବନ କାବ୍ୟ, ସଙ୍ଗୀତ, ନାଟ୍ୟ, ନୃତ୍ୟର ସରସତା ଅଭାବରୁ କ୍ରମେ ଦୁର୍ବିସହ ହୋଇ ପଡ଼ୁଛି। ଶ୍ରେଣିକ ମାଲିକର ଦୃଷ୍ଟି ନାହିଁ। ଜୀବନ ସୁସ୍ଥ, ସରସ, ସୁନ୍ଦର ନ ହେଲେ ଉତ୍ପାଦନବୃଦ୍ଧି ସମ୍ଭବ ହେବ କିପରି?

ଲୋକ-ଜୀବନରୁ ଲୋକ-ସାହିତ୍ୟ ବିଚ୍ଛିନ୍ନ; ଏଣେ ଶିକ୍ଷିତ ଲୋକମାନେ ମଧ୍ୟ ଏହାକୁ ଅପାଙ୍‌କ୍ତେୟ କରି ରଖିଛନ୍ତି। ଏହାର ସଂଗ୍ରହ, ସଂରକ୍ଷଣ ଓ ଗବେଷଣା ଲାଗି ଉତ୍କଳବିଶ୍ୱବିଦ୍ୟାଳୟରେ ସ୍ୱତନ୍ତ୍ର ବିଭାଗ ଉନ୍ମୋଚିତ ହୋଇ-ନାହିଁ। ଓଡ଼ିଶାର ଶିକ୍ଷିତ ବ୍ୟକ୍ତିମାନେ ଏ ପର୍ଯ୍ୟନ୍ତ ଏହାର ଉପାଦେୟତା ହୃଦୟଙ୍ଗମ କରି ନାହାନ୍ତି। ଫଳରେ ମାତୃଭାଷାର ଭିତ୍ତି ସୁଦୃଢ଼ ହେଉନାହିଁ।

ଲୋକ-ସାହିତ୍ୟ କେତେ ସଂଗୃହୀତ ହେଲା ବା ହେବାକୁ ବାକୀ ରହିଲା, ଏଥିଲାଗି କେହି ଚିନ୍ତିତ ନୁହେଁ ବା ଜାଣିବା ଲାଗି କେହିବି ଆଗ୍ରହୀ ହୋଇନାହିଁ। ପଲ୍ଲୀ ଓ ନଗର ଉଭୟ କ୍ଷେତ୍ରରୁ ବିତାଡ଼ିତ ହୋଇ ଲୋକସାହିତ୍ୟ ଏବେ କାନ୍ତିର ଦୁର୍ଦ୍ଦଶା ଲାଭ କରିଅଛି। ପ୍ରତିକୂଳ ପରିସ୍ଥିତି ସହିତ କେତେକାଳ ବା ସଂଗ୍ରାମ କରିହେବ? କୌଣସି କ୍ଷେତ୍ରରୁ ସହାନୁଭୂତି ନ ପାଇ ଲୋକ-ଗୀତ ଓ କାହାଣୀ ସଂଗ୍ରହକାର୍ଯ୍ୟ ପ୍ରାୟ ବନ୍ଦ ହୋଇ ଯାଇଅଛି। ଜଣେ ଦି'ଜଣ ଲୋକଙ୍କ ବ୍ୟକ୍ତିଗତ

ସହରରେ ସାମାନ୍ୟ ଅବସରରେ ବିପୁଳ ସଂସ୍କୃତିର ପୁନରୁଦ୍ଧାର କାର୍ଯ୍ୟ କେତେ ବା ହୋଇ ପାରିବ ?

ମୋର (ଲେଖକ) 'ପଲ୍ଲୀଗୀତି ସଞ୍ଚୟନ' ୧ମ ଓ ୨ୟ ଭାଗ, ଚକ୍ରଧର ମହାପାତ୍ରଙ୍କ 'ଉତ୍କଳ ଗାଉଁଲି ଗୀତ' ଦେଖି ଧାରଣା ଜନ୍ମିଛି ଯେ ପଲ୍ଲୀ ଗୀତି ସଂଗ୍ରହ କାର୍ଯ୍ୟ ଶେଷ ହୋଇଅଛି । କଥା ଅଛି, "ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତାହାର ବେଭାର ।" ଓଡ଼ିଶା ଓ ମେଦିନୀପୁର, ସିଂହଭୂମ, ମୟୂରଭଞ୍ଜ ପ୍ରଭୃତି ଓଡ଼ିଶାର ଉପାନ୍ତ ଅଞ୍ଚଳ ଭ୍ରମଣ କଲାପରେ ମୋର ଧାରଣା ହୋଇଛି ଯେ ଆମେ ଅତ୍ୟଳ୍ପ ଗୀତ, କାହାଣୀ ମାତ୍ର ସଂଗ୍ରହ କରିଅଛୁଁ । ବହୁ ଗୀତ, କଥା ଓ କିମ୍ବଦନ୍ତୀ ଏବେ ନିତାନ୍ତ ଅବହେଳିତ ଅବସ୍ଥାରେ ଅଛି । ତରୁଣତରୁଣୀମାନେ ବୃଦ୍ଧବୃଦ୍ଧାଙ୍କର ସେହି ଗୀତକୁ ଆଉ ଆଦର କରୁନାହାନ୍ତି । ବୋଲି ଅଭ୍ୟାସ ଅଭାବରୁ ବହୁ ମୂଲ୍ୟବାନ୍ ସାହିତ୍ୟସମ୍ପଦ ବିଲୁପ୍ତ ହୋଇ ଯାଉଅଛି ।

ଭାରତ ସରକାର ଓ ଓଡ଼ିଶା ସରକାର ନୂତନ ସାହିତ୍ୟସୃଷ୍ଟିକୁ ନାନାଭାବେ ଉତ୍ସାହିତ କରି ଆସୁଛନ୍ତି, କରିବା ବିଧେୟ । ଲୋକ-ସାହିତ୍ୟ କେବେ ରାଜା ମହାରାଜାଙ୍କର ପୋଷକତା ଲୋଡ଼ି ନାହିଁ । ଏହା ମନରୁ ଉଠେ, ଲୋକଙ୍କ ହୃଦୟ ଉପରେ ପୁଷ୍ଟ ହୋଇ ବଢ଼ି ଚାଲେ । କିନ୍ତୁ ଶିଳ୍ପଯୁଗରେ ଏହା ଆଉ ଉଠେଇ ପାରୁ ନାହିଁ । ସେଥିଲାଗି ପରିବେଶ ଓ ଅବକାଶ ସୃଷ୍ଟି କରିବା କର୍ତ୍ତବ୍ୟ । ତା ଏବେ ନୋହି ପାରିଲେ, ଯାହା ସୃଷ୍ଟ ହୋଇ ଏଣେ ତେଣେ ବୃଣି ହୋଇ ପଡ଼ିଅଛି, ତାକୁ ସଯତ୍ନେ ସାଇତି ରଖିବା ଆବଶ୍ୟକ । ନୂତନ ସୃଷ୍ଟିକୁ ସାହାଯ୍ୟ ଦେବାଠାରୁ ଏହା ସରଳତର ପନ୍ଥା ।

ଲିଖିତ ଓଡ଼ିଆ ସାହିତ୍ୟ କୌଣସି ଉନ୍ନତ ଦେଶର ବିଦଗ୍ଧ ସାହିତ୍ୟର ସମକକ୍ଷ ହୋଇ ପାରି ନାହିଁ । ଭାରତରେ ହିନ୍ଦୀ, ବଙ୍ଗଳା, ତାମିଲ, ମହାରାଷ୍ଟ୍ରୀ, ଗୁଜୁରାଟୀ ସହିତ ଯେତେବେଳେ ସମଆସନରେ ଆସୀନ ହୋଇ ପାରୁନାହିଁ, ଇଂରାଜୀ, ଫରାସୀ, ରୁଷ୍ ସାହିତ୍ୟ ସହିତ ଏହାକୁ ତୁଳନା କରିବା ବିଡ଼ମ୍ବନା; କିନ୍ତୁ ଓଡ଼ିଆ ଲୋକ-ସାହିତ୍ୟର ସେ ଗୌଣତ୍ୱ ନାହିଁ । ତୁଳନାତ୍ମକ ଆଲୋଚନା କଲେ ବୁଝାଯାଏ ଯେ, ଏହା ଉନ୍ନତ ଦେଶମାନଙ୍କ ଲୋକ-ସାହିତ୍ୟ ସହିତ ସମ ଆସନରେ ବସିବାକୁ ଯୋଗ୍ୟ । ଅନୁବାଦିତ ହେଲେ ଏହା ବିଶ୍ୱ-ସାହିତ୍ୟ ଦରବାରରେ ଅଭିନନ୍ଦିତ ହେବ, ଭାରତ ବାହାରେ ଓଡ଼ିଶା ଓ ଓଡ଼ିଆ ଲୋକଙ୍କ ମର୍ଯ୍ୟାଦା ବୃଦ୍ଧି ଲାଭ କରିବ ।

ଏବେ ଭାରତୀୟ ଐକ୍ୟ ଓ ସାଂସ୍କୃତିକ ସଂହତି ବିଷୟରେ ଆଲୋଚନା ହେଉଛି । ଭାରତୀୟ ସଂସ୍କୃତି ଏକ ଓ ଅଭିନ୍ନ ଏହାର ନଜିର ସ୍ୱରୂପ ବହୁ ଉପାଦାନ ଲୋକ-ସାହିତ୍ୟରେ ପୂରି ରହିଛି । ଜାତି ଭେଦ, ଭାଷା ଭେଦ, ଆଞ୍ଚଳିକତା ଭେଦ

ଏହା ସ୍ୱୀକାର କରିନାହିଁ, ଦୁର୍ଲଙ୍ଘ୍ୟ ଗିରିସଙ୍କଟ, ଦୁସ୍ତର ନଦୀ ଏହା ମାନି ନାହିଁ । ରୂପ-ରୂପାନ୍ତରରେ ଫୁଟିଲେ ବି ଭାରତୀୟ ଆତ୍ମା ଏକ, ଏହାର କିଞ୍ଚିତ୍ ଆଭାସ 'ବଉଳା ଗାଈ' ଗୀତରୁ ମିଳିବ ।

'ବଉଳା ଗାଈ' ଗୀତଟି ଶୁଣିଲେ ମନେ ହୁଏ, ଏହା ଅମର ଗଣ୍ଠି ଧନ, ହୃଦୟର ଏକାନ୍ତ ନିକଟବର୍ତ୍ତୀ । ଶତ ଶତ ବର୍ଷ ହେଲା ଏହା ଆମ ଚକ୍ଷୁକୁ ଅଶ୍ରୁସିକ୍ତ କରୁଛି, ତ୍ୟାଗର ଜ୍ୱଳନ୍ତ ଆଦର୍ଶ ହୋଇ ରହିଛି, କେତେ ଦୁର୍ଦ୍ଦିନ ଦୁର୍ବିପାକରେ ଘୋର ସାଂସ୍କୃତିକ ସଙ୍କଟରେ ଓଡ଼ିଆ ଏହାକୁ ସାଇତି ରଖିଛି । ବିଦ୍ୟାର ବଢ଼ିମାରେ ଭୁଲି ନାହିଁ, ଅଥଚ ଏ ମଧ୍ୟରେ କେତେ କାବ୍ୟ ହଜାଇଛି; ପୋଥିଗତ ବିଦ୍ୟା ସେ, ହୃଦୟଗତ ହୋଇ ନଥିଲା ବୋଲି ।

ଏବେ 'ବଉଳା ଗାଈ' ଗାଥା ଓଡ଼ିଶାର କେତେକ ସ୍ଥାନରେ କିମ୍ବଦନ୍ତୀରେ ପରିଣତ ହୋଇଅଛି । ବଉଳା ଗାଈକୁ ବ୍ୟାଘ୍ର ବିନାଶ କରିବାରୁ ତାର ରକ୍ତ ସ୍ପର୍ଶରେ ଲାଲ୍ ପଥରର ସୃଷ୍ଟି ହେଲା, ଏ କଥା ମୟୂରଭଞ୍ଜର ଲୋକେ ବିଶ୍ୱାସ କରନ୍ତି । ଏବେ ବି ସୁଧାର ଗାଈର ନାମ 'ବଉଳା' ରଖାଯାଏ । ଗାଭୀକି ମାତା କରିବାରେ ବଉଳାର ଦାନ ଅଳ୍ପ ନୁହେଁ । ଯେତେ ନିଜସ୍ୱ ବୋଧ ହେଲେ ବି ବଉଳା ଗାଈ କାହାଣୀ ସର୍ବଭାରତୀୟ ।

ନାଥ ଯୋଗୀମାନେ ଓଡ଼ିଶାର ଗ୍ୱରଣ । ସେମାନଙ୍କ ଅଧିକାଂଶ ଗୀତ ଧର୍ମମୂଳକ ଓ ନୀତିଶିକ୍ଷାମୂଳକ । କୁଳାଙ୍ଗନାମାନଙ୍କ ହୃଦୟ ଶୁଦ୍ଧ କରିବା, ସେମାନଙ୍କୁ ତ୍ୟାଗ ଓ ସଂଯମ ଶିକ୍ଷା ଦେବା ଯୋଗୀଗୀତର ଉଦ୍ଦେଶ୍ୟ । ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ପ୍ରଭୃତି ଗଣକବି, ଲୋକ-ଶିକ୍ଷକ । ସେମାନେ ଓଡ଼ିଶାର ସଂସ୍କୃତିକୁ ପ୍ରଥମେ ଲୋକମୁଖୀ କରିଥିଲେ । ବୁଦ୍ଧଦେବ ଜାତକ ଗଳ୍ପ କହି ଯେପରି ଲୋକସାଧାରଣଙ୍କୁ ଧର୍ମ ପ୍ରତି ଆକୃଷ୍ଟ କରିଥିଲେ, ସାରଳା, ଜଗନ୍ନାଥ, ବଳରାମ ଓଡ଼ିଆରେ ସେହିପରି କରିଥିଲେ । ବଳରାମଙ୍କ 'ବଉଳା ଅଧ୍ୟାୟ' ଏବେ ମଧ୍ୟ ଯୋଗୀମାନେ ଗାଇ ଅହିଂସା, କ୍ଷମା, ଉଦାରତା ଓ ତିତିକ୍ଷାର ମହିମା ପ୍ରଚାର କରୁଛନ୍ତି । ପଶୁ ସ୍ନେହ ବୁଝେ, ସତ୍ୟଧର୍ମ ପାଳନ କରେ । ଅତି ହିଂସ୍ର ପଶୁ ବି ଅହିଂସ୍ର ହୋଇପାରେ, କ୍ଷମା ଦେଇ ଜାଣେ । କ୍ଷୁଧାର ତାଡ଼ନାରେ ସେ ଯେ କୌଣସି ପାପ ଅର୍ଜ୍ଜନ କରିବାକୁ କୁଣ୍ଠିତ ହୁଏ, ସଜ୍ଜନଙ୍କ ପରି ସେ ଭୁଲ କଲେ ଅନୁତାପ କରେ । ଗାଭୀ ମାତା, ମନ୍ଦିରର ପୂଜାର ଯୋଗ୍ୟା । ଏକ ଦିଗରେ ତାର ପୁଅ ପ୍ରତି ନିବିଡ଼ ସ୍ନେହ, ଅନ୍ୟ ଦିଗରେ ଗାଭୀର ସତ୍ୟନିଷ୍ଠା । ସ୍ନେହ ସ୍ୱାର୍ଥପର ହୋଇପାରେ, ସତ୍ୟରେ ସେ କଳଙ୍କ ନାହିଁ । ସ୍ନେହ

ଅପେକ୍ଷା ସତ୍ୟ ବଡ଼, ସେତେବେଳେ ଆତ୍ମଦାନରେ ଏହା ମହତ୍ତମ ସ୍ତରକୁ ଉନ୍ନୀତ ହୁଏ । 'ବଉଳା ଗାଈ' ଗୀତରୁ ଏ ଶିକ୍ଷା ମିଳେ ।

ଚର ହିଂସ୍ର ବ୍ୟାଘ୍ର ପ୍ରତି କବି ଶ୍ରଦ୍ଧା ଜାତ କରାଇଛନ୍ତି । ତାଙ୍କ କବିତାର ମହତ୍ତ୍ୱ ଏହିଠାରେ । ବ୍ୟାଘ୍ର ଧର୍ମଜ୍ଞ ଓ ମର୍ମଜ୍ଞ ହୋ'ଇଛି; ମମତାର ମୂଲ୍ୟ ହୃଦୟଙ୍ଗମ କରି ପାରିଛି । ତାର ହୃଦୟ ପରିବର୍ତ୍ତିତ ହୋଇଛି । ପଶୁର ଏଇ ପଶୁତ୍ୱ ଉନ୍ନତ ମାନବତାଠାରୁ କେଉଁ ଗୁଣରେ ହୀନତର ? ପଶୁଠାରୁ ବି ମଣିଷର ଯେ ଶିଖିବାର ଅଛି, ମଣିଷ ତାହା ଭାବି ପାରେନାହିଁ । ସେ ପଶୁକୁ କେବଳ ଶାସନ କରିଛି, ନିଜ ସ୍ୱାର୍ଥସିଦ୍ଧିରେ ଲଗାଇଛି, ତା' ପ୍ରତି ଅତି ନିଷ୍ଠୁର ଆଚରଣ କରିଛି । 'ଜଗତ୍ ବ୍ରହ୍ମମୟ' ଏ'କେବଳ କଥାର କଥା । ପଶୁ ଭିତରେ ସେ ବ୍ରହ୍ମ ଦେଖିନାହିଁ ।

ଭୀଷ୍ମ ଶରଶଯ୍ୟାରେ । ବଉଳାଗାଥାର ଦୃଷ୍ଟାନ୍ତ ଦେଇ ସେ ଜିଜ୍ଞାସୁ ଯୁଧିଷ୍ଠିରଙ୍କୁ ସତ୍ୟର ମହିମା ବୁଝାଇଛନ୍ତି । ବଳରାମ ଦାସ ଗଳ୍ପର କଙ୍କାଳ ମାତ୍ର ମହାଭାରତରୁ ଗ୍ରହଣ କରିଛନ୍ତି । କାଞ୍ଚି ନଗରୀ; ସେଠି ବିରଞ୍ଚି ନାମକ ପୁର । ବଣିକ ଧନେଶ୍ୱରଙ୍କର ବଉଳା ନାମରେ ଗୋଟିଏ ଗାଈ ଥିଲା । ସେ ନିତି ବଣ-ବୁଦାକୁ ଚରିବୁଲି ଯାଏ । ପହ୍ଲା ଭାରି ଲାଗିଲେ ବାଳୁତ ବାଛୁରୀକି ଦୁଧ ପେଇବା ଲାଗି ଦୌଡ଼ି ଆସେ । ତିନି ଦିନର ବାଛୁରୀ ତା ଆଖି ଡୋଳାରେ ନାଚୁଥାଏ । ବାଘର ନାଆଁ ନିପୁଆ, ସାତ ଦିନ ଓପାସିଆ । ବଉଳାକୁ ଦେଖିବା ମାତ୍ରେ ସେ ଖାଇବା ଲାଗି ତତ୍ପର ହେଲା । ଘଡ଼ିକେ ନିଜ ପ୍ରାଣ ଯିବ, ସେଥିଲାଗି ବଉଳା ମନରେ ଶଙ୍କା ବା ଶୋଚନା ନାହିଁ । ସେ ଭାବୁଥିଲା, କଅଁଳା ବାଛୁରୀ କଥା । ମାଆକୁ ନ ଦେଖି ଭୋକରେ ଆଉଟୁ ପାଉଟୁ ହୋଇ ତା ତାଳୁକା ଶୁଖିଯିବ । ପ୍ରାଣ ବାହାରି ଯିବ । ବଉଳା କହିଲା—ବାଘ, ତୁ ବିଶ୍ୱାସ କର, ଛୁଆକୁ ଦୁଧ ଦେଇ ମୁଁ ଏକ୍ଷଣି ବାହାରି ଆସିବି । ବାଘ କହିଲା—ହଉ ଯା, ସାତଦିନ ତ ଓପାସ ରହିଲଣି, ଅଉ ଗୋଟାଏ ଦିନରେ କଣ ହୋଇଯିବ ?

ଆଜି ଉପବାସ ହେଲେ ମରିଯିବି ନାହିଁ,
କାଲି ମତେ ପଢ଼ି ଦେବେ ତ୍ରୈଲୋକ୍ୟ ଗୋସାଇଁ ।

ବଉଳା ଗଲା, ବାଛୁରୀକି ଦେଖି ତାର କୋହ ଉଠିଲା, ସେ ବାହୁନିଲା—

ଶିବ ଥାଳେ ଅବା ଭୁରେ ଢାଳିଲୁ ଗରଳ,
ତେଣୁ କରି ଛେଉଣ୍ଡ ହୋଇଲୁ ଅରେ ବାଳ ।
ମାଗନ୍ତା ଲୋକକୁ ଅବା କଲୁ ତୁ ନିରାଶ,
ତେଣୁ କରି ଛେଉଣ୍ଡ ହୋଇଲୁ ଆରେ ଶିଷ୍ୟ ।

ବାଛୁରି ମାଆକୁ ବାଘ କଡକୁ ଯିବାକୁ ମନା କଲା । ବଉଳା ବୁଝାଇଲା —ମିଛ କହି କ୍ଷଣସ୍ଥାୟୀ ଜୀବନ ରଖିବା ବୃଥା । ତା ପରେ ଛୁଆ ବଉଳା ପଛେ ପଛେ ଗୋଡ଼ାଇଲା, କହିଲା—

ମୋତେ ବାଘ ଖାଇଣ ଲୋ ତତେ ବାଘ ଖାଉ
ଯୁଗ ଯୁଗାନ୍ତରକୁ ଏ କଥା ରହିଥାଉ ।

ବଉଳା ବାଛୁରିକି କହିଲା—ତୁ ବାଳୁତ, ଅକାଳ ମୃତ୍ୟୁ ଶ୍ରେୟସ୍କର ନୁହେଁ, ସବୁମନ୍ତେ ଶରୀର ରକ୍ଷା କରିବା ଉଚିତ ।

ଦେହଗଲା ଲୋକର ସଂସାରେ କିସ ଥାଇ ?
ଦେହ ଥିଲେ ପୁଣରେ ମିଳିବ ତୋତେ ମିତ,
ଦେହ ଥିଲେ ପୁଣରେ ତୁ ଅରଜିବୁ ବିତ୍ତ ।
ଦେହ ଥିଲେ ପୁଣରେ ମିଳିବ ବାପ ଭାଇ,
ଦେହ ଥିଲେ ପୁଣରେ ଭାରିଜା କାଳି ହୋଇ ।

ତାପରେ ମାଆ ପୁଅକୁ ଉପଦେଶ ଦେଇଅଛି—

ଏକା ହୋଇ ବନସ୍ତକୁ ନ ଯିବୁଟି ଚରି,
× × ×
ସାତ ପାଞ୍ଚ ଗାଈଙ୍କର ସଙ୍ଗେ ଚରୁଥିବୁ,
ବେଳ ଘଡ଼ିଏକ ଥାଇ ଘରକୁ ଆସିବୁ ।
ଗୋରୁ କରି ବିଧାତା ଯେ ଶିଙ୍ଗ ଦେଲା ଦୁଇ,
ବାନ୍ଧିବା ବେଳକୁ କାନ୍ଧ ଦେବୁଟି ଦେଖାଇ ।

ବଉଳାର ସତ୍ୟନିଷ୍ଠା ଅନ୍ତର୍ଯାମୀଙ୍କ ଅନ୍ତରକୁ ସ୍ପର୍ଶ କରିଅଛି । ଗାଈ ମାଈ, ଚାରି ପଶୁ ; ପାପକୁ ତାର ଏତେ ଡର ? ତା ସତ୍ୟରକ୍ଷାର ମଧୁରତର ପରିଣାମ ନ ହେଲେ ପତିତପାବନ ବାନାର ମହତ୍ତ୍ୱ ଆଉ ରହିବ ? କପୁଆ କଣ୍ଠରେ ଭଗବାନ ବିଜେ କଲେ । ପଣରକ୍ଷା କରି ବଉଳା ପହଞ୍ଚିଲା ପରେ କପୁଆ କହିଲା—

ବଉଳା, ବାହୁଡ଼ ତୁ ଘର;
ତୋର ବାହୁଡ଼ିଲେ ମୁହିଁ ଛାଡ଼ିବି ଶରୀର ।

ତା ପରେ ବଉଳା କପୁଆର ଧର୍ମଗୁରୁ ସ୍ଥାନ ଅଧିକାର କରିଅଛି, 'ସୁବାଣୀ ଗାଈ' ଗାଥାର ଦୃଷ୍ଟାନ୍ତ ଦେଇ ଦାନର ମହିମା ବୁଝାଇ ଅଛି । ସତ୍ୟର ଆଶ୍ରୟ ନେବାକୁ ଉପଦେଶ ଦେଇଅଛି । ଏହି ଗୀତର ଶେଷ ପଦ—

ଏହା ଶୁଣି ଯୁକେଷ୍ଟି ଯେ ହୋଇଲେ ହରଷ,
ବଉଳା ଅଧ୍ୟା ଭଣିଲେ ବଳରାମ ଦାସ ।

ବଉଳା ଗାଥା ଗୀତର କ୍ଷୁଦ୍ରତର ରୂପାନ୍ତର ଅଛି । ପଲ୍ଲୀଗୀତି ସଞ୍ଚୟନର ପ୍ରଥମ ଭାଗରେ ଏହା ପ୍ରକାଶ ପାଇଅଛି । ଗୀତ ଶେଷରେ ଭଣିତା ନାହିଁ । ବଳରାମ ଦାସଙ୍କ ଗୀତର ପ୍ରଭାବ ଏହା ଉପରେ ପଡ଼ିଥିବା ସମ୍ଭବ । ଦୁଇଟି ଗୀତରେ ଦେଶର ନାମ କାଞ୍ଚି । କିନ୍ତୁ ମୌଖିକ ଗୀତର ଧନେଶ୍ୱର ବଣିକ ନୁହେଁ, ବ୍ରାହ୍ମଣ । ଏହି ଗୀତର ଶେଷ ଭାଗରେ ବଉଳା ଯେ ଗୋଟିଏ ସାଧାରଣ ଗାଭୀ ନୁହେ, ତା'ର ପ୍ରମାଣ ମିଳିଛି । ବଉଳା ସତେ ଅବା ସୁରଭି, ନନ୍ଦିନୀର ବଂଶଧର । ତାର ବିଶ୍ୱମୂର୍ତ୍ତି ପ୍ରକାଶିତ ହୋଇଅଛି । ଶ୍ୱେତକୃଷ୍ଣ ପୁଚ୍ଛ ତାର ସ୍ୱର୍ଗ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି । ତାକୁ ଅବଲମ୍ବନ କରି ବ୍ୟାଘ୍ର ସ୍ୱର୍ଗ ପ୍ରୟାଣ କରିଅଛି ।

ଉତ୍ତର ଭାରତୀୟ ଗାଥାରେ ଗାଭୀର ନାମ ସୁରଭୀ । ଏଥିରେ ବ୍ୟାଘ୍ର ନାହିଁ, ଅଛି ସିଂହ । ସିଂହ ବାଛୁରୀର ମାମୁଁ । ସେ ମାମୁଁ ନିକଟରେ ଆତ୍ମ ସମର୍ପଣ କରିଅଛି—

ମତେ ଖାଅ, ମାଆକୁ ବଞ୍ଚାଅ ।

ସିଂହ ଉଭୟଙ୍କ ଆତ୍ମତ୍ୟାଗରେ ଅଭିଭୂତ ହୋଇଅଛି । ଉଭୟଙ୍କୁ ଛାଡ଼ି ଦେଇଅଛି । 'ବ୍ରଜଲୋକ' କାହାଣୀରେ ଦିଲୀପ-ସୁରଭୀ-ସିଂହ କାହାଣୀର ଧାରା ଅନୁସୃତ ହୋଇଅଛି ।

କର୍ଣ୍ଣାଟୀ ଗଳ୍ପରେ ଗାଈର ନାମ ପୁଣ୍ୟକୋଟି । ଗାଈଆଳର ନାମ କଳିଙ୍ଗ । ଓଡ଼ିଆ ଗଳ୍ପ ସହିତ ଏହାର ଯଥେଷ୍ଟ ସାମ୍ୟ ଅଛି । ପୁଣ୍ୟକୋଟି ସତ୍ୟ ରକ୍ଷା କରି ଫେରିବା ପରେ ବ୍ୟାଘ୍ର କହୁଛି—ସତ୍ୟରକ୍ଷା କରିବାରୁ ବଡ଼ି ପୁଣ୍ୟ ନାହିଁ । ପୁଣ୍ୟବନ୍ତକୁ ବିନାଶ କରିବା ମହାପାପ ।

ବୌଦ୍ଧ ଜାତକର ଗୋଟିଏ ଗଳ୍ପ ସହିତ ବଉଳା ଗାଈ କାହାଣୀର ନିବିଡ଼ ସାମଞ୍ଜସ୍ୟ ରହିଅଛି । ବ୍ୟାଧ ତିନୋଟି ହରିଣ ହରିଣୀକି ଲକ୍ଷ୍ୟ କରି ଶର ନିକ୍ଷେପ କଲାବେଳେ ପ୍ରଥମ ହରିଣୀଟି କହିଲା—ମୁଁ ଛୁଆମାନଙ୍କୁ ଦୁଧ ଦେଇ ଏକ୍ଷଣି ଫେରି ଆସିବି । ଦ୍ୱିତୀୟ ହରିଣୀଟି କହିଲା—ସ୍ୱାମୀ ମୋର ପ୍ରିୟତମ, ମୁଁ ତାଙ୍କ ସହିତ ମିଳିତ ହୋଇ ଏକ୍ଷଣି ଫେରି ଆସିବି । ତୃତୀୟ ହରିଣ, ସେ କହିଲା – ସ୍ତ୍ରୀ ମୋର ପ୍ରାଣର ପ୍ରିୟତମା, ତା ସହିତ ମିଳିତ ହୋଇ ମୁଁ ଏବେ ଫେରି ଆସିବି । ତିନିହେଁ ସତ୍ୟରକ୍ଷା କଲେ । ପଶୁଜାତିର ସତ୍ୟନିଷ୍ଠାରେ ବ୍ୟାଧର ମନ ବଦଳି ଗଲା । ସେ ହରିଣହରିଣୀଙ୍କି ମୁକ୍ତ କରିଦେଲା । ସେହି ଦିନଁ ଶିକାରବୃତ୍ତି ତ୍ୟାଗ କଲା ।

କାତକ ଗଳ୍ପଟି ହୁଏତ ମହାଭାରତରେ ବହୁଳା-ବ୍ୟାଘ୍ର ସମ୍ବାଦ ନାମରେ ରୂପାନ୍ତର ଗ୍ରହଣ କରିଅଛି । ପ୍ରକାଶିତ ଚଉଦଅକ୍ଷରୀ ଶାରଳା ମହାଭାରତରେ ଏହା ନାହିଁ । ସ୍ଥାନ ଓ କାଳ ପ୍ରଭାବରେ ଭାରତର ବିଭିନ୍ନ ଅଞ୍ଚଳରେ ଏହା ଭିନ୍ନ ଭିନ୍ନ ରୂପ ପରିଗ୍ରହ କରିଅଛି । ବଳରାମ ଦାସଙ୍କ ବଉଳା ଅଧ୍ୟାୟ ସଂସ୍କୃତ ବହୁଳା-ବ୍ୟାଘ୍ର ସମ୍ବାଦର ସଂକ୍ଷିପ୍ତ ରୂପାନ୍ତର ।

୧୯୧୧ରେ ଗୋବିନ୍ଦ ରଥ ଶର୍ମିଷ୍ଠୋପାଖ୍ୟାନ, ଶିବେରୁପାଖ୍ୟାନ, କପୋତାଖ୍ୟାନ, ବହୁଳା-ବ୍ୟାଘ୍ର ସମ୍ବାଦ ପ୍ରଭୃତି ଅଠତିରିଶଟି ଉପାଖ୍ୟାନ ଏକତ୍ର କରି 'ଇତିହାସସମୁଚ୍ଚୟଃ' ନାମରେ ସଂକଳନ କରିଥିଲେ । ପୁରାଣମାନଙ୍କରୁ ସଂଗୃହୀତ ଏହି ସଂସ୍କୃତ କାହାଣୀ ନୀତିଗର୍ଭିକ, ଶିକ୍ଷାମୂଳକ । "ସକଳ ସୁନୀତିଗର୍ଭିଃ ଇତିହାସସମୁଚ୍ଚୟଃ ପଣ୍ଡିତେନ ଶ୍ରୀମତା ଗୋବିନ୍ଦରଥେନ ସଂଗୃହୀତଶ୍ଚ ପ୍ରକାଶିତଃ ।"

ଲୋକଶିକ୍ଷକ ରଥେ ଲୋକ କଲ୍ୟାଣାର୍ଥେ ଏହି ସମସ୍ତ କାହାଣୀ ଓଡ଼ିଆରେ ଅନୁବାଦ କରିଥିଲେ । ଏବେ ଏହା ଦୁଷ୍ପ୍ରାପ୍ୟ । ବହୁଳା ଉପାଖ୍ୟାନର ଓଡ଼ିଆ ଅନୁବାଦ ରଥଙ୍କ ଆଗରୁ ରାଜା ଗୋବିନ୍ଦ ଭଞ୍ଜ କରିଥିଲେ । ୧୯୪୦ରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ କେନ୍ଦୁଝର ଗ୍ରନ୍ଥମାଳାର ଚତୁର୍ଥ-ପଞ୍ଚମ ସଂଖ୍ୟାରେ 'ବହୁଳା ଚରିତ ଓ ରାମ ଗାଥା' ନାମରେ ଏହା ପ୍ରକାଶ କରି ଅଛନ୍ତି । ବହୁଳା ବ୍ୟାଘ୍ର ସମ୍ବାଦ ଏହିପରି ଆରମ୍ଭ ହୋଇଅଛି –

ଶରତଳ୍ପ ଗତଂ ଭୀଷ୍ମଂ ବୃଦ୍ଧଂ କୁରୁ ପିତାମହଂ
ମୂର୍ଦ୍ଧ୍ନା ପ୍ରଣମ୍ୟ ଧର୍ମାତ୍ମା ପପ୍ରଚ୍ଛେଦଂ ଯୁଧିଷ୍ଠିରଃ ।
– ଯୁଧିଷ୍ଠିର ଉବାଚ
ଭଗବାନ୍ ଶ୍ରୋତୁମିଚ୍ଛାମି ସତ୍ୟବାକ୍ୟସ୍ୟ ଯତ୍ଫଳଂ
ଯତ୍ର ପ୍ରାକ୍ ବହୁଳାଖ୍ୟା ପ୍ରୋକ୍ତଂ ତନ୍ମାମାଖ୍ୟାତୁମର୍ହସି ।

ଗୋବିନ୍ଦ ଭଞ୍ଜଙ୍କ 'ବଉଳା ଚରିତ' ଏହିପରି ଆରମ୍ଭ ହୋଇଅଛି—

ବ୍ୟାସ ଶିଷ୍ୟ କହନ୍ତି ଶୁଣ ତୁ ଜନ୍ମେଜୟ,
ଭୀଷ୍ମଦେବ କହନ୍ତି ଶୁଣନ୍ତି ଧର୍ମରାୟ ।
ଶର ଶଯ୍ୟାରେ ଜଳୁଛି ଭୀଷ୍ମଙ୍କର ଦେହ,
ବୃଦ୍ଧ କୁରୁବଂଶର ଅଟନ୍ତି ପିତାମହ ।
ମହାଧର୍ମ ଆତ୍ମା ସେ ଯୁଠେଷ୍ଠି ନୃପବର,
ଭୀଷ୍ମଦେବ ଚରଣରେ ଦେଇ ରାଜା ଶିର ।

× × ×

ସତ୍ୟ ଫଳ ବଉଳା ପାଇଲା ପୂର୍ବେ ଯାହା,
ବିଶେଷି ହେ ପିତାମହ ମୋତେ କହ ତାହା ।

ତତ୍ପରେ ଭୀଷ୍ମଦେବ ବହୁଳାଚରିତ ବର୍ଣ୍ଣନା କରିଅଛନ୍ତି । ଯମୁନା କୂଳରେ ମଧୁରା ନାମକ ଗୋଟିଏ ରାଜ୍ୟ ଅଛି । ସେଠି ବିତପନ ନାମକ ପୁର ଥିଲା । ସେହି ପୁରରେ ଜଣେ ବ୍ରାହ୍ମଣ ଥାନ୍ତି । ତାଙ୍କ ଗାଈର ନାମ ବହୁଳା । ଗାଈଆଳର ନାମ ସମୀଳ । ବହୁଳାର ବର୍ଣ୍ଣନା ମନୋରମ ।

ଧେନୁ ମଣ୍ଡଳରେ ସେ ବଉଳା ଗାଈ ରହି
ହଂସ ପ୍ରାୟେ କାୟ କାନ୍ତି ଘଟ ପ୍ରାୟେ ସ୍ତନ ।
× × ×
ଚର୍ମ ତାର ପାତଳ କ୍ଷୀରୋଦ ପାଟ ପ୍ରାୟେ
× × ×
ବିସ୍ତାର ସୁନ୍ଦରି ଜଙ୍ଘ ମରାଳଗାମିନୀ
ଉଚ୍ଚ ପୟୋଧର ସେ ଚକ୍‌କଣ ଗୁରୁସ୍ତନୀ ।
ନୀଳବର୍ଣ୍ଣ କାନ୍ତି ସେ ସୁନ୍ଦର ଗଳା ଗୋଟି
ହମାରବ ମଧୁର କଣ୍ଠରେ ଶୋହେ ଘଣ୍ଟି ।

ଯମୁନା ତୀର ଅରଣ୍ୟରେ ପ୍ରବେଶ କରିବା ମାତ୍ରେ ବହୁଳା ବ୍ୟାଘ୍ର ହାବୁଡ଼ରେ ପଡ଼ିଅଛି । କିନ୍ତୁ କାତର ହୋଇ ନିଜ ଜୀବନ ଭିକ୍ଷା କରିନାହିଁ । ଜୀବ ଜନ୍ମ ହେଲେ ଅବଶ୍ୟ ମରେ, କାଳରେ ବା ଅକାଳରେ ମଲେ ପୁଣି ଜନ୍ମ ହୁଏ; "ପୁନରପି ଜନନଂ ପୁନରପି ମରଣଂ ପୁନରପି ଜନନୀ ଜଠରେ ଶୟନଂ ।" ମୃତ୍ୟୁ ଲାଗି ତ ର ଶଙ୍କା ହେବ କାହିଁକି ? ସନ୍ତାନ ଚନ୍ତାହିଁ ତାକୁ ଅସ୍ଥି ର କରିଅଛି—

ବେଳେ ମାତ ଯିବ ସ୍ତନ୍ୟ ଆସିବ ପିଆଇ
× × ×
ମଥାଗୋଟି ଶୃଙ୍ଗି ତାର ଶରୀର ଲେହିବ
ସଖୀଜନମାନଙ୍କୁ ପୁତ୍ରକୁ ସମର୍ପିବି ।

ସତ୍ୟ କରି ରକ୍ଷା ନ କରିବା ମହାପାପ । ବ୍ରହ୍ମହତ୍ୟା, ପିତୃମାତୃ ହତ୍ୟା କଲେ, ଧର୍ମ କାର୍ଯ୍ୟରେ ବାଧାଦେଲେ, ବିଶ୍ୱାସରେ ବିଷ ଦେଲେ, ଜଣକୁ ଯାଚି ଆଉ ଜଣକୁ ଦାନ କଲେ, ମିଥ୍ୟା ସାକ୍ଷ୍ୟ ଦେଲେ, ଯେଉଁ ପାପରେ ଭାଗୀ ହୁଅନ୍ତି, ବହୁଳା କଥା ରକ୍ଷା ନ କଲେ ସେହି ପାପରେ ଭାଗୀ ହେବ ବୋଲି ସଙ୍କଳ୍ପ କରିଛି । ତା ବିବେଚନାରେ ଭୂଦାନ ଶ୍ରେଷ୍ଠ ଦାନ, ସତ୍ୟଧର୍ମ ଶ୍ରେଷ୍ଠ ଧର୍ମ ।

ମାତାକୁ ବ୍ୟାଘ୍ର ମୁଖକୁ ଠେଲି ଦେଇ ବଞ୍ଚେ କୁପୁତ୍ର । କାରଣ ମାତାର ଋଣ ଜୀବନରେ କୌଣସି ପୁତ୍ର ଶୁଝି ପାରେ ନାହିଁ । ମାତା ଲାଗି ପୁତ୍ର ଆତ୍ମବଳି ଦେବା କର୍ତ୍ତବ୍ୟ ।

ଶହେ ବରଷରେ କେ ଶୁଝିବ ମାତାଋଣ
× × ×
ମୋହ ମତେ ଏଡ଼େ ଧର୍ମ ନ ଦେଖିଲି କାହିଁ,
ମାତା ସମ ଦେବତା ପୁତ୍ରକୁ ଆନ ନାହିଁ ।

ବହୁଲା ତାର ଉତ୍ତରରେ କହୁଛି—ପୁତ୍ରହୀନା ମାତାର ଜୀବନ ଧାରଣ ବୃଥା ।

ଅପୁତ୍ରିକ ପ୍ରାଣୀଙ୍କି ଜଗତ ହୁଏ ଶୂନ୍ୟ
ଅପୁତ୍ରିକ ଲୋକର ଯେ ଘରହିଁ ଅରଣ୍ୟ ।
ନାସ୍ତି ପୁତ୍ର ସମଃ ସ୍ନେହୋ ନାସ୍ତି ପୁତ୍ର ସମଂ ସୁଖଂ
ନାସ୍ତି ପୁତ୍ରସମା ପ୍ରୀତିର୍ନାସ୍ତି ପୁତ୍ରସମା ଗତିଃ ।

ବିଦାୟର ଶେଷ ମୁହୂର୍ତ୍ତରେ ବହୁଳା ପୁତ୍ରକୁ ଉପଦେଶ ଦେଉଅଛି—କପଟୀ ଲୋକକୁ ବିଶ୍ୱାସ ଯିବୁ ନାହିଁ, ଲୋଭ କରିବୁ ନାହିଁ । ଜୀବନ ଅନିଶ୍ଚିତ, ତେଣୁ ଧର୍ମାଚରଣ କରିବୁ ।

ହୃଦେ ପାପ ଥୋଇ ଯେହୁ କହନ୍ତି ମଧୁର
ବିଶ୍ୱାସ ନ ଯିବୁ ବାବୁ ବାଳୁତ କୁମର ।
ଜଳର ତରଙ୍ଗ ପ୍ରାୟେ ଚଞ୍ଚଳ ଜୀବନ
ଏ କଥା ବିଗୁଣି ଧର୍ମେ ଦେଇଥିବୁ ମନ ।
ନ ଚ ଲୋଭେନ କର୍ତ୍ତବ୍ୟଂ ବିଷମସ୍ଥଂ ତ୍ୟକ୍ତ୍ୱା ତୃଣଂ
ଲୋଭାତ୍ ବିନାଶଃ ସର୍ବେଷାଂ ଇହଲୋକେ ପରତ୍ର ଚ
ସମୁଦ୍ରାଟବୀଦୁର୍ଗେଷୁ ମ୍ରିୟନ୍ତେ ଲୋଭ ମୋହିତାଃ
ଲୋଭାଦକାର୍ଯ୍ୟମତ୍ୟୁଗ୍ରଂ ବିଦ୍ୱାନପି ସମାଚରେତ୍ ।

ପୁତ୍ରକୁ ସମର୍ପି ଯିବାବେଳେ ସାଇପଡ଼ଶାଏ ବହୁଳାକୁ କହିଲେ—ଜୀବନସଂଶୟ ଯେତେବେଳେ ଉପସ୍ଥିତ, ସେତେବେଳେ ମିଥ୍ୟା କହିବା ପାପ ନୁହେଁ ।

ବିବାହେ ବିବାଦେ ପ୍ରାଣତ୍ୟାଗେ ମିଥ୍ୟା ନାହିଁ,
ଧନ ନାଶେ ମିଥ୍ୟା ପାପେ ନୁହନ୍ତି ନା ଦହି ।

ବିବାଦ କାଲେ ରତି ସମ୍ପ୍ରୟୋଗେ,
ପ୍ରାଣାତ୍ୟୟେ ସର୍ବ ଧନାପହାରେ;
ବିପ୍ରସ୍ୟ ଚାର୍ଥେହ୍ୟନୃତଂ ବଦେୟୁଃ
ପଞ୍ଚାନୃତାନ୍ୟାହୁର ପାତକାନି ।

ଉକ୍ତ ଶ୍ଳୋକରେ ମିଥ୍ୟା କହିବାର ନିରଙ୍କୁଶତା ଜୀବନର ପ୍ରାୟ ସକଳ କ୍ଷେତ୍ରକୁ ବିସ୍ତୃତ ହୋଇଅଛି । ବହୁଳା ଏହା ସମର୍ଥନ କରି ନାହିଁ । ସେ କହିଛି— ପର ଜୀବନ ରକ୍ଷା ଲାଗି ମିଥ୍ୟା କହିବା ପାପ ନୁହେଁ । କିନ୍ତୁ ନିଜ ଜୀବନ ରକ୍ଷା ପାଇଁ ମିଥ୍ୟାର ଆଶ୍ରୟ ନେବା ମହାପାପ ।

ବହୁଳା ଆସିଛି, ଧର୍ମ ଲାଗି ତାର ଏ ଆତ୍ମତ୍ୟାଗରେ ବ୍ୟାଘ୍ର ବିସ୍ମିତ ହୋଇ ଆତ୍ମ-ନିରୀକ୍ଷଣ କରିଛି । ଜୀବନସାରା ସେ ବହୁ ପାପରେ ଲିପ୍ତ । ତାର କେଉଁ ଗତି ହେବ ? ହୁଏତ କୁତ୍ସିତ କର୍ମ ଫଳରେ ସେ ହୀନତର ଯୋନିରେ ଜନ୍ମ ହେବ । ଏହା ଅସହ୍ୟ; ତା ଅପେକ୍ଷା ବରଂ ପର୍ବତରୁ ଲମ୍ଫ ଦେଇ, ଅଗ୍ନିରେ ଝାସ ଦେଇ, ଶରୀରକୁ ଦୀର୍ଘକାଳ ଉପବାସରେ ଶୁଖାଇ ଶୁଖାଇ ସେ ମରିବ; କିମ୍ବା ଘୋର ତପସ୍ୟାରେ ପାପପୂର୍ଣ୍ଣ ଶରୀରକୁ ଶୁଦ୍ଧ କରିବ । ସତ୍ୟ ଯୁଗରେ ତପସ୍ୟା, ତ୍ରେତୟାରେ ଜ୍ଞାନ, ଦ୍ୱାପରରେ ଯଜ୍ଞ, କଳିରେ ଦାନ ଶ୍ରେଷ୍ଠ । ସବୁ ଦାନ ମଧ୍ୟରେ ଅଭୟ ଦାନ ଶ୍ରେଷ୍ଠ ଦାନ ।

ସମସ୍ତ ଜୀବକୁ ଯେ ଅଭୟ ଦାନ ଦେଇ
ଆନ ଦାନ ତାହାକୁ ଯେ ସମାନ ନୁହଇ ।

ବ୍ୟାଘ୍ର ବହୁଳାକୁ ଅଭୟ ଦାନ କଲା । ସତ୍‌ସଙ୍ଗ ଫଳରେ ତାର ପୂର୍ବ ଜ୍ଞାନର ସ୍ମରଣ ହେଲା । ସେ ଦେବତାଙ୍କ ଅଭିଶାପରୁ ମୁକ୍ତ ହୋଇ ସ୍ୱର୍ଗ ପ୍ରୟାଣ କଲା । କିଛି ଦିନ ପରେ ବହୁଳା ମଧ୍ୟ ସ୍ୱର୍ଗକୁ ଗଲା, କିନ୍ତୁ ଏକୁଟିଆ ନୁହେ—ପାପୀ ପୁଣ୍ୟବନ୍ତ ସମସ୍ତ ମନୁଷ୍ୟ, ପଶୁ ପକ୍ଷୀ, କୀଟ ପତଙ୍ଗ, ତରୁତୃଣ ସମସ୍ତଙ୍କୁ ଘେନି । ଗୋଲୋକ ଭୂମିରେ ସେ ସ୍ଥାନ ଲାଭ କଲା ।

'ବଉଳା ଚରିତ' ସ୍ୱରଣ ପଗୃଣ ପଦରେ ଶେଷ ହୋଇଅଛି । ଏହା ଏକ ପୂର୍ଣ୍ଣାଙ୍ଗ କାହାଣୀ, ନାନା ଉପଦେଶପୂର୍ଣ୍ଣ, କାବ୍ୟ ଗୁଣାନ୍ୱିତ । ମୂଳ ଗ୍ରନ୍ଥର ଶକ୍ତି ଅନୁବାଦରେ ରକ୍ଷିତ ହୋଇ ପାରି ନାହିଁ । ଅନୁବାଦ ଆକ୍ଷରିକ ନୁହେଁ, ସ୍ୱଚ୍ଛନ୍ଦ, ସାବଲୀଳ; ତେଣୁ ସୁଖପାଠ୍ୟ । କିନ୍ତୁ 'ଗଣ'ର ସ୍ୱରଣଗୀତ ରୂପେ ଏହା ଏବେ ବି ଗୃହୀତ ହୋଇନାହିଁ ।

ବଉଳା ଗାଥାର ସ୍ୱରୂପ, ସଂଗଠନ ଯେ ବୌଦ୍ଧ, ଏହା ଜାଣି ହୁଏ । ବୁଦ୍ଧଦେବ ଲୋକ କଲ୍ୟାଣ ସାଧନ ଲାଗି ବହୁ ଜୀବଯୋନିରେ ଜନ୍ମ ଗ୍ରହଣ

କରିଥିଲେ । ସେହି ଜୀବ ସାଧାରଣ ଜୀବରୁ ବୁଦ୍ଧିବିବେକରେ ଭିନ୍ନ, ଆତ୍ମ-ସଚେତନ, ଅପାପବିଦ୍ଧ । ପରର ଜୀବନରକ୍ଷା ଲାଗି ସେ ଆତ୍ମତ୍ୟାଗ କରୁଥିଲେ । ଲୋକଶିକ୍ଷା ଦାନ ତାଙ୍କର ଉଦ୍ଦେଶ୍ୟ । ବଉଳା ହୁଏତ ବୁଦ୍ଧଦେବଙ୍କର ଗୋଟିଏ ଅବତାର, ଆତ୍ମଜ୍ଞାନୀ, ସର୍ବତ୍ୟାଗୀ, ମହାଯୋଗୀ । ଅହିଂସାପ୍ରଚାର ହିଁ କବିଙ୍କର ଲକ୍ଷ୍ୟ ।

ନାସ୍ତ୍ୟହିଂସା ପରୋ ଧର୍ମୋ
ନାସ୍ତ୍ୟହିଂସା ପରଂ ତପଃ
ନାସ୍ତ୍ୟହିଂସା ସମା ବିଦ୍ୟା
ନାସ୍ତ୍ୟହିଂସା ସମଂ ଶ୍ରୁତମ୍ । (ବହୁଳା ବ୍ୟାଘ୍ର ସମ୍ବାଦ)



# ଓଡ଼ିଆ ଲୋକସାହିତ୍ୟରେ ପକ୍ଷୀ

ପକ୍ଷୀ ଆକାଶଗାମୀ, କିନ୍ତୁ ନୀଡ଼ବାସୀ; ମନୁଷ୍ୟର ଏକାନ୍ତ ପଡ଼ୋଶୀ । ସେ ପ୍ରଭାତ ସନ୍ଧ୍ୟାରେ ନଗରଜନପଦ ଅରଣ୍ୟ, ଉଦ୍ୟାନ, ସର୍ବତ୍ର ଆନନ୍ଦର ହିଲ୍ଲୋଳ ଖେଳାଉଛି; ବସନ୍ତପ୍ରଭାତର କୋଇଲି, ଗ୍ରୀଷ୍ମ ମଧ୍ୟାହ୍ନର ହଳଦବସନ୍ତ, ଆର୍ଦ୍ର ଆଷାଢ଼ର ଡାହୁକ, ଶରତ୍ ଗୋଧୂଳିର ଭରଢଆ, ତୋଟା ଗହଳର କପୋତ, ହାଣ୍ଡିଅନ୍ଧାର ପାରାବତ, ଫୁଲର ଗୁଳ୍ମର ବୁଲ୍‌ବୁଲ୍, କଳାମେଘ ଉପରେ ଉଡ଼ନ୍ତ ବଳାକା, କଦମ୍ବଶାଖାର ନୃତ୍ୟବିହ୍ୱଳ ମୟୂର, ଶରତ୍ ଆକାଶରେ ରେଖାଙ୍କିତ ଗେଣ୍ଡାଳିଆ, ନିର୍ମଳ ହ୍ରଦର ରାଜହଂସ, ଅଭିନନ୍ଦନୀୟ; ରୂପ ରଙ୍ଗ ଓ ସଙ୍ଗୀତରେ ସେମାନେ ମଣିଷର ମନକୁ ତରଙ୍ଗିତ କରି ରଖନ୍ତି । କେତେବେଳେ ପକ୍ଷୀର ଅବାରିତ ସ୍ୱରଲହରୀ କାରୁଣ୍ୟର ଝଙ୍କାର ଖେଳାଇ ଦିଏ—'ଉଠ୍ ରେ ପୁତା ମାଣ ପୂରିଲି' !

ପକ୍ଷୀ ସୌନ୍ଦର୍ଯ୍ୟର ପୂଜାରୀ ସେ । ତେଣୁ ମୟୂର ପୁଚ୍ଛକୁ ତାର ଦେବତାର ଶିରୋଭୂଷଣ କରିଛି; ଭଦଭଦଳିଆକୁ ଶୁଭଙ୍କର ପକ୍ଷୀ ରୂପେ ଗ୍ରହଣ କରିଛି । ଦଶହରା ସକାଳେ ଭଦଭଦଳିଆ ଦେଖିଯିବା ପଲ୍ଲୀଗ୍ରାମର ଏକ ପାରମ୍ପରିକ ରୀତି । ରାଜା ବା ସାମନ୍ତ କେଳାକୁ ଜାଗିର ଦେଇଥାନ୍ତି, ସେ ପ୍ରତି ସକାଳେ ଭଦଭଦଳିଆ ମୁଖ ଦେଖାଏ । ଭଦଳିଆ ପକ୍ଷୀ ମହିଷିଅଳ ବା ଗାଈଅଳର ତାଳପତ୍ର ଛତ୍ର ମଣ୍ଡନ କରେ; ମୟୂରପୁଚ୍ଛରେ ବାବା ସତ୍ୟପୀରଙ୍କ ପୂଜ ବେଦୀ ମଣ୍ଡିତ ହୁଏ । ହଂସୁଳୀ ତୂଳି, ମୟୂରଚନ୍ଦ୍ରିକାର ବାଞ୍ଛଣା, ରଙ୍ଗୀନ୍ ପକ୍ଷୀପରର ମୁକୁଟ ଓ ପରକଲମର ବ୍ୟବହାର ଦେଖିଲେ ବୁଝାଯାଏ—ମନୁଷ୍ୟ ପକ୍ଷୀର କେତେ ନିକଟବର୍ତ୍ତୀ, ପକ୍ଷୀ ତାର କେତେ ପ୍ରୟୋଜନୀୟ ଓ ପକ୍ଷୀ ପ୍ରତି ତାର ସ୍ନେହ କେତେ ନିବିଡ଼ !

ପକ୍ଷୀ ମନୁଷ୍ୟକୁ କୀଟ ପତଙ୍ଗ କବଳରୁ ରକ୍ଷା କରେ, ନିର୍ଜନ ଅରଣ୍ୟ ଓ ପାର୍ବତ୍ୟ ଉପତ୍ୟକାରେ ନିଃସଙ୍ଗକୁ ସଙ୍ଗ ଦାନ କରେ, ନିରପତ୍ୟର ଅପତ୍ୟ ହୁଏ, ଭକ୍ତ କର୍ଣ୍ଣରେ ପ୍ରତି ପ୍ରଭାତରେ ବିଭୁନାମ ସଂକୀର୍ତ୍ତନ କରେ, ଭୋଗୀର ସଂସାରକୁ କାରୁଣ୍ୟରେ ମୂର୍ଚ୍ଛିତ କରେ, ମନମୋହକର କାକଳୀରେ ପ୍ରକୃତିର ଶ୍ରୀ ପ୍ରତି ମନୁଷ୍ୟର ଦୃଷ୍ଟି ଆକର୍ଷଣ କରେ; ନୀରସକୁ ସରସତା ଦାନ କରିବା ତାର ଧର୍ମ । ତୀବ୍ର ଜୀବନସଂଗ୍ରାମ ମଧ୍ୟରେ ସେ ଅବସରସୃଷ୍ଟି କରିଥାଏ, କେବଳ ଗୀତ ଗାଇବା ପାଇଁ । ଜଞ୍ଜାଳରେ ସ୍ଥବିର ନୁହେ, ଦୁଶ୍ଚିନ୍ତାରେ ଆବିଳ ନୁହେ, ସେ

ଗୀତ ଚିରନ୍ତନ ଆନନ୍ଦର; ଉଷାର ଏଇସବୁ ଦରବାରୀ ଗୀତରୁ ଅସୀମର ଇଙ୍ଗିତ ମିଳିଥାଏ; ଜୀବନ ଖାଲି ଦୁଃଖ ଶୋକର ନୁହେ, ସଂଗ୍ରାମ ସଂଘର୍ଷର ନୁହେ, ତାର ଆନନ୍ଦଲୋକ ଅଛି, ମହିମାମୟ ସ୍ତର ଅଛି ।—ଗୋଧୂଳି ସଙ୍ଗୀତ ଆମକୁ ଦୂରରୁ ସୁଦୂରକୁ ନେଇଯାଏ ।

ମୟୂର ଆମର ଜାତୀୟ ପକ୍ଷୀ, କପୋତ ଶାନ୍ତିର ଦୂତ, ପାରି ସମ୍ବାଦ-ବାହକ । ପକ୍ଷୀ ମନୁଷ୍ୟର ସେବାକାରୀ ମିତ୍ର, ମନୁଷ୍ୟ କିଛିଅଂଶରେ ତାର ପାଳକ, ପୋଷକ । କାକ ବଳିଭୁକ୍, ସାରି ଶୁକ ବାକ୍‌ଶକ୍ତିର ଅଧିକାରୀ, ନୀଳ ବଗ୍ରା, କାକତୁଆ କ୍ରୀଡ଼ାକାରୀ, କୋକିଳ ଗାୟକ, ହଂସ ପୁଷ୍କରିଣୀର ଶ୍ରୀବର୍ଦ୍ଧକ, ମରୁ-ଜୀବନକୁ ମାଧୁର୍ଯ୍ୟମୟ କରି ରଖନ୍ତି ଏମାନେ ।

ପକ୍ଷୀ ସହିତ ପଲ୍ଲୀବାସୀର ଘନିଷ୍ଠତା ଅଧିକ । ତୋଟା, ପ୍ରାନ୍ତର, ନଦୀ ତୀର, କେଦାର, ଶ୍ମଶାନ ପକ୍ଷୀର ବିହାର ଭୂମି, ପଲ୍ଲୀର ପ୍ରାଣ ଉପରେ ତାର ପ୍ରଭାବ ସୁବିସ୍ତୃତ । ପଲ୍ଲୀଗୀତରେ ତେଣୁ ତାର ରୂପ ଓ ଚରିତ୍ର ବିଚିତ୍ର ବର୍ଣ୍ଣରେ ଚିତ୍ରିତ ।

ଲୋକକବି ପ୍ରତୀକ ଲାଗି ପକ୍ଷୀର ଆଶ୍ରୟ ଗ୍ରହଣ କରିଛି । ସେହି ପ୍ରୟୋଗର କୌଣସି ନିର୍ଦ୍ଦିଷ୍ଟ ହେତୁ ନାହିଁ କିମ୍ବା ନିର୍ଦ୍ଧାରିତ ସୀମା ନାହିଁ । କେତେବେଳେ କଣ୍ଟାରି, କେତେବେଳେ ନାରକେଳ, କେତେବେଳେ ଜଳୌକା, ଜାଲ କିମ୍ବା ଶିଶିର ବିନ୍ଦୁ ଅର୍ଥରେ ବ୍ୟବହୃତ । କେତେବେଳେ ଆକାର, କେତେବେଳେ ବର୍ଣ୍ଣର ସାମ୍ୟ ହୁଏତ ପ୍ରତୀକ ପ୍ରୟୋଗର କାରଣ ରୂପେ ନିର୍ଣ୍ଣୀତ ହୋଇଥାଏ, କେତେବେଳେ ତାହା ଖୋଜି ପାଇବା ମଧ୍ୟ ଦୁଷ୍କର; 'ନାଆଁ ଢଗ'ରେ ପକ୍ଷୀ ପ୍ରତୀକର ବିସ୍ତୃତ ପ୍ରୟୋଗ ଦେଖିବାକୁ ମିଳେ—

ଟିକି ଚଢ଼େଇ
ଏଡ଼େ ବଡ଼ ବାଉଁଶକୁ ଦେଲା ଓରେଇ । —କଣ୍ଟାରି
ଟିକି ଚଢ଼େଇ
ଟିକିଏ ପାଣିରେ ବୁଡ଼ି ମରଇ । —ଲୁଣ
ଉଡ଼ିଗଲା ଚଲ, ବୁଡ଼ିଗଲା ବଲ
ରୂପାର ପଞ୍ଜୁରି ସୁନାର ଖିଲ । —କୋଳପ
ଆସିଲା ବଡ଼ ଚଢ଼େଇ
ବସିଲା ପକ୍ଷୀ ମେଲେଇ
ଧଇଲା ମାଛ ଖାଇଲା ନାହିଁ —ଜାଲ

ହରଡ଼ ଚଢ଼େଇ ବରଡ଼ ପକ୍ଷୀ
କେଉଁ ଚଢ଼େଇର ତିନଟି ଆଖି ? —ନଡ଼ିଆ
ନଈ ସେପାଖରେ ଡାକୁଚି ଶୁଆ
କାହା ଘରେ ଅଛି ନିଦା ଗୁଆ ? —ଶାବଳ
ବଗ ବସିଛନ୍ତି ଧାଡ଼ି ଧାଡ଼ି କୃଷ୍ଣ ବସିଛନ୍ତି ଏକା —ଦାନ୍ତ ଓ ଜିଭ
ସଜନା ଗଛରେ ବସିଛି ପେଚା
ହାତ ଗୋଡ଼ ନାହିଁ ମାଉଁସ ମେଞ୍ଚା ।
ଟିକି ଟିକି ଚଢ଼େଇ
ଟିକି ଡିମ୍ବ ପାରଇ
ରଜାଘର ବଜେ କଲେ ଖସି ଖସି ପଡ଼ଇ । —କାକର

କୌଣସି ୨ ଗୀତ ପଞ୍ଜୁରି ଓ ପକ୍ଷୀର ଉପମାରେ ଭାବଗମ୍ଭୀର ହୋଇ-ଅଛି । ଦାର୍ଶନିକ ଭାବପ୍ରକାଶର ସହଜ ଝିଡ ଏ; ଭୁଲ ହୁଏ କାହିଁ । ଯଥା—

ମାଟି ଘଟ ପଞ୍ଜୁରିକି ସୁବର୍ଣ୍ଣର ଶୁଆ
ଭଲ ରଙ୍ଗେ ଖଞ୍ଜାଇଛି ଭାବ ବନୋଦିଆ ।

ପ୍ରେମ ପ୍ରସଙ୍ଗରେ ପକ୍ଷୀ ଉପମାର ପ୍ରୟୋଗ ବିଶେଷ ଚିତ୍ତାକର୍ଷକ ହୋଇ-ଥାଏ । ଗହ୍ଣର ବିଲରେ ମୟୂର ପକ୍ଷୀ ଝାଡ଼ିବା ସହିତ ସେହିପରି ଆକର୍ଷଣୀୟା ରୂପସୀ, ଭେଣ୍ଡିଆ ଦେଖି ପଣତ ଝାଡ଼ିବା ଉପମା ଯଥାଯଥ ହୋଇଅଛି । କେଉଁ ଗୀତରେ ରାଧାଙ୍କୁ କେରାଣ୍ଡି ମାଛ ଓ ଶ୍ରୀକୃଷ୍ଣଙ୍କୁ ପାଣିକୁଆ ସହିତ ଉପମା ଦିଆ ହୋଇଛି—

ଶ୍ରୀକୃଷ୍ଣ ପାଣିକୁଆ ଲମ୍ବିଇ ଲମ୍ବ ଥଣ୍ଟ
ଜଳେ ବୁଡ଼ି ମୀନ ଧଇଲେ ରାଧିକା ପୁଷ୍ପବେଣ୍ଟ ।

ପିଲାକୁ ଖୋଇବା, ଶୋଇବା, ଖେଳ କରିବାବେଳେ ତାର ପକ୍ଷୀ ପ୍ରିୟତାର ଉପଯୁକ୍ତ ଉପଯୋଗ କରାଯାଏ । ସାଧାରଣତଃ ବାଇଚଢ଼େଇ, ବଣି, ବାଦରୀ, ଚିଲ, ହଳଦିବସନ୍ତ, କୁଆଙ୍କୁ ଡକା ଯାଇଥାଏ—

ଧୋ ରେ ବାଇଆ ଧୋ
ଯେଉଁ କିଆରେ ଗହଳ ମାଣ୍ଡିଆ
ସେଇ କିଆରେ ଶୋ ।

କୋକ ବାଇନନାରେ ମୋ ବୋଲଟି ଶୁଣ୍
ବିଲର ମାଛ ଚିଲ ଖାଇଲା ଦାହଡ଼ି ଝଣ୍ଟିଏ ବୁଣ୍

ଦଉଡ଼ି ଖଣ୍ଡିଏ ବୁଣ୍‌ରେ ନନା ଫାଶ ଗୋଟିଏ କର୍
ଫାଶ ଗୋଟିଏ କରସାରି ଚଢ଼େଇମାନଙ୍କୁ ଧର୍ ।

ଲୁଚକାଳି ଖେଳର ଚୋରବଛାବଛିରେ ପକ୍ଷୀ ଶବ୍ଦକଳ୍ପର ବ୍ୟବହାର ହୋଇଥାଏ । ଜଣକ ଉପରେ ଗୋଟିଏ ୨ ଶବ୍ଦ ପକାଉଁ ପକାଉଁ ଯାହା ଉପରେ କୋଡ଼ ଅର୍ଥାତ୍ ଶେଷ ଶବ୍ଦଟି ପଡ଼େ, ସେ ହୁଏ ଚୋର—

କାଠିକି କାଠି
ଚଢ଼େଇ ଦଉଟି ଠୁକାଠୁକି
ଗୋଟିଏ ମଲା
ଗୋଟିକ ଉପରେ କୋଡ଼ ପଡ଼ିଲା ।

ଗଙ୍ଗେଇ ପୋଖରୀରେ ମାଛ ଝାମ୍ପି ପଡ଼େ, ପୁଣି ଉଡ଼ି ଉଡ଼ିଯାଏ । ତା ପ୍ରତି ପିଲାମାନଙ୍କର ଗଭୀର ଶ୍ରଦ୍ଧା ପ୍ରକାଶ ପାଇଅଛି—

ଗଙ୍ଗେଇ, ମୋ ପାଇଁ ମୁନ୍ଦେ ବୁଡ଼
ତତେ ଦେବି ଛେନା ଗୁଡ଼ ।

ଗେଣ୍ଡାଳିଆ ଏକ ଦୂରବର୍ତ୍ତୀ ପକ୍ଷୀ, ତା ସହିତ ପଲ୍ଲୀବାସୀର ସମ୍ପର୍କ କ୍ଷୀଣ । କିନ୍ତୁ ତାର ଉଲ୍ଲେଖ ମଧୁର ଓ କରୁଣ ସ୍ମୃତିର ଆଲୋଡ଼ନରେ; ଦଳବାନ୍ଧି ସେମାନେ ଶରତ୍ ଆକାଶରେ ଉଡ଼ି ଯାଉଥିବାବେଳେ ବରଜାତି ଯାଉଛନ୍ତି ବୋଲି କୁହାଯାଏ, ଗେଣ୍ଡାଳିଆର ଛବି ସ୍ମୃତିସମୁଦ୍ରକୁ ମନ୍ଥନ କରିଦିଏ—

ଉଡ଼ିଗଲା ଗେଣ୍ଡାଳିଆ
ଗାଧୁଆ ତୁଠରେ ପହଡ଼େ ଠିଆ, ଭଉଜ ବୋହୂ
ଆଉ କି ହୋଇବ ଝିଅ ?

କେତେବେଳେ ଗେଣ୍ଡାଳିଆର ପକ୍ଷ ଶୁଭ୍ରତା ଦେଖି ଗଜାମୁଗଙ୍କ ବଜନ୍ଦଯାତ୍ରା ମନେ ପଡ଼ୁଛି ତ, କେତେବେଳେ ତାର ଡେଣାଝଡ଼ା ଦେଖି ହତଭାଗିନୀ ଜେମାଦେଈଙ୍କ କ୍ରନ୍ଦନ ମନେ ପଡ଼ିଯାଇଛି । ବୃଦ୍ଧବିବାହରେ ଅସହାୟା ଯୁବତୀର ଅଶ୍ରୁ ସେଦିନ ଲୋକକବିଙ୍କୁ ଉଦ୍‌ବେଳିତ କରିଛି ।

ଅନ୍ୟ କେତେକ ପକ୍ଷୀ ଲୋକସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି ।

**କାକ—**

ରୂପ ସୁନ୍ଦର ନୁହେଁ, ସ୍ୱର କର୍କଶ, ଅମେଧ୍ୟ ଆହାର କରେ । ତଥାପି ବାୟସ ପ୍ରତି ଗଭୀର ଶ୍ରଦ୍ଧା ପ୍ରକାଶିତ ହୋଇଅଛି ।

ବିଷ୍ଣୁଙ୍କ ବାହନ ଗରୁଡ଼ ଅଭିଶପ୍ତ ହୋଇ କାକ ରୂପରେ ଭୂମଣ୍ଡଳରେ ତିନିଯୁଗ ବିହାର କରିଥିଲା । ସେ ଧାର୍ମିକ ବ୍ୟକ୍ତିମାନଙ୍କ କୀର୍ତ୍ତି ନିତ ନିତି ଧର୍ମରାଜଙ୍କୁ ଜଣାଉଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ଦୀର୍ଘଜୀବୀ କାକରୂପୀ ସେହି ଗରୁଡ଼ଠାରୁ ବଡ଼ ଦେଉଳତୋଳା ସମ୍ପର୍କରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ସେ କଳ୍ପବଟରେ ବସି ଯୋଗସାଧନା କରୁଥିଲା । ସେତେବେଳେ ସେ ସ୍ୱର୍ଗ ଓ ମର୍ତ୍ତ୍ୟକୁ ଆବୋରି ରହି ବହୁ ବ୍ରହ୍ମାଙ୍କର ଜନ୍ମ ମୃତ୍ୟୁ ସମ୍ବାଦ କହୁଥିଲା । ସେଇ ଉପାଖ୍ୟାନକୁ ଅବଲମ୍ବନ କରି ଲୋକକବି ଗାଇଛନ୍ତି—

କଳ୍ପବଟ ତଳେ ଭୁଷଣ୍ଡି କାକ ଥିଲା
ମଞ୍ଚ ମଣ୍ଡଳରେ ପ୍ରଭୁ କାଏ ସେ ଡାକ ଦେଲା
ଏକା ପ୍ରଭୁ ନାମ ଧରି ବସିଛି
ଯୁଗ ତ ପାହିଗଲା ହେ ।

ସେହି କାକ ଶେଷରେ ବିଷ୍ଣୁକୁଣ୍ଡରେ ସ୍ନାନ କରି ମୁକ୍ତ ହୋଇ ସ୍ୱର୍ଗପୁରକୁ ବାହୁଡ଼ି ଗଲା ।

ମତାନ୍ତରରେ ଭୁଷଣ୍ଡି ବୋଲି ଜଣେ ଋଷି ଥିଲେ । ସେ କାକ ରୂପ ଧରି ବିଷ୍ଣୁଙ୍କ ଉଚ୍ଛିଷ୍ଟ ଖାଇଲେ, ରୋହିଣୀ କୁଣ୍ଡରେ ସ୍ନାନ କରି ଚତୁର୍ଭୁଜ ହୋଇ ବିଷ୍ଣୁତ୍ୱ ପ୍ରାପ୍ତ ହେଲେ । ଭୁଷଣ୍ଡି କାକ ସହସ୍ରମୁଖ ବ୍ରହ୍ମା, ଶତମୁଖ ବ୍ରହ୍ମାଙ୍କର ଜନ୍ମ ମରଣ ଦେଖିଥିଲା, ସେ ଚତୁର୍ମୁଖ ବ୍ରହ୍ମାଙ୍କୁ ପାସଙ୍ଗରେ ପକାଇ ନ ଥିଲା ।

କାକ ପଲ୍ଲୀବଧୂର ଏକାନ୍ତ ବିଶ୍ୱସ୍ତ ପକ୍ଷୀ । ଧର୍ମପରମ୍ପରାରେ ମହିମାନ୍ୱିତ ହୋଇ ସେ ହୋଇଛି ସତ୍ୟବାକ୍ । ପଲ୍ଲୀବଧୂ ତା ଲାଗି ତିନି ଭାଗରେ ଆଧାର ବାଢ଼େ; ଗୋଟିଏ ଭାଗ ସହିତ ତାର ମନର କଳ୍ପନା ସଂଶ୍ଳିଷ୍ଟ ଥାଏ—ସେ ହେଉଛି ପ୍ରବାସୀ ପ୍ରିୟଜନଙ୍କ ଆଗମନ କମ୍ବା କୁଶଳ ସମ୍ବାଦଜିଜ୍ଞାସା । ପଲ୍ଲୀବଧୂ ତାକୁ ସ୍ନେହରେ କାକପୋଇ ବୋଲି ଡାକେ । କୋଇଲି ନୁହେ, କାକ ହିଁ ତାର ଦୂତ—

କୁଆ କାଆ କଲେ ଆଧାର ଦେବି
ସପନେ ଭେଟିଲେ ସତ କରିବି ।

ଦୀପାବଳୀ ଅମାବାସ୍ୟା ପାହାନ୍ତିଆରେ ପିଲାମାନେ କୁଆସଜ ବା କୁଆ-ଚକ୍‌କଣ ହୁଅନ୍ତି । ମାଆମାନେ ସେମାନଙ୍କୁ ହଳଦି, ତେଲ, କଜ୍ଜଳ ଲଗେଇ ସଜବାଜ କରନ୍ତି । ସେମାନେ କୁଲା ବାଡ଼େଇ ଗାଆଁଯାକ ବୁଲି ପାଟି କରି କହନ୍ତି—

ଓଡ଼ଶ ମଶା ସାଇପଡ଼ଶା
ଗୁଡ଼ ପଳାଅ, ଗୁଡ଼ ପଳାଅ ।

ସ୍ତ୍ରୀ ଲୋକମାନେ ପିଲାମାନଙ୍କ ଉପରକୁ ପାଣି ଫୋପାଡ଼ନ୍ତି—ଦୀର୍ଘାୟୁ କରିବା ଲାଗି ମା'ଆମାନଙ୍କର କଲ୍ୟାଣ ବୃଷ୍ଟି ଏ ।

ଚଉରାମୂଳେ ବୋଇତ, କୋଠି, ଜଗନ୍ନାଥ ବଳଭଦ୍ର ସୁଭଦ୍ରା, ସୁଅଁରି ପାଲଙ୍କି ଓ ନାନା ଅଳଙ୍କାରପତ୍ରର ଚିତା ଲେଖା ହୁଏ । ତା ଉପରେ ପେଡ଼ି ପେଟରା, ବାସନକୁସନ ଆଦି ରଖା ହୋଇ ବନ୍ଦାପନା କରାଯାଏ । ଶାଶୂ ବୋହୂକୁ ପଚାରେ —ବୋଇତରେ କଣ ଆସିଛି ?

ବୋହୂ କହେ—ମୁଗ ବିରି ଆସିଛି, ଟଙ୍କା ସୁନା ଆସିଛି, ବାସନକୁସନ, ଅଳଙ୍କାରପତ୍ର ଆସିଛି ।

ଶାଶୂ କହେ—ସେ ସବୁ ନେଇ ଘରେ ଥୁଅ । ହୁଳହୁଳି ପଡ଼େ, ଘିଅ ଦୀପରେ ବନ୍ଦାପନା ହୁଏ । ତାପରେ ସାଧବ ବୋହୂମାନେ ବୋଇତ ବନ୍ଦେଇ ଯାଆନ୍ତି । ଦୀପାବଳୀ ବାସି ଦିନ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହୁଏ ।

କୁଆ ଉଠିଲେ ଦେହର ଚକ୍‌କଣ ହରଣ କରିଦେବ ବୋଲି ପାହାନ୍ତିଅରୁ ପିଲାମାନେ କୁଆଚକ୍‌କଣ ହୁଅନ୍ତି । ସେହିଦିନ ବୋଇତରେ ଶୀତ ଆସି ପହଞ୍ଚି-ଥାଏ । ସେହି ଦିନରୁ କୁଆ ଦିହ ଅଧିକ ଚକ୍‌କଣ ଦିଶେ, ମଣିଷଙ୍କ ଦିହ ଖରଖିଆ ହୋଇଯାଏ । ତାପରେ ଚଇତ ମାସରେ ଶୀତ ବୋଇତକୁ ଯାଏ ।

କାକ ଟେରା ହେବାର ଗୋଟିଏ କାହାଣୀ ପ୍ରଚଳିତ ଅଛି । ବନବାସ କାଳରେ ସୀତା ମାଂସ ଶୁଖାଇଥିଲେ । କାକ ଖାଇଯିବାରୁ ସେ ତାକୁ ବାରଣ କଲେ । କାକ କ୍ରୁଦ୍ଧ ହୋଇ ସୀତାଙ୍କ ବକ୍ଷ ବିଦୀର୍ଣ୍ଣ କଲା । ରାମଚନ୍ଦ୍ର କ୍ରୋଧରେ କାକକୁ ବିନାଶ କରିବା ଲାଗି ଶର ନିକ୍ଷେପ କଲେ । ସେ ପ୍ରକୃତରେ କାକ ନୁହେଁ, ଇନ୍ଦ୍ରଙ୍କ ଦୁଷ୍ଟ ପୁତ୍ର । ଦେବତାଙ୍କ ପ୍ରାର୍ଥନାରେ ରାମ ତାଙ୍କ ପ୍ରତି କରୁଣାର୍ଦ୍ର ହେଲେ । କିନ୍ତୁ ତାଙ୍କ ଶର ଅମୋଘ, କାକର ଚକ୍ଷୁକୁ ବିଦ୍ଧ ଦେଲା ।

କାକର ବୁଦ୍ଧି ଅଳ୍ପ । ତା ବସାରେ କୋଇଲି ଡିମ୍ବ ରଖିଦେଇ ଆସେ । କାକ ନ ଜାଣି ପାରି ତାହା ଫୁଟାଇ ଦିଏ । ଡେଣା ଲାଗିଲାକ୍ଷଣି କୋଇଲି ଛୁଆ କୋଇଲିବସାକୁ ଉଡ଼ିଯାଏ । କୋଇଲିର ଅନ୍ୟ ନାମ ପରଭୃତ । ସେ କାକ ଦ୍ୱାରା ପାଳିତ ହୋଇଥାଏ ।

କାକ ପକ୍ଷୀଙ୍କ ମଧ୍ୟରେ ସବୁଠାରୁ ଦୀର୍ଘଜୀବୀ । ସେ ନ'ଶ ବର୍ଷ ବଞ୍ଚେ ବୋଲି ଲୋକବିଶ୍ୱାସ ପ୍ରଚଳିତ । କାକର ଚାରିତ୍ରିକ ଲୋକକବିଙ୍କ ଦୃଷ୍ଟି ଆକର୍ଷଣ କରିଅଛି; କଲୁରିବେଣ୍ଟ ଗଳ୍ପରେ କମାର ଅକାରଣେ ନିରୀହ କାକଟିକୁ ବିନାଶ କରିଅଛି । ତାର ଅସାଧ୍ୟ ସାଧନା କମାରର ସଇତାନରେ ବ୍ୟର୍ଥ ହୋଇ ଯାଇ-ଅଛି—ଦେ କମାର ଦେ ଦା, କାଟେଁ ଘାସ, ଖାଉ କାଳୀ ଗାଈ ଦେଉ ଦୁଧ,

ପିଉ ହରଣ ଦେଉ ଶିଙ୍ଘ, ଖୋଳୁ ମାଟି, ଗଢ଼ୁ କୁମ୍ଭାର କଳସ ଗୋଟି, କାଢ଼େ ପାଣି ଧୁଏ ଅଣ୍ଟ, ଧାଇଁ ଧାଇଁ ଖାଏ କଲୁର ବେଣ୍ଟ—ଆମର ମର୍ମ ସ୍ପର୍ଶ କରେ; ମଣିଷ ଏହି ଗଳ୍ପରେ ନିଷ୍ଠୁରତମ, ଜୀବ ମଧ୍ୟରେ ସେ ଶିବ ଦେଖି ପାରି ନାହିଁ ।

ଡାମରା କୁଆ ପରଛିଦ୍ରାନ୍ୱେଷୀ । ଏ ସମ୍ପର୍କରେ ଗୋଟିଏ ଗଳ୍ପ ପ୍ରଚଳିତ । ପାଣିକୁଆ ଥରେ ଡାମରା କୁଆକୁ ନିମନ୍ତ୍ରଣ କଲା । ଖୁବ୍ ଅତିଥି ସତ୍କାର କଲା । ଡାମରା ଖୋଜି ଖୋଜି ବନ୍ଧୁର କୌଣସି ଦୋଷ ପାଇଲା ନାହିଁ । କିନ୍ତୁ ଦୋଷ ଦେଖାଇବା ତ ତାର ପ୍ରକୃତି । ବିଦାୟବେଳେ ସେ ତାର ପ୍ରିୟ ବନ୍ଧୁକୁ କହିଲା—ତୁମର ଏଠି ସବୁ ଭଲ, କିନ୍ତୁ ଲାଞ୍ଜ ଟେକି ଯୋଉ ପାଣି ପିଅନ୍ତ, ଏଟା ବଡ଼ ନିନ୍ଦାର କଥା !

କୁଆ ବୋବେଇଲେ କୁଣିଆଁ ଆସେ ବୋଲି ଦୃଢ଼ ଲୋକବିଶ୍ୱାସ ପ୍ରଚଳିତ ରହିଅଛି । କାକର ଅପରିଚ୍ଛନ୍ନତା ଓ ଚତ୍ରାର ଚର ନିନ୍ଦନୀୟ ହୋଇଅଛି; 'ଡାମରା କାଉର ହାଉଆ ପାଟି', 'ଆହାର ଫିଙ୍ଗିଦେଲେ କେତେ କାଉ ଯୁଟିବେ' ବୋଲି ବଡ଼ ଅବହେଳାରେ କାକର ଚରିତ୍ରକୁ ବ୍ୟବହାର କରାଯାଏ । ତଥାପି କାକ ସତ୍ୟବାଦୀ, ପଲ୍ଲୀର ବିଶ୍ୱସ୍ତତମ ପକ୍ଷୀ—ତା ନାଆଁରେ ବହୁ ଗୀତ ରଚିତ; ଡାମରା କାଉ ରେ ଡାମରା କାଉ, ଉଞ୍ଚ ପରବତେ ବୋବାଉ ଥାଉ ଇତ୍ୟାଦି ।

**କୋଇଲି —**

କୋଇଲି କୁଆ ପରି ଏକାନ୍ତ ପଡ଼ୋଶୀ ନୁହେଁ । କୁଆ ପରି ସେ ଗୃହରେ ବସେନାହିଁ ବା ସକାଳୁ ଦ୍ୱାରେ ଦ୍ୱାରେ ଡାକ ଉଡ଼ିଯାଏ ନାହିଁ । ତଥାପି ସେ ବସନ୍ତ ଦୂତ, ଗାୟକ ପକ୍ଷୀ, ସ୍ୱରଦାଗରୁ କୁଆଠାରୁ ଉଚ୍ଚ ସ୍ଥାନର ଅଧିକାରୀ; ଲୋକ କଳନାରେ—

'କାଉ କୋଇଲି ଏକା ବର୍ଣ୍ଣ
ରାବ ବେଳେ ଭିନ୍ନ ଭିନ୍ନ ।'

ଲୋକକବି କୋଇଲିର ସଙ୍ଗୀତ ପ୍ରତି ପ୍ରୀତି ପ୍ରକାଶ କରିଛି ଓ ତୋଟା ଗହଳରେ ତାର ସ୍ଥାନ ନିର୍ଦ୍ଦେଶ କରିଛି ।

'କୋଇଲି ବୋବାଏ ସୁସ୍ୱରେ ଶୁଭେ ଗଲା
ତୋତେ ଶୋଭିବନ କଲା ଯେ କୋଇଲି
ବଉଳ ପୁଷ୍ପମାଳା ।'
'କୋଇଲି ବେକରେ ଧାଡ଼ି ଯେ ଧାଡ଼ି ଚିତା
ତୋତେ ଶୋଭିବନ କାହ୍ନି ରେ କୋଇଲି
ମଧୁବନ ତୋଟା ।'

କୋଇଲି ଡିମ୍ବ ଫୁଟାଇ ନ ପାରି କୁଆ ବସାରେ ରଖିଦେଇ ଆସେ । ତେଣୁ ସେ 'ଜାତି ବଣ୍ଟାଳିଆ' ବୋଲି ଲୋକବିଶ୍ୱାସ ପ୍ରଚଳିତ ।

ସେ ଗହନ ବନବାସୀ; ରାମ ଲକ୍ଷ୍ମଣ ସୀତାଙ୍କ ସମ୍ବାଦ ତାଠାରୁ ଅଧିକ ବିଶ୍ୱସ୍ତଭାବେ କିଏ ଦେଇପାରିବ ?

'କହ କହ କୋଇଲି ବନର ବାରତା
ଭଲ ଅଛନ୍ତି ରାମ ଲକ୍ଷ୍ମଣ ସଙ୍ଗରେ ଯେନ ସୀତା ?'

**ବଗ—**

ବଗକୁ ଦୁର୍ବଳ, କର୍ମକୋଡ଼ି, ଭୋଜନୀ ସହିତ ତୁଳନା କରି ବ୍ୟଙ୍ଗ କରାଯାଇଛି, ଲୋକପ୍ରଚଳିତ ଏକ ନାଟ୍ୟରୀତିର ଫର୍ଦ୍ଦପରେ—

'ବଗୁଲି, ଧାନ କୁଟିବୁ ?'
'ମୋ ନଳିଗୋଡ଼ ଭାଙ୍ଗିଯିବ ।'
'ବଗୁଲି, ମାଛ ଖାଇବୁ ?'
'ତେହିଁକି ଆଗ ।'

ବଗ ଗୋଟିଏ ଅରସିକ ପକ୍ଷୀ ବୋଲି ଲୋକଙ୍କର ବିଶ୍ୱାସ । ତେଣୁ ସେ ଶୁଆର ଶ୍ରୀ ବା ସଙ୍ଗୀତର ମୂଲ୍ୟ ବୁଝିପାରେ ନାହିଁ । ଶାଶୂଘରକୁ ଯାଉଥିବା ଝିଅ ନିଜକୁ ଶୁଆ, ଶାଶୂଘର ଲୋକଙ୍କୁ ବଗ ସହିତ ତୁଳନା କରିଛି ।

ଡିଙ୍ଗି, ଚକୁଳି ସଙ୍ଗେ ବଗକୁ ଯୋଗକରି ଅସଙ୍ଗତିର ଦୃଷ୍ଟାନ୍ତ ଦିଆହୋଇଥିବାବେଳେ ପୁଣି ଅନ୍ୟ ଏକ ହଳିଆ ଗୀତରେ ବଗ ବଗୁଲିର ସୁଖ୍ୟାତି କରାହୋଇଛି । ସେ ରାମଙ୍କୁ ସୀତା ହରଣବାର୍ତ୍ତା ଦେଇଥିଲା ଓ ରାମ ତୁଷ୍ଟହୋଇ ତାକୁ ବର ପ୍ରଦାନ କରିଥିଲେ; ସେହି କାଳରୁ ବଗର ଖାଦ୍ୟସମସ୍ୟା କେବେ ଜଟିଳ ହୋଇ ନାହିଁ ।

'ବଗ ତ ପଚାରଇ ବଗୁଲି ମୁଖ ଚାହିଁ
ଏ ବାଟେ କେ ଗଲା ଲୋ ଦେଖିଥିଲୁ ସହି ?'
'ମୁହିଁ ତ ପକ୍ଷୀ ଜନ୍ତୁ ତରୁ ତଳେ ବାସ
ଆହାର ନିମନ୍ତେ ଲୋ କରିଥିଲି ଆଶ
ପଡ଼ିଗଲା ଦୃଷ୍ଟି ଲୋ ଦେଖିଲି ଅନାଇ
ଲାଗିଛି ପୁଷ୍ପକ ରଥେ ବିମାନ
ଏ ବାଟେ ବାଇଦେଲା ।'

'ଭଲ ଲୋ ବଗୁଲି କହିଦେଲୁ ମତେ
ପ୍ରତିଦିନ ମୀନ ଲୋ ଆହାର ମିଳୁଥିବ ତତେ ।'

ବ୍ୟାଧ ଶରରେ ନିହତ କ୍ରୌଞ୍ଚ ଦର୍ଶନରେ ବାଲ୍ମୀକିଙ୍କ କବିତାର ସ୍ଫୁରଣ ହୋଇଥିଲା – ତାର ପରିଣାମ ରାମାୟଣ । ଲୋକକବିର ହୃଦୟ ସେହିପରି ବକର ବିନାଶରେ ବେଦନାବ୍ୟାକୁଳ ହୋଇଅଛି—ମାତୃହରାର ଦୁଃଖ ତାର ମର୍ମକୁ ଦଗ୍ଧ କରିଛି । ଗଭୀର ସମବେଦନା ଓ ଆଶ୍ୱାସନାରେ ତାହା ରୂପ ପାଇଛି ।

ଏଠି ବ୍ୟାଧ ନାହିଁ, ଅଛି ତାର ପ୍ରତୀକ ବାଘୁଟି । ଶର ନାହିଁ, ଅଛି ବାଟୁଳି; ଲୋକକବି ବାଲ୍ମୀକିଙ୍କ ପରି ଅଭିଶାପ ଦେଇନାହାନ୍ତି, ବ୍ୟଥିତକୁ ଆଶ୍ୱାସନା ଦେଇଛନ୍ତି ।

ଏ ଗୋଟିଏ ଗାଥାଗୀତିକା, ପ୍ରତୀକାତ୍ମକ, ଯେ କୌଣସି ମାତୃହରା ପ୍ରତି ପ୍ରଯୁଜ୍ୟ ।

'ବଗ ଯାଇଥିଲା ବଗ ବଣକୁ ଲୋ
ବଗୁଲି କାଟଇ ବେଣା
କୁଆ ଚେଙ୍ଗେଡ଼ ମାଇଲା ବାଟୁଳି
ଛିଡ଼ିଗଲା ଦୁଇ ଡେଣା

ମୋ ବଗୁଲି, କାନ୍ଦନା ଲୋ
ତୋ ମାଆ କାଲି ଆସିବ ସିନା
ତୋ ମାଆ ଯାଇଛି ଗାଈ ଚରେଇ
ଅଇଲେ ଖାଇବୁ ପେଟ ପୂରେଇ
ବଣରୁ ଆଣିବ ପାଚିଲା ବେଲ
ଖାଇପିଇ କରି ହୋଇବୁ ଗେଲ ।

ବଗୁଲିର ମୃତ୍ୟୁ ପରେ ବଗର ଦୁର୍ଦ୍ଦଶା ଓ ତା ପରବର୍ତ୍ତୀ ବହୁ କରୁଣ ଦୁର୍ଘଟଣା ଓଡ଼ିଆ ବଗବଗୁଲି କାହାଣୀରେ ରୂପାୟିତ ହୋଇଅଛି— ବଗୁଲି ମଲା, ବଗ ମୁଣ୍ଡ ଚନ୍ଦା ହେଲା, ପୋଖରୀ ପାଣି ପଣ୍ଡୁଆ ହେଲା, ଷଣ୍ଢ ଖଣ୍ଡିଆ ହେଲା, ବରଗଛ ଲଣ୍ଡା ହେଲା, ଶୁଆମାନେ ଟେରା ହେଲେ, ମାଣ୍ଡିଆ ଝଡ଼ି ପଡ଼ିଲା, ବିଲଂ ବାଲି ବଲୁଆ ହେଲେ, ପୁରୋହିତଙ୍କ ପଛଆଡ଼େ ପିଢ଼ା ଲାଗିଲା ଇତ୍ୟାଦି । 'ବକ ଧାର୍ମିକ' କଥାଟି ଓଡ଼ିଶାରେ ଖୁବ୍ ପ୍ରଚଳିତ, ଏକପଦରେ ଯୋଗସାଧକଙ୍କ ପରି ଅଖିବୁଜି ଛିଡ଼ାହେବା, କୀଟପତଙ୍ଗ ଦଳି ହୋଇଯିବେ ବୋଲି ଧୀରେ ଧୀରେ ପାଦ ପକାଇବା ପ୍ରଭୃତିରେ ତଥାକଥିତ ଧର୍ମାଚରଣ ପ୍ରତି ବ୍ୟଙ୍ଗ କରାଯାଇଛି ।

ହଂସ—

ହଂସର ଆହାର ମୃଣାଳ, ବିହାର ପଦ୍ମବନରେ, ମିଶ୍ରିତ ଦୁଗ୍ଧରୁ ଜଳକୁ ଅଲଗା କରି ଦୁଗ୍ଧପାନ କରିବାର ସାମର୍ଥ୍ୟ ତାର ଅଛି—ଲୋକବିଶ୍ୱାସ । ଏହି ସଦ୍‌ଗୁଣ ଲାଗି ସେ ପ୍ରଶଂସିତ । ସରସ୍ୱତୀଙ୍କ ବାହନ, ବ୍ରହ୍ମାଙ୍କ ଯାନ; ପକ୍ଷୀ ସମାଜରେ ହଂସ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଚଞ୍ଚୁ ଚରଣ ଲୋହିତ, ଶରୀର ଧବଳ; ତାର ମନ୍ଥର ଗମନକୁ ବିଦଗ୍ଧ କବି ସୁନ୍ଦରୀର ଗତି ସହିତ ଉପମା ଦେଇଥିଲେ, ସେ ହୋଇଥିଲା ପ୍ରେମର ଦୂତ । ହଂସର ଶ୍ରୀ ଲୋକକବିଙ୍କୁ ମୁଗ୍ଧ କରିଥିଲା । କାନ୍ଦଣା ଗୀତରେ ତାର ଦୃଷ୍ଟାନ୍ତ ମିଳେ—

ମୁହିଁ ସୁନା ହଂସ ଗଳାର ହାର,
ମୋତେ କରିଦେଲ ଘରୁ ବାହାର ।
ଆମେ ଯେତେବେଳେ ଏକା (ଏକାଠି) ବସନ୍ତି
ହଂସ ଦଳ ପରି ଶୋଭା ଦିଶନ୍ତି ।

ହଂସ ଲୋକକବିଙ୍କ ଦୃଷ୍ଟିରେ ଏକ ସାଧାରଣ ପକ୍ଷୀ ନୁହେ । ସେ ଏକ ଗାଥାଗୀତିକାରେ ତାକୁ ଅଲୌକିକ ଶକ୍ତିର ଅଧିକାରୀ କରିଛି । ମାନସସରୋବରରେ ତାର ନୀଡ଼ । ମୋତି ବ୍ୟତୀତ ଅନ୍ୟ କିଛି ଆହାର କରେନାହିଁ । ତାର ଆଚରଣ ଉତ୍ତମ ପ୍ରକୃତିର ମନୁଷ୍ୟ ପରି । ସେ ଚଞ୍ଚୁରେ ଜଳ ଆଣି ସାଧୁ ଚରଣ ଧୌତ କରେ ଓ ତାପରେ ସେହି ଜଳ ପାନ କରେ ।

ଥରେ ପଶ୍ଚିମ ଦେଶର ଜଣେ ରାଜାଙ୍କର ଚକ୍ଷୁ କୋଷ୍ଠବ୍ୟାଧିରେ ବିନଷ୍ଟ ହୋଇଗଲା । ମାନସ ସରୋବରବାସୀ ହଂସ ହଂସୁଣୀଙ୍କ ମାଂସ ଖାଇଲେ ରାଜା ଆରୋଗ୍ୟ ଲାଭ କରିବେ ବୋଲି ଜଣେ ବୈଦ୍ୟ ଆସି ପରାମର୍ଶ ଦେଲେ । ରାଜାଙ୍କ ଆଦେଶରେ ଜଣେ ବ୍ୟାଧ ଆସି ସେହି ଯୁଗ୍ମ ହଂସଦମ୍ପତିଙ୍କୁ ଧରିବାକୁ ଚେଷ୍ଟା କଲା । ହଂସ କହିଲା—ଆମକୁ ଦେଖିବା ମାତ୍ରେ ରାଜାଙ୍କ ଚକ୍ଷୁ ଭଲ ହୋଇଯିବ । ବିନାଶ କରିବା ପ୍ରୟୋଜନ କଣ ?

ପ୍ରକୃତରେ ଏଇ ଧାର୍ମିକ ପକ୍ଷୀ ଦୁଇଟିକୁ ଦେଖିବା ମାତ୍ରେ ରାଜାଙ୍କ ଚକ୍ଷୁ ଫିଟିଗଲା । ବିପନ୍ନା ସୁନେଇ ରୂପେଇ ହଂସଙ୍କ ହାତେ ପିତାମାତାଙ୍କ ନିକଟକୁ ସମ୍ବାଦ ପ୍ରେରଣ କରିଛନ୍ତି—

ହଂସ ରେ ହଂସ,
ବାପାଙ୍କ ରାଇଜୁଁ ହଂସ ଆସିଛ
ବାଉଁଶ ଗଛର ପତ୍ରର ଯେତେ,
ବାପାଙ୍କୁ ବୁଝାଇ କହିବ ତେତେ ।

**କପୋତ କପୋତୀ—**

ଅଲଗା ଅଲଗା କରି କୁଟି ଆଣିବା ଲାଗି କପୋତୀ ପୁଅଝିଅଙ୍କୁ ଧାନ ଦେଇଥିଲା । ଝିଅ ତଳେ କୁଣ୍ଡା ଉପରେ ଗୁଣ୍ଡଳ ରଖି ଆଣିଥିଲା । ପୁଅ ଠିକ୍ ତାର ବିପରୀତ କରିଥିଲା । କିନ୍ତୁ ଏସବୁ ଦେଖି ବୁଝିବାକୁ ମାଆର ଧୈର୍ଯ୍ୟ ନ ଥିଲା । ସେ ଭାବିଲା—ପୁଅ କେବଳ କୁଣ୍ଡା ଆଣିଛି । ସେ ରାଗିଯାଇ ଠିଙ୍କି ଭର୍ତ୍ତି ରେ ପୁଅ ମୁଣ୍ଡକୁ ରଖି କୁଟିଦେଲା । ପରେ ଅବଶ୍ୟ ସେ ନିଜର ଭୁଲ୍ ବୁଝିପାରିଲା । କିନ୍ତୁ ସେତେବେଳକୁ ନେଡ଼ ଗୁଡ଼ କହୁଣିକୁ ବୋହି ଯାଇଥିଲା । ସେହି କାଳରୁ ସେ ବିଳପୁଚି; ସେ ବିଳାପ ଶେଷ ହେଉନାହିଁ କି ହେବନାହିଁ । କାରଣ ସନ୍ତାନହରା ମାତାର ହୃଦୟ ବେଦନା ଟିସ । କପୋତୀର କରୁଣ ସ୍ୱର ଶୁଣିଲା ମାତ୍ରେ ଏଇ କାହାଣୀଟି ମନେ ପଡ଼ିଯାଏ ।

ସିଂହଳରେ ଏହି ଗଳ୍ପ ଭିନ୍ନ ରୂପରେ ପ୍ରଚଳିତ । କପୋତୀ ଝରାରେ କେତେକ ଫୁଲ ପକାଇ ଦେଇ ପୁଅକୁ କହିଲା— ଜଗିଥା । ଫୁଲସବୁ ଶୁଖି ଭୂଇଁରେ ଲାଗିଗଲା । ସେସବୁ ପୁଅ ନଷ୍ଟ କରିଦେଇଛି ଭାବି କପୋତୀ ରାଗରେ ପୁଅକୁ ମାରି ପକାଇଲା । ବର୍ଷା ହେଲା । ଫୁଲ ସବୁ ଜୀଇଁ ଉଠିଲା । କପୋତୀ କିନ୍ତୁ ପୁଅକୁ ଆଉ ଫେରି ପାଇଲା ନାହିଁ । ସେହି ଦିନରୁ ସେ କାନ୍ଦୁଛି—ମିମଲ୍ ଲଦନ୍ ଦାରୁ ନୋ ପୁବୋରୁ ପୁତା ପୁ-ପୁ-ପୁ । ମୁଁ ଫୁଲ ଫେରି ପାଇଲି, କିନ୍ତୁ ପୁଅକୁ ପାଇଲି ନାହିଁ । ଏ ଠିକ୍ ଆମର 'ଉଠ୍ ରେ ପୁତା ମାଣ ପୂରିଲା' ପରି ।

କପୋତକପୋତୀ ସମ୍ପର୍କୀୟ ଅନ୍ୟ କାହାଣୀଟି ସତୀଦାହ ପ୍ରଥା ସ୍ମରଣ କରେଇ ଦିଏ ।

ଜଣେ ବାଣୁଆ ନଳରେ ନଳ ଯୋଡ଼ି ଗଛରେ ବସିଥିବା କପୋତକୁ ଧରିଲା । କପୋତୀ ବିକଳ ହେବାରୁ କହିଲା—ଯଦି ନିଆଁ ଟିକିଏ ଆଣିଦେବୁ, କପୋତକୁ ଛାଡ଼ିଦେବି । କପୋତୀ ନିଆଁ ଆଣି ଦେଲା; କିନ୍ତୁ ନିଷ୍ଠୁର ବାଣୁଆ ସତ୍ୟ ରକ୍ଷା କଲାନାହିଁ । ସେ ନିଆଁ ଜାଳି ସେଥିରେ କପୋତକୁ ପକାଇ ଦେଲା । କପୋତୀ ବାହୁନି ବାହୁନି ନିଜେ ଆସି ସେଇ ନିଆଁରେ ପଡ଼ିଲା ।

ସ୍ୱାମୀର ଚିତାଗ୍ନିରେ ସହଧର୍ମିଣୀ ସତୀ ଜୀବନ୍ତ ପୋଡ଼ିହୋଇ ମରିବାର ପ୍ରତୀକାତ୍ମକ ଛନ୍ଦ ଗାଥାଗୀତିକାରେ ଦିଆହୋଇଛି । କାର୍ତ୍ତିକ ମାସରେ ଏହି ଗୀତଟି ଚଉରାମୂଳେ ବିଧବାମାନେ ଗାଇଥାନ୍ତି । ବୈଧବ୍ୟରେ ତିଳେ ତିଳେ ପୋଡ଼ିହୋଇ ମରିବା ଅପେକ୍ଷା ସତୀହେବା ଭଲ । କାରଣ ମୃତ୍ୟୁରେ ସତୀ ଅମରତ୍ୱ ଲାଭ କରେ ଓ କେବେ ବୈଧବ୍ୟ ଦୁଃଖ ଭୋଗ କରେନାହିଁ—ଏଇ ବିଶ୍ୱାସ ପ୍ରଚଳିତ ।

ଶବର ଗୃହେଁ ତ ପୁଷ୍ପ ବିମାନ
ଦୁଇ ପକ୍ଷୀ ଗଲେ ସ୍ୱର୍ଗ ଭୁବନ ।
× × ×
କାର୍ତ୍ତିକ ମାସରେ ଯେଉଁ ନାରୀ ଗାଏ
ଅଇସୁଲକ୍ଷଣୀ, ବିଧବା ନୁହେ ।

**ଚକୁଆ ଚକୋଇ—**

ଏମାନେ ପ୍ରାଚୀନ କାବ୍ୟରେ ବର୍ଣ୍ଣିତ ଚକ୍ରବାକ ଚକ୍ରବାକୀ । ପମ୍ପା ସରୋବରରେ ମିଳନାନନ୍ଦରେ ବିଭୋର ହୋଇ ସେମାନେ ରାମଚନ୍ଦ୍ରଙ୍କ ସୀତା ସମ୍ପର୍କୀୟ ପ୍ରଶ୍ନର ଉତ୍ତର ଦେଇ ନ ଥିଲେ । ରାମଚନ୍ଦ୍ରଙ୍କ ଅଭିଶାପ ଯୋଗୁଁ ଯୁଗ ଯୁଗ ଧରି ଚକ୍ରବାକ ଚକ୍ରବାକୀ ରାତ୍ରିବିଚ୍ଛେଦ ଦୁଃଖ ଭୋଗ କରି ଆସୁଛନ୍ତି । କେଉଁ କେଉଁ ପାପ କଲେ କି କି ବିଚ୍ଛେଦ ହୁଏ, ସବୁଠାରୁ କେଉଁ ବିଚ୍ଛେଦ ଅଧିକ ଦୁଃଖ-ଦାୟକ, ତାହା ଉଦ୍ଧୃତ ହଳିଆ ଗୀତରେ ବର୍ଣ୍ଣିତ ହୋଇଅଛି—

ଚକୁଆ ପଚ୍ଚରଇ ଚକୋଇକି ଗୁହିଁ
କେଉଁ ଜନ୍ମେ କେଉଁ ପାପ କଲି ପ୍ରାଣସହି
ଦଇବ ହରିଆ ଜୁତ୍ୟା ଭିଆଇଲା
ଏ ଯୁବା ବୟସେ ପ୍ରାଣ ଲୋ ମିତଣୀ ବିଚ୍ଛେଦ ଘଟାଇଲା ।
କି କି ପାପ କଲେ ନାରୀ ପୁରୁଷ ହୋ ବିଚ୍ଛେଦ
ପିତାମାତା ସେବା ହୀନ ଗୁରୁ ଯେ ବାନ୍ଧବ
ଦେବାଦେବୀ ପୂଜା ଯେବେ ନ କରୁ ଲୋ ସହି
କୁଳ ଦେବତା ନ ପୂଜି ପ୍ରାଣ ଲୋ ମିତଣୀ ବିଚ୍ଛେଦ ହୁଅଇ ।

**ପାରା—**

ପାରା ପୋଷିଲେ ଲକ୍ଷ୍ମୀ ସୁପ୍ରସନ୍ନା ହୁଅନ୍ତି ବୋଲି ଲୋକବିଶ୍ୱାସ ପ୍ରଚଳିତ । ପାରା ସମ୍ବାଦବାହକ, ଶାନ୍ତିର ଦୂତ । ତାର ଦୃଷ୍ଟି ତୀକ୍ଷ୍ଣ । ଲୋକଗଳ୍ପର ନାୟକକୁ ବିପତ୍ତି ପଡ଼ିଥିଲେ ପାରା ସାହାପକ୍ଷ ହୋଇଥାଏ । ସେ ବନ୍ଧୁମାନଙ୍କ ସାହାଯ୍ୟରେ ବୁଣା ହୋଇଥିବା ଭରଣ ଭରଣ ସୋରିଷ ଗୋଟେଇ ଆଣି ଦେଇ ନାୟକକୁ ମୃତ୍ୟୁମୁଖରୁ ରକ୍ଷା କରିଥାଏ ।

ପାରା କିନ୍ତୁ ସୁଚତୁର ନୁହେ । ସେ ସାହସର ସହିତ ଶତ୍ରୁର ସମ୍ମୁଖୀନ ହୁଏନାହିଁ କିମ୍ବା ପ୍ରବଳ ପକ୍ଷରେ ଉଡ଼ି ପଳାଇ ଯାଇ ଆତ୍ମରକ୍ଷା କରେନାହିଁ । ସେ

ଚକ୍ଷୁ ମୁଦ୍ରିତ କରି ଶତ୍ରୁର ଭୟାବହ ଉପସ୍ଥିତିକୁ ଉପେକ୍ଷା କରେ ମାତ୍ର । ଫଳରେ ସେ ମାର୍ଜାର ବା ସଞ୍ଚାଣର ସହଜ ଶିକାର ହୋଇଥାଏ ।

କଣ୍ଠରେ ତାର ଗୋଧୂଳି ଆକାଶର ଛବିଳଶ୍ରୀ, ସ୍ୱରରେ ଗୁରୁଗାମ୍ଭୀର୍ଯ୍ୟ । ଆକାଶରୁ ଘୋର ବେଗରେ ଖସି ଆସି ବେକ ଫୁଲାଇ ବକମ୍ ବକମ୍ କରି ଘୂରି ବୁଲିବା ଗୋଟିଏ ଚମତ୍କାର ଦୃଶ୍ୟ । ତା ପ୍ରତି ଲୋକକବିର ଗଭୀର ଶ୍ରଦ୍ଧା ପ୍ରକାଶ ପାଇଅଛି—

ଘୁଲୁଣିରେ ଚଲାଇ ଦେଲି ବାହାରଲା ଗୋଡ଼
କି ସୁନ୍ଦର ପାରି ଯୋଡ଼ାଏ ଯାଉ ଅଛନ୍ତି ଉଡ଼ି ।
ଆସ ଆସ ପାରି ଯୋଡ଼ିକ ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ନଡ଼ିଆର ରସ
ପିଇବାକୁ ଦେବି ତୁମକୁ ମହାନଦୀ ପାଣି
ଶୋଇବାକୁ ଦେବି ତୁମକୁ ମାଳୀ ଘର ଖଟଣି
ମାଳୀ ଘର ଖଟୁଲିରେ ଲଗିଛି ପାଟଆ
ହଲାଇ ଦେଲେ ପଡ଼ିଯିବ ଗୋଡ଼ର ଝୁଣ୍ଟିଆ ।

ଲୋଟଣ, ଭୂଷଣ ବୋଲି ଦୁଇଟି ସୁନାର ପାରି; ସେମାନଙ୍କୁ ଅନୁସରଣ କରୁ କରୁ ଲୋକଗଳ୍ପର ନାୟକ ଗୁଣଦେବ ପଥହରା ହୋଇଛି । ଗଳ୍ପର ମୋଡ଼ ବଦଳାଇବାରେ ଏହା ଏକ ପ୍ରବୃତ୍ତି ହୋଇଅଛି; ପୁଣି ସେମାନେ ବିରଞ୍ଚି ଦେଶର ରାଜକନ୍ୟାଙ୍କ ସହିତ ଗୁଣଦେବଙ୍କ ପ୍ରେମର ଏକ ନିମିତ୍ତ ହୋଇଅଛନ୍ତି । କେମା ପାରିଙ୍କୁ ଧରୁ ଧରୁ ସଂକଳ୍ପ କରିଛି—

'ପାରି ବନୋଧିଆ ଯିଏ ହୋଇବ ମୋହର
ସତ୍ୟେଶ୍ୱରୀ ମାଳା ଦେବି ତାହାର ଗଳାର ।'

## ଶୁଆ ସାରୀ—

କଥା ଅଛି—ଶୁଆ ମୂଳ ଶୁଆ କହେ । ଲୋକକଥାରେ ଏମାନଙ୍କ ମାଂସ ଭକ୍ଷଣ ଏକ ପ୍ରବୃତ୍ତିରୂପେ ପ୍ରଚଳିତ ହୋଇଅଛି । ବିମାତା କୋପରେ ବିତାଡ଼ିତ ହୋଇ ରାଜପୁତ୍ର ଦୁଇ ଭାଇ ଅରଣ୍ୟରେ ଆଶ୍ରୟ ଗ୍ରହଣ କରିଛନ୍ତି । ଶୁକପକ୍ଷୀ ମାଂସ ଖାଇଲେ ରାଜା ହେବ, ସାରୀ ମାଂସ ଖାଇଲେ ହସିଲାବେଳେ ମୋତି, କାନ୍ଦିଲା-ବେଳେ ରତ୍ନ ଝଡ଼ିବ ବୋଲି ଶୂନ୍ୟବାଣୀ ଶୁଣାଯାଇଛି । ତାପରେ ଗଳ୍ପର ଗତି ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଅଛି ।

ଶୁଆ ସାରୀଙ୍କର ରୂପ ବା ଗୁଣ ବର୍ଣ୍ଣିତ ହୋଇନାହିଁ । କେବଳ ପଦ ପୂରଣ ଲାଗି ସେମାନଙ୍କ ନାମୋଲ୍ଲେଖ କରାଯାଇଅଛି ।

'ଶୁଆ ସାରୀ ଡାଳ ବନେ
ପାଖର ପୀରତି ଦୂରକୁ ଗଲେ
ଆଉ କି ପଡ଼ିବ ମନେ ?'

କେଉଁ ଶୁଆ ସାରୀର ମିଳନ ଦେଖି ବିଚ୍ଛେଦ ବିଧୁରା ସ୍ତ୍ରୀ ସ୍ୱାମୀ କଥା ସ୍ମରଣ କରିଅଛି—

ଶୁଆ ସାରୀ ଡାଳ ବନେ
ଘରକରି ଦୁଃଖ ପଡ଼ିଲା ମନେ
ବାହୁଡ଼ା ଯାତରି ଦିନେ ।

ସେହିପରି ପଦ ପୂରଣ ଲାଗି କୁମ୍ଭାଟୁଆର ନାମୋଲ୍ଲେଖ ମାତ୍ର ହୋଇ-ଅଛି—

'କଳା କୁମ୍ଭାଟିଆ ବସେ
କଳାଭଉଣ୍ଡି ବାଟେ ନାଗର ଆସେ,
ଚମ୍ପା ଫୁଲ ପରି ଦିଶେ ।'
'କଳା କୁମାଟିଆ ବୁକୁ
କିଏ ଆଣିଦିଅନ୍ତା ଘନଶ୍ୟାମକୁ
ରାଜ୍ୟ ବାଢ଼ି ଦିଅନ୍ତି ତାକୁ ।'

ଶାଗୁଣା ଛ'ଶ ବର୍ଷ ବଞ୍ଚେ । ସେ ସବୁରି ମାଂସ ଖାଏ, ତା ମାଉଁସ ଖାଇଲେ କଟର କଟର ହୁଏ ବୋଲି ଉଲ୍ଲେଖ ଦିଆଯାଏ । ଘରଚାଳରେ ଶାଗୁଣା ବସିଲେ ଅମଙ୍ଗଳ; ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ । ଶାଗୁଣା ମୁଖ ଦେଖି ଅନୁକୂଳରେ ମିବା ଅଶୁଭ । ଯମର ଏକ ଦୂତ ସେ, ମୃତ୍ୟୁର ଆବାହକ । କିନ୍ତୁ ଲୋକଗଳ୍ପରେ ଶାଗୁଣାର ଲୋକକଲ୍ୟାଣରୂପ ଦେଖିବାକୁ ମିଳେ । ସେ କୃତଜ୍ଞ; ଉପକାର ପାଇଲେ ପ୍ରତ୍ୟୁପକାର କରି ତାହା ଶୁଝେ । ନାୟକ ଅଜଗର ମୁଖରୁ ତାର ଛୁଆମାନଙ୍କୁ ରକ୍ଷା କରିଥିଲା । ତା ବଦଳରେ ସେମାନେ ନାୟକକୁ ମନ୍ତ୍ର ଖଡ଼ି ଦେଲେ ଓ 'କଲପାଣି' ଆଣିବାରେ ସାହାଯ୍ୟ କରିଥିଲେ । ରଜା ପୁଅ ଶାଗୁଣା ପିଠିରେ ବସି ଅସାଧ୍ୟ ସାଧନ କରିବାକୁ ଯାଇଥିଲା ।

ଶାଗୁଣା ଆଗତ ଭବିଷ୍ୟ ଜ୍ଞାତା । ଅଣ୍ଡାରୁ ଆଧାର ଖସିବାରୁ ଛୁଆଙ୍କୁ ବିପତ୍ତି ପଡ଼ିଲା ବୋଲି ସେବୁଝି ପାରିଥିଲା । ମନପବନ ଡଙ୍ଗା କେଉଁ କାଠରେ ତିଆରି ହେବ ଓ ବାରଣ ବଢ଼େଇ କିପରି ହାଣ ମୁହଁରୁ ରକ୍ଷା ପାଇବେ, ସେ ଜାଣିପାରି-ଥିଲା ।

ସେହିପରି ଲକ୍ଷ୍ମୀଙ୍କର ବାହନ ହେଲେ ବି ପେଚକ ଏକ ଅଶୁଭ ପକ୍ଷୀ । ପେଚ୍‌ର ସ୍ୱର ଶୁଣିଲେ ସ୍ତ୍ରୀମାନେ ତାକୁ 'ଲୁନ୍ଦା ଗେରଣୀ', 'ଦେଢ଼ଶୁର ଅଇଁଠା ଖାଇ' ବୋଲି ଗାଳିଦେଇ ତା ମୁହଁ ବନ୍ଦ କରିବାକୁ ଚେଷ୍ଟା କରିଥାନ୍ତି । ତାକୁ 'ମନ୍ଦ', 'ଅରସିକ', 'ଅନାଡ଼ି' ସହିତ ଚର୍ଚ୍ଚିତ କରାଯାଏ ।

'ପେଚ୍‌କୁ ହାତେ ଦେଲ ସୁବର୍ଣ୍ଣ ମୁଦି
କଏ ଶିଖାଇଲା ଏପରି ବୁଦ୍ଧି ?'
'ଘୁଙ୍ଗୁରିକି କାହିଁ ପାଚିଲା କଦଳୀ
ଅନ୍ଧ ହାତେ ରତ୍ନ ମୁଦି
ପେଚ୍‌କୁ ଚଢ଼େଇ କି ସୁବର୍ଣ୍ଣ ପଞ୍ଜୁରି
କୋରଡ଼ିଁ ସୁମରି କାନ୍ଦି ।'

ଡାହୁକ କୁଳ ଧ୍ୱଂସ କରେ; ତାର 'ବଂଶମରା' କୁଖ୍ୟାତି ଅଛି । ବନ୍ଦୀ ହେଲେ ନିଜେ ମୁକୁଳିବାକୁ ଚେଷ୍ଟା ନ କରି ଭାଇବନ୍ଧୁଙ୍କୁ ସମଦଶାପନ୍ନ କରିବାକୁ ଚେଷ୍ଟା କରେ । ଅଠାକାଠି ପାଖରେ ଚରୁଥିବାବେଳେ ସେ ଡାକିଲା ଡାକ ଦିଏ । ତାକୁ ସାହାଯ୍ୟ କରିବାକୁ ଆସି ଅନ୍ୟମାନେ ବନ୍ଦୀ ହୁଅନ୍ତି । ଏହିପରି ଡାହୁକଙ୍କ ସଂଖ୍ୟା ଊଣାହୋଇ ଆସୁଛି । ବିଶ୍ୱାସଘାତକର ପ୍ରତୀକ ସେ, ବର୍ଷାର ବୈତାଳିକ ହେଲେ ବି ।

ଯେଉଁ ଘାଟରେ ବନ୍ଧ୍ୟା ସ୍ନାନ କରେ, ସେ ଘାଟର ଜଳ ମାରି ହୋଇଯାଏ ବୋଲି ଲୋକବିଶ୍ୱାସ ପ୍ରଚଳିତ । କିନ୍ତୁ କବି ବନ୍ଧ୍ୟା ପ୍ରତି ଦରଦୀ । ସେ ଡାହୁକକୁ ଉପଦେଶ ଦେଇଛନ୍ତି—

ପିଅ ପିଅ ଡାହୁକ ଜଳରେ ବାଛ୍ୟ ନାହିଁ ।

**ହଳଦିବସନ୍ତ—**

ପିଲାଦିନେ ସୀତା ହଳଦି ଲଗଉଥିଲେ । ଗୋଟିଏ ଚଢ଼େଇ ଆସି ତାଙ୍କ ସାମ୍ନାରେ ବସିଲା । ସୀତା ଅବୁଝା ହୋଇ କାନ୍ଦିବାରୁ ମୁନିପୁଅମାନେ ଫାଶ ବସାଇ ଚଢ଼େଇଟିକୁ ଧରି ଆଣିଲେ । ହଳଦି ଗୁରୁଗୁରୁ ହାତରେ ସେ ତାକୁ ଧରିଲେ; ତାକୁ ଗେଲ କରୁ କରୁ ଚଢ଼େଇର ଦେହରେ ହଳଦି ଓ ମୁଣ୍ଡରେ ତାଙ୍କ ଆଖିର କଜ୍ଜଳ ଲାଗିଗଲା । ଚଢ଼େଇ ହାତରୁ ଖସିଯାଇ ତାଙ୍କୁ ଓଲଟି ଉଗାଇବାକୁ ଲାଗିଲା—ସୀତା, କୋକ ଲେ, ସୀତା କୋକ ଲେ । ସେହିଦିନଠାରୁ ଏ ପକ୍ଷୀଟିର ନାମ ହେଲା ହଳଦିବସନ୍ତ । କାଳକ୍ରମେ ତାଙ୍କ ବଂଶଧରମାନେ ଏହି ବର୍ଣ୍ଣ ଧାରଣ କଲେ ।

ଲୋକଗୀତରେ ହଳଦବସନ୍ତର ନାମୋଲ୍ଲେଖ ମାତ୍ର ରହିଅଛି—

ଉଚ ମୋ ନଡ଼ିଆର ପାତଲ ଷଢ଼ାଇ
ଢ଼ଚ ବୃକ୍ଷେ ରବ ମୋ ଦେଉଛି ବସନ୍ତ ଚଢ଼ାଇ
ବସନ୍ତ ଚଢ଼ାଇ ପକ୍ଷୀଟି ହଳଦିଆ
ଏ ବାଟେ ଗଲେ ରମ ଯେ ଶ୍ରୀହରି
ରମ ଶ୍ରୀହରି ଅଲପ ବଇସିଆ ହୋ ।

**କଳୁଳପାଢଆ—**

କଳୁଳପାଢଆ କଳି ଛୁଣ୍ଡାଏ—ମଧ୍ୟସ୍ଥି ଭଦ୍ରଲୋକ । ତା ସମ୍ପର୍କୀୟ ଉଲ୍ଲେଖ ଅରୁଚକର, ଅସ୍ୱାଦ୍ୟ । ଭଲଲୋକ ହିସାବରେ ସେ ସମ୍ମାନର ପାତ୍ର ନୁହେ । ବରଂ ଭଦ୍ରଲୋକଙ୍କୁ ବ୍ୟଙ୍ଗ କଲାବେଳେ ତାର ନାମୋଲ୍ଲେଖ କରାଯାଏ ।

ମଧ୍ୟସ୍ଥ ହେବାକୁ ବାରଣ କରାହୋଇଛି । କାରଣ ଦୁଇ ପକ୍ଷର ନିପୀଡ଼ନ ତାକୁ ସହ୍ୟ କରିବାକୁ ହୁଏ । ଦୁଇ ପକ୍ଷକୁ ତୁଷ୍ଟ କରିବା କଷ୍ଟକର । କଳୁଳପାଢଆ ସେଇଆ କରିବାକୁ ଯାଇ ଧ୍ୱଂସ ବରଣ କରିଛି । ଗୋଟିଏ କ୍ଷୁଦ୍ର ଧେନୁ ସହିତ ବୃହତ୍ ବୃଷଭର ସଙ୍ଗମେଚ୍ଛା, ଧେନୁର ଅସମ୍ମତ, କଳୁଳପାଢର ମଧ୍ୟସ୍ଥି ଓ ସଙ୍ଗମ କାଳରେ ଧ୍ୱଂସପ୍ରାପ୍ତି ଗୋଟିଏ ଗଳ୍ପରେ ବର୍ଣ୍ଣିତ ହୋଇଅଛି ।

**ଚଲ—**

ଚଲ ଶିଆଳ ଦି ଭଉଣୀ; ଚଲ ଦୁତିଆ ଓଷା କରି ପର ଜନ୍ମରେ ସାଧବାଣୀ ହୋଇ ଐଶ୍ୱର୍ଯ୍ୟ ଭୋଗ କଲା । ଶିଆଳ ଓଷାର ଭୋଗ ସମ୍ଭାଳି ନ ପାରି ହାଡ଼ ଚୋବାଇଥିଲା ଓ ପର ଜନ୍ମରେ ଦାରିଦ୍ର୍ୟ ଦୁଃଖ ଭୋଗ କରିଥିଲା । ଏହି ଓଷାରେ ଏବେ ଗାଉଁଲି ସ୍ତ୍ରୀଲୋକେ ପୋଖରୀ ତୁଠରେ ଦୁତିବାହନଙ୍କ ସହିତ ଚଲ ଶିଆଳଙ୍କୁ ପୂଜିଥାନ୍ତି ।

ଶଙ୍ଖଚଲ ଦେଖିବା ଶୁଭ, ମାଟିଆ ଚଲ ଦେଖିବା ଅମଙ୍ଗଳ । ତେଣୁ—

ଶଙ୍ଖ ଚଲ ଭାଇ ନମସ୍କାର
ମାଟିଆ ଚଲକୁ ଗୋଇଠା ମାର ।

ଶାଶୂଘରକୁ ଯାଉଥିବା ଝିଅକୁ ସୁନାଫୁଲ ଓ ଶାଶୂଘର ଲୋକଙ୍କୁ ମାଟିଆ ଚଲ ସହିତ ଲୋକକବି ତୁଳନା କରିଅଛନ୍ତି ।

**ଟେଟେଣ୍ଟୋଇ—**

ଆକାଶ ଅଜାଡ଼ି ହୋଇ ପଡ଼ିବ ବୋଲି ଟେଟେଣ୍ଟୋଇର ଭୟ; ତେଣୁ ଗୋଡ଼ ଦୁଇଟି ଉପରକୁ ଟେକି ସେ ଶୁଏ । ଆକାଶ ଛିଡ଼ି ପଡ଼ିଲା ବେଳେ ସେ

ଗୋଡ଼ରେ ଧରନେବ, ଶରୀରର କୌଣସି କ୍ଷତି ଘଟିବ ନାହିଁ ବୋଲି ତାର ବିଶ୍ୱାସ ।

**ବାଦୁଡ଼ି—**

ବାଦୁଡ଼ି ସୁବିଧାବାଦୀ । ନୀତି ମାନନ୍ତି ନାହିଁ କି ଆଦର୍ଶ ଉପରେ ଆସ୍ଥା ରଖନ୍ତି ନାହିଁ । ଓର ଉଣ୍ଡି ବୁଲୁଥାନ୍ତି—କେଉଁଠି ନିଜର ସ୍ୱାର୍ଥସିଦ୍ଧି ହୋଇ ପାରିବ । ନୀତି ଓ ଆଦର୍ଶକୁ ନିଜର ସ୍ୱାର୍ଥଲାଗି ବଳି ଦେଉଥିବା ବ୍ୟକ୍ତିକୁ ବାଦୁଡ଼ି ଆଖ୍ୟା ଦିଆଯାଏ ।

ଥରେ ପଶୁ ପକ୍ଷୀଙ୍କ ମଧ୍ୟରେ ଯୁଦ୍ଧ ହେଲା । ପ୍ରଥମ ଦିନ ପଶୁଙ୍କ ବିଜୟ-ଲାଭର ସମ୍ଭାବନା ଦେଖି ବାଦୁଡ଼ି ସେ ପକ୍ଷରେ ଯୋଗ ଦେଲା । ଦ୍ୱିତୀୟ ଦିନ ପକ୍ଷୀଙ୍କ ବିଜୟ ଆଶା ଦେଖି ସେ ପକ୍ଷୀଙ୍କ ପକ୍ଷରେ ଯୋଗ ଦେଲା । ଫଳରେ ସେ ନୁହେ ପଶୁ, ନୁହେ ପକ୍ଷୀ । ସେ ପଶୁଙ୍କ ପରି ପ୍ରସବ କରେ, ପକ୍ଷୀଙ୍କ ପରି ଉଡ଼ି-ପାରେ । ଉଭୟଙ୍କ ଡର ଲୁଚି ରାତିରେ ବାହାରେ ।

ଦେବଦୂତ ପକ୍ଷୀମାନଙ୍କୁ ପାଠ ପଢ଼େଇବାକୁ ଆସୁଥିଲେ । ବାଦୁଡ଼ି ବଡ଼ ଦୁଷ୍ଟ; ଗୁରୁଙ୍କ ବିରୁଦ୍ଧରେ ଗପେ, ଯାହା କରନ୍ତି ତାର ଓଲଟା କାମ କରେ । ଗୁରୁ ଏହା ଜାଣିପାରି ତାକୁ ଅଭିଶାପ ଦେଲେ । ସେହି କାଳରୁ ସେ ଗଛବୃଛରେ ଓଲଟା ଲଟକି ରହିଲା ।

**ବାୟା—**

ବାୟା କାରିଗର ପକ୍ଷୀ । କାରିଗରୀ ଶିଖି ଆସିବା ଲାଗି ପକ୍ଷୀମାନେ ତାକୁ ବିଧାତାଙ୍କ ନିକଟକୁ ପଠାଇଥିଲେ । ବାୟା ନୀଡ଼ ନିର୍ମାଣର ଅଭିନବ କୌଶଳ ଅଳ୍ପଦିନ ମଧ୍ୟରେ ଆୟତ୍ତ କରି ଫେରି ଆସିଲା, ନିଜ ବସାଟି ଭଲଭାବେ ତିଆରି କଲା, କିନ୍ତୁ କାହାରିକି ସେ କୌଶଳ ଶିକ୍ଷା ଦେଲା ନାହିଁ । ପକ୍ଷୀମାନେ କ୍ରୋଧରେ ଅଭିଶାପ ଦେଲେ—ତୋ ବସା ବର୍ଷା ବାଆରେ ଛିଡ଼ିପଡୁ । ଏବେ ବର୍ଷ ଋତୁର ଅଧାରେ ବାୟାର ବସା ଛିଡ଼ିପଡ଼େ । ବାୟା ହଇରାଣ ହୁଏ । ତଥାପି ଲୋକେ ମନେ କରନ୍ତି ବାୟା ସୁଖୀ—

ବାୟାର କି ଯାଏ ?
ବାଆ କଲେ ବସା ଦୋହଲୁଥାଏ !

କିନ୍ତୁ ସେମାନଙ୍କ ମନରେ ଶଙ୍କା ରହିଛି—

ବାଇଆ ଚଢ଼େଇର ଅଗ ଡାଳେ ବସା
ଛିଡ଼ି ନ ପଡ଼ିବୁ ରେ ବାଇଆ
ଗୋବିନ୍ଦ ଭରସା ।

କୁକୁଡ଼ା—

କୁକୁଡ଼ା ରାମଚନ୍ଦ୍ରଙ୍କୁ ସୀତାଙ୍କ ସମ୍ବାଦ ଦେଇଥିଲା । ରାମଚନ୍ଦ୍ର ସନ୍ତୁଷ୍ଟ ହୋଇ କହିଲେ—କି ବର ମାଗୁଛୁ ମାଗ । କୁକୁଡ଼ା କହିଲା—ପ୍ରଭୋ, ରାଜାଙ୍କର ମୁଣ୍ଡରେ ଯେପରି ମୁକୁଟ ଅଛି, ମୋ ମୁଣ୍ଡରେ ସେହିପରି ଚୂଳ ହେଉ । ରାମ କହିଲେ—ତଥାସ୍ତୁ ।

ଚଷାପୁଅ—

'ଚଷାପୁଅ' ପ୍ରକୃତରେ ଚଷାର ପୁଅ ହୋଇଥିଲା । ଦିନେ ବାପାଙ୍କ ଲାଗି ଗହମର ବିଲକୁ ଭାତ ବୋହି ନେଇଥିଲା । ହଳ ବାଧା, ଖରା, ଭୋକରେ ତା ଆଖିରୁ କୁଳୁକୁଳୁଆ ପୋକ ବାହାରୁଥିଲା । କ୍ରୋଧରେ ସେ ପୁଅକୁ ପିଟି ଦେଇ-ଗଲା । ନିର୍ଘାତ ମାଡ଼ରେ ପୁଅ ମରିଗଲା । ତାପରେ ତାର ହୋସ୍ ହେଲା । ସେ କାନ୍ଦିବାକୁ ଲାଗିଲା । ଈଶ୍ୱର ପାର୍ବତୀ ବୁଲିକଲ ପାଇଁ 'ଚଷାପୁଅ' ଉପରେ ଦିନ-ମୁଠା ଫୁଲପାଣି ଛିଞ୍ଚିଦେଲେ । କିନ୍ତୁ ମଣିଷ ରୂପରେ ସେ ଆଉ ଉଠିଲା ନାହିଁ । ପକ୍ଷୀଟିଏ ହୋଇ ଉଡ଼ିଗଲା । ତା ନାଆଁ ହେଲା ଚଷାପୁଅ । ତା ପୂର୍ବଜନ୍ମ ସ୍ମରଣ କରି ସେ ଏବେ ବି ବୋବାଏ—

ମୁଁ ଚଷା ପୁଅ
ମୋତେ ହଳ ଦିଅ ।

'ଲଟି' ଚଢ଼େଇର ବର ଖୋଜା ଓ ବର ବରଣରେ ଲୋକକବିଙ୍କ ସୌନ୍ଦର୍ଯ୍ୟବୋଧ ପ୍ରକାଶିତ ହୋଇଅଛି – ମୟୂର ସର୍ବଶ୍ରେଷ୍ଠ ବିବେଚିତ ହୋଇ-ଅଛି ।

'ଆଗେ ଭେଟିଲି ବଗ
ଗୋଡ଼ିଲେ ଡେଙ୍ଗ ଡେଙ୍ଗ
ଉକୁ ଉକୁ ଗୃହେଁ ।
ବାଟେ ଭେଟିଲି କୁଆ
ମଡ଼ା ମୁର୍ଦ୍ଦାର ଖିଆ ।
× ×
ବାଟେ ଭେଟିଲି ମୟୂର
ତା ଆଖି ଦୁଇଟା ଗୁଞ୍ଜର
ବେକେ ଅଛି ଘାପୁଡ଼ି ମାଳ
ମୁଣ୍ଡେ ଅଛି ଚୂଳ
ସେଇଟା ଲଟିର ବର ।'

'ଗର୍ବ କଲେ ଖର୍ବ ହୁଏ' ପ୍ରସଙ୍ଗରେ କ୍ଷୁଦ୍ରତମ ଲଟି ନଈପାଣି ଶୋଷିବା, ମର୍କଟି ପାହାଡ଼ ଓ ମର୍କଟିଆ ଲାକୁ ଗିଳିବା, ଶେଷକୁ ବାଉଁଶକୁ ଖାଇବା ମତଲବରେ ତା

ଖୁରକୁ ଖାଇବାବେଳେ ପେଟ ଚିର ହୋଇ ମରିବା, 'ଲଟି ଚଢ଼େଇ, ବଡ଼ ବଢ଼େଇ' ଗଳ୍ପରେ ପ୍ରକାଶିତ ହୋଇଅଛି ।

ପ୍ରବଳ ଶତ୍ରୁକୁ କବ୍ୟସ୍ତ କରିବା (ବୁଦ୍ଧି ଓ ସାହସ ଯୋଗୁଁ) କ୍ଷୁଦ୍ର ଟୁଣ୍ଟୁଣି (ମୁନିଆଁ) ଚଢ଼େଇ ପକ୍ଷେ ସମ୍ଭବ ହୋଇଥିଲା ।

ଥରେ ଟୁଣ୍ଟୁଣିର ଗୋଡ଼ରେ କଣ୍ଟା ଫୁଟିଗଲା । ଭଣ୍ଡାରୀକୁ କହିବାରୁ ସେ କାଢ଼ିଲା ନାହିଁ । ରାଜାରାଣୀଙ୍କି ଗୁହାରି କରିବାରୁ ସେମାନେ ଶୁଣିଲେ ନାହିଁ । ରାଜାରାଣୀଙ୍କୁ କାମୁଡ଼ିବା ଲାଗି କୋଳଥିଆ ନାଗକୁ ଅନୁରୋଧ କରିବାରୁ ସେ ଖାତିର କଲା ନାହିଁ; ତାକୁ ମାରିବା ଲାଗି ଠେଙ୍ଗାକୁ ଅନୁରୋଧ, ସେ ନ ଶୁଣିବାରୁ ତାକୁ ପୋଡ଼ିଦେବା ଲାଗି ଅଗ୍ନିକୁ ଅନୁରୋଧ, ଅଗ୍ନି ନ ଶୁଣିବାରୁ ତାକୁ ଲିଭାଇ ଦେବା ଲାଗି ସମୁଦ୍ରକୁ ଅନୁରୋଧ, ସମୁଦ୍ର ନ ଶୁଣିବାରୁ ତାର ଜଳ ଶୋଷିନେବା ଲାଗି ହାତୀକୁ ଅନୁରୋଧ. ହାତୀ ନ ଶୁଣିବାରୁ ତାକୁ କାମୁଡ଼ି ପକେଇବା ଲାଗି ମହୁମାଛିଙ୍କି ଅନୁରୋଧ, ଶେଷରେ ମହୁମାଛି କାର୍ଯ୍ୟକାରୀ ହେବାରୁ ସମସ୍ତେ କାର୍ଯ୍ୟକାରୀ ହେବା, ବାରିକ ଟୁଣ୍ଟୁଣିର ଗୋଡ଼ରୁ କଣ୍ଟା କାଢ଼ିବା 'ଟୁଣ୍ଟୁଣି କି ବୁଦ୍ଧି କଲା; ରଜାରାଣୀକି ଆଣି ପାଦେ ଖଟାଇଲା' ଗଳ୍ପରେ ବର୍ଣ୍ଣିତ ହୋଇଅଛି ।

ପକ୍ଷୀ ପ୍ରତୀକରେ ଓଡ଼ିଆ ଗଳ୍ପରେ ତଥାକଥିତ ଧାର୍ମିକମାନଙ୍କୁ ବ୍ୟଙ୍ଗ କରାଯାଇଅଛି । ଭୁଲାମୁହାଁକାଙ୍କ କେବଳ ଜଳପାନ କରି ଜୀବନ ଧାରଣ କରୁଥିଲା । କାଳେ ପାଣିରେ ପୋକଜୋକ, ମାଛ ପଶିଯିବେ, ସେଥିଲାଗି ସେ ଚଞ୍ଚୁରେ ତୂଳା ଦେଇଥିଲା । ଏ ତାର ଏକ ଛଳନା । ଧର୍ମର ଭେକ ଦେଖାଇ ସେ ବହୁ ଜୀବଙ୍କୁ ବିନାଶ କରିଥିଲା । ଶେଷକୁ ନିଜେ ମୃତ୍ୟୁମୁଖରେ ପଡ଼ିଥିଲା ।

ପକ୍ଷୀ ଅସୁରଅସୁରୁଣୀଙ୍କର ଜୀବନନାଡ଼ୀ ହୋଇଥାଏ । ଜୀବନନାଡ଼ୀକୁ ଧ୍ୱଂସ ନ କରିବା ପର୍ଯ୍ୟନ୍ତ ସେମାନେ ମରନ୍ତି ନାହିଁ । ମୟୂର ମାୟାବିନୀ ରାଣୀର ଜୀବନନାଡ଼ୀ ଥିଲା । ଗଳ୍ପର ନାୟକ ମୟୂରକୁ ଆଣି ଚିପିଲା କ୍ଷଣି ସେ କେଁ କେଁ ରଡ଼ି କରିବା, ତେଣେ ଅନ୍ତଃପୁରରେ ରାଣୀ ଭେଁ ଭେଁ କାନ୍ଦିବା, ମୟୂରର ଟାଙ୍ଗ ଛିଣ୍ଡାଇବା ମାତ୍ରେ ରାଣୀଙ୍କ ପାଦ ଛିଡ଼ି ପଡ଼ିବା, ତାର ବେକ ମୋଡ଼ିବା ମାତ୍ରେ ରାଣୀ ପ୍ରାଣତ୍ୟାଗ କରିବା ଲୋକଗଳ୍ପରେ ବର୍ଣ୍ଣିତ ହୋଇଅଛି ।

ବିମାତା ମନ୍ତ୍ରୌଷଧି ବଳରେ ମଣିଷକୁ ପକ୍ଷୀରେ ପରିଣତ କରିଦିଏ । ଶେଷରେ ଦେବଦୟାରୁ ପକ୍ଷୀ ପୁଣି ମଣିଷଶରୀର ଫେରିପାଏ । ଅନିଷ୍ଟକାରୀର ସର୍ବନାଶ ହୋଇଥାଏ ।

ପକ୍ଷୀ ମାରି ରକ୍ତ ଆଣିବା ଲୋକଗଳ୍ପର ଏକ ପ୍ରବୃତ୍ତି । ତହିଁରେ ଗଳ୍ପର ମୋଡ଼ ବଦଳାଇ ଦିଆ ହୁଏ । ସଉରୁଣୀ ପିଲାର ତଳେକ ଦୋଷ ବିମାତା

ଆଖିରେ ତାଳ ପ୍ରମାଣେ ହେଲେ । ରାଜାଙ୍କ ଆଗେ ଖେଚର କହି କୁମାରଙ୍କ ରକ୍ତ ନ ଦେଖିବା ପର୍ଯ୍ୟନ୍ତ ଜଳ ସ୍ପର୍ଶ କରିବ ନାହିଁ ବୋଲି ସେ ପ୍ରତିଜ୍ଞା କରି ବସେ । ଘାତକ ମନରେ କିନ୍ତୁ ଦୟା ଆସେ; ସେ କୁମ୍ଭାଟୁଆ ମାରି ରକ୍ତରେ ଲବଣ ମିଶାଇ ରାଣୀଙ୍କି ଭେଟି ଦିଏ, କୁମାରଙ୍କୁ ରାଜ୍ୟ ପାରି କରାଇ ଦିଏ । ସେ ଦୂର ଦେଶକୁ ଯାଇ ଅସାଧ୍ୟ ସାଧନ କରି ଫେରନ୍ତି ।

ଶ୍ୟାମଳ ପକ୍ଷୀ ଗୋରୁ ପିଠି ଉପରେ ଉଡ଼ିଗଲେ ତାର ପଞ୍ଜରା ଭାଙ୍ଗିଯାଏ ବୋଲି କିମ୍ବଦନ୍ତୀ ଅଛି । ବକ ଶ୍ୟାମଳ ପକ୍ଷୀକୁ ମାଡ଼ି ବସିଲେ ଭୂମିର ପ୍ରଚଣ୍ଡ ଶକ୍ତି ଓ ମହତ୍ତ୍ୱ ଥିବା ପ୍ରମାଣିତ ହୁଏ । ବାରବାଟି ଦୁର୍ଗ ଓ ଓଡ଼ିଶାର ବହୁ ରାଜବାଟିର ନିର୍ମାଣ ମୂଳରେ ଏହିଭଳି କିମ୍ବଦନ୍ତୀ ରହିଅଛି । ଠେକୁଆ ବଳିଆ କୁକୁରକୁ ମାଡ଼ି ବସିଲେ ମଧ୍ୟ ସ୍ଥାନର ମହତ୍ତ୍ୱ ପ୍ରମାଣିତ ହୁଏ । ଗଡ଼ ଅଜେୟ ହେବ, ଏହି ବିଶ୍ୱାସରେ ସେହି ସ୍ଥାନରେ ନିର୍ମିତ ହୋଇଥାଏ । ଠେକୁଅଦେହ ଓ ସିଂହ-ମୁଣ୍ଡଥିବା ପାଲଟାସିଂହବାନା ସଙ୍କେତ ବଡ଼ମ୍ବା ରାଜାଙ୍କ ସଙ୍କେତରେ ରହିଅଛି । ଧୁରୁଣା ଝଗିରିଆ ଗଡ଼ ନିର୍ମାଣ ତଳେ କପୋତ ଛଞ୍ଚାଣକୁ ମାଡ଼ି ବସିବା ଜନଶ୍ରୁତି ରହିଅଛି ।

ଗଣ୍ଡଭୈରବ ଏକ କାଳ୍ପନିକ ପକ୍ଷୀ, ସେ ପକ୍ଷୀର ପକ୍ଷ ଓ ନରଦେହ ବିଶିଷ୍ଟ ଗରୁଡ଼ ପରି ଶକ୍ତିଶାଳୀ । ବାଧାବିଘ୍ନକୁ ଭ୍ରୂକ୍ଷେପ ନ କରି ସେ ସ୍ୱର୍ଗରୁ ଅମୃତ ଆଣି ଦେଇପାରେ । କୁମ୍ଭକମଣ୍ଡଳ ଆକାରରେ କ୍ଷୁଦ୍ର, କିନ୍ତୁ ଐନ୍ଦ୍ରଜାଲିକ ଶକ୍ତିର ଅଧିକାରୀ । ଆବଶ୍ୟକ ହେଲେ ସେ ତାର ଆକୃତି ପରିବର୍ତ୍ତନ କରି ଗୋଟିଏ ପରିବାରକୁ ପୃଷ୍ଠରେ ବହନ କରି ନେଇ ଯାଇପାରେ । ଦୁଃସାଧ୍ୟ ବ୍ୟାଧି ଆରୋଗ୍ୟ କରିବାର ଶକ୍ତି ତାର ଅଛି ।

ଇଜିପ୍‌ଟର ଗରଗନ୍ (ସର୍ପକେଶ, ଭୟାବହ ନାରୀମୁଖ, ପକ୍ଷୀର ପକ୍ଷ, ସିଂହୀର ଦେହ, ତୀକ୍ଷ୍ଣ ନଖ), ସ୍ପିଙ୍କ୍‌ସ୍ (ମନୁଷ୍ୟ ପଶୁ ପକ୍ଷୀର ସମ୍ମିଶ୍ରଣ), ପରି ପକ୍ଷିରାଜ (ଅଶ୍ୱଦେହ, ପକ୍ଷୀର ପକ୍ଷ), ନାଗକନ୍ୟା, ମତ୍ସ୍ୟକନ୍ୟା ପ୍ରଭୃତି କାଳ୍ପନିକ । ନବଗୁଞ୍ଜର ମୂର୍ତ୍ତି (ଅଶ୍ୱ ବ୍ୟାଘ୍ର, ମନୁଷ୍ୟ ହସ୍ତୀପାଦ, ମୟୂର ଗ୍ରୀବା, କୁକ୍‌କୁଟ ମସ୍ତକ, ବୃଷଭ ଚୂଳ, ସର୍ପ ଲଙ୍ଗୁଳ) ଓଡ଼ିଶୀ ଚିତ୍ରକଳାରେ ଉଚ୍ଚସ୍ଥାନ ଅଧିକାର କରିଅଛି । ପୂର୍ବେ ଓଡ଼ିଶାର ଦ୍ୱାରେ ଦ୍ୱାରେ ଏହା ଅଙ୍କିତ ହେଉଥିଲା ।

—*—

## ନନ୍ଦକିଶୋରଙ୍କ କବି ମନ : ଏକ ପରିକ୍ରମା

କବିର କାବ୍ୟ ଜୀବନ ଓ ସାଂସାରିକ ଜୀବନ ମଧ୍ୟରେ ସାମଞ୍ଜସ୍ୟ ଓ ସମନ୍ୱୟ ସାଧନ ଏକ ମହନୀୟ ବ୍ୟକ୍ତିତ୍ୱର ଅପେକ୍ଷା ରଖେ । କେହି ପୂରା କବି ହେବାକୁ ଯାଇ ଘୋର ଦାରିଦ୍ର୍ୟ ମଧ୍ୟରେ ଆଜୀବନ ଘାଣ୍ଟି ହୋଇଛନ୍ତି; କେହି ବା ସଂସାରୀ ହେଉଁ ହେଉଁ ଘୂର୍ଣ୍ଣାବର୍ତ୍ତ ମଧ୍ୟରେ ସଂସାର ତାଙ୍କ ଦିବ୍ୟ ଦୃଷ୍ଟିକୁ ଆଚ୍ଛନ୍ନ କରି ପକାଇଛି । କାବ୍ୟକବିତା ସୃଷ୍ଟିର ସ୍ୱପ୍ନସଂସାର ତାପ ଓ ତାଡ଼ନାରେ କୁଆଡ଼େ ବାମ୍ଫ ହୋଇ ଉଡ଼ିଯାଇଛି । 'ଏ ଦିନେ କବି ଥିଲେ, ସାହିତ୍ୟିକ ଥିଲେ', ଏବେ ଡାକ୍ତର, ଇଞ୍ଜିନିଅର, ଅଫିସର, ଓକିଲ ବା କାନତସ୍ଟି । ବୃତ୍ତି ହେଲା ତାଙ୍କ ଚୌଦିଗର ମଣ୍ଡଳୀତ ବୃତ୍ତ, ପ୍ରତିଭା ହେଲା ଏକ ରାହୁଗ୍ରସ୍ତ ଚନ୍ଦ୍ରମା । ଏ ସବୁ ଜୀବନ ଉଖାରି ବସିଲେ ବ୍ୟର୍ଥତାର କରୁଣ ରାଗିଣୀ ଶୁଣିବାକୁ ମିଳେ ।

ନନ୍ଦକିଶୋରଙ୍କ ଅନ୍ତର୍ଲୋକ ଓ ବହିର୍ଲୋକ ଏକ ଦ୍ୱନ୍ଦ୍ୱ ମଧ୍ୟରେ ସାରା ଜୀବନ ଗତି କରି ଚାଲିଛି । ଉଭୟ ମଧ୍ୟରେ ସଂଘର୍ଷ ଓ ବେଳେ ବେଳେ ସଂଗ୍ରାମ ଲାଗିଯାଇଛି । ସେ କେତେବେଳେ ବାକ୍, କେତେବେଳେ ବା ବିତ୍ତର ଆରାଧନାରେ ନିମଗ୍ନ ହୋଇଛନ୍ତି, କିନ୍ତୁ ଉଭୟ ମଧ୍ୟରେ ସମନ୍ୱୟ ସ୍ଥାପନ କରି ପାରିନାହାନ୍ତି । ଲକ୍ଷ୍ମୀ କରିଛନ୍ତି ତାଙ୍କୁ ଯୋଗଭ୍ରଷ୍ଟ । ତେଣୁ ପ୍ରତିଭାଶାଳୀ ନନ୍ଦ-କିଶୋରଙ୍କ ଲେଖନୀରୁ ଦେଶ ଯାହା ଆଶା କରିଥିଲା, ତାହା ପାଇପାରି ନାହିଁ ।

ଆଦ୍ୟ ଯୌବନରେ ସୁଖର ସଂସାର ଗଢ଼ିବା ଲାଗି ଶିକ୍ଷିତ ସାଥୀମାନେ ବାହାରି ପଡ଼ିଲେ; କେତେବେଳେ ସାହିତ୍ୟସାଧନାର ଆଦର୍ଶ କ୍ଷୁଣ୍ଣତର ହେଉଁ ହେଉଁ ନିର୍ବାପିତ ହୋଇଗଲା, ତାହା କଳିବାକୁ ଧୈର୍ଯ୍ୟ ବା ଅବକାଶ ନ ଥିଲା; ସଂସାର ବଢ଼ି ଚାଲିଲା, ଆକାଶ ଛୁଇଁ ଉଠିଲା ଏକ ସୌଧ । ସଂସାରୀ ଦୃଷ୍ଟିରୁ ସଫଳ ଓ ସାର୍ଥକ ଏଇ ଜୀବନ ଏ, ସାଂସ୍କୃତିକ ଦୃଷ୍ଟିରୁ ଶୋଚନୀୟ । ନନ୍ଦକିଶୋର ପ୍ରତିଭାର ବହୁ ଅପମୃତ୍ୟୁ ଦେଖିଲେ, ଶୋକ କଲେ; ପ୍ରତିଜ୍ଞା କଲେ—ସେ ନିଜ ପ୍ରତିଭାକୁ ଏପରିଭାବେ ମରିବାକୁ ଦେବେନାହିଁ; ସେ କୁଡ଼ିଆରେ ରହିବେ, ସାଧାରଣଙ୍କ ଭଳି ଚଳିବେ, ଗଢ଼ିବେ ନିଜ ବାସ ପାଇଁ ନୁହେଁ, ସାହିତ୍ୟ ପାଇଁ ଏକ ସୌଧ ।

ମାତ୍ର ପାଞ୍ଚବର୍ଷ ପରେ ତାଙ୍କ ତପସ୍ୟା ଭାଙ୍ଗିଗଲା, ତପୋଭଙ୍ଗର ଗୌରବ ନେଲା ଉର୍ବଶୀ—ବାସ୍ତବତା । ଚତୁର୍ଦ୍ଦିଗରେ ନାନା ଚକଚକ୍ୟ, ସୁଖସୌଖୀନ

ଜୀବନ, ବିଳାସବ୍ୟସନ । ନନ୍ଦକିଶୋର ମୁହଁ ମାଡ଼ି ମନ ମାରି କେତେ କାଳ ଚଳିବେ ? ପ୍ରାଣ ବେଳେ ବେଳେ ଅସନ୍ତୋଷରେ କୁହୁଳି ଉଠୁଥିଲା । ହଠାତ୍ ଜୀବନର ଏକ ବିସ୍ଫୋରଣ ଘଟିଲା, କୁହାଯାଇ ନ ପାରେ; ପରୋକ୍ଷ ଭାବରେ ସୁଖ-ଲିପ୍ସା ତାଙ୍କ ମର୍ମେ ମର୍ମେ ପୂରି ରହିଥିଲା, ସାହିତ୍ୟ ନିଶା ତାଙ୍କୁ ଚପାଇ ପାରି ନ ଥିଲା । ପାଠ ପଢ଼ିବାର ଲକ୍ଷ୍ୟ ସେ ଗୋଟିଏ କବିତାରେ ଲିପିବଦ୍ଧ କରି ଯାଇଛନ୍ତି; ପାଠ ପଢ଼ିବା କାହିଁକି ? ବହୁତ ରୋଜଗାର କରି ଧନୀ ଲୋକ ହେବା ପାଇଁ; ପାଠପଢୁଆ ଭାଗ୍ୟ ସଙ୍ଗେ ଖେଳିବ, ପାଲିଙ୍କିରେ ଗଲାବେଳେ ତା ମୁଣ୍ଡ ଉପରେ ପାଟଛତା ଟଣା ହେବ; ସେ ଘୋଡ଼ା, ହାତୀ ପୋଷିବ, ବହୁତ ଦାସଦାସୀ ରଖିବ, ଯୋତା ମାଡ଼ି ମସ୍ ମସ୍ ବୁଲିବ; କୋଠାବାଡ଼ି ତୋଳିବ, ସାଇପଡ଼ିଶାଏ ଈର୍ଷାରେ ଜଳି ଉଠିବେ । ଏହି କ୍ଷୀଣ ମନୋବୃତ୍ତି ଦିନେ ବ୍ୟାପକତର ହୋଇ ଜୀବନକୁ ଆଚ୍ଛନ୍ନ କରିବାକୁ ବସିଲା ।

ପରସ୍ପର ବିପରୀତ କୋଟୀରେ ଅବସ୍ଥିତ ଦୁଇ ମନୋଭାବକୁ ସମାନ୍ତର ଭାବରେ ଚଳାଇ ଉଭୟରେ ଜଡ଼ିତ ହେବା ଘଟଣା ପୃଥିବୀରେ ବିରଳ । ତାଙ୍କ ସ୍ତ୍ରୀ ଲକ୍ଷ୍ମୀ—ଗୃହଲକ୍ଷ୍ମୀ, ମାନବୀ; କବିତା ଚିନ୍ମୟୀ ଦେବକନ୍ୟା, ତାଙ୍କର ଅନ୍ୟ ଏକ ପତ୍ନୀ; କବିତା ପ୍ରଣୟିନୀ, ବାସ୍ତବତା ପରିଣୀତା । କବି ଦକ୍ଷିଣନାୟକ ଭାବରେ ଉଭୟଙ୍କର ସପତ୍ନୀଗତ ଶତ୍ରୁତା ଦୂର କରିବାକୁ ଚେଷ୍ଟିତ ହୋଇଥିଲେ; କବି ନିଜର ସେଇ ମାନସିକ ଦ୍ୱନ୍ଦ୍ୱ ଲିପିବଦ୍ଧ କରି ଯାଇଛନ୍ତି—

"ବେନି ପାଶେ ବେନି ପ୍ରିୟା
ସଦା ଆହା ମହା ଚିନ୍ତା ଚଳିବି କିପରି ?
ଏକ ସୁଗୃହିଣୀ ସଦା ଉପାର୍ଜନ ଅକାଂକ୍ଷିଣୀ
ଆନ ଅର୍ଥ ଅରି
ଏକ ପୃଥ୍ୱୀ ପ୍ରବାସିନୀ ଦେବକନ୍ୟା
ଆନ ଧରା ମାନବନନ୍ଦିନୀ
ଏକ ପରିଣୀତା ଭାର୍ଯ୍ୟା
ଆନ ମମ ସ୍ୱୟଂଭୂତା କବିତା କାମିନୀ"

—କବିତା ପ୍ରତି

ସଂଗ୍ରାମରେ ସରସ୍ୱତୀ ପଛେଇ ଗଲେ, ଲକ୍ଷ୍ମୀ ହେଲେ ବିଜୟିନୀ । ସାଂସାରିକ ସମୃଦ୍ଧି ଓ ସୌଭାଗ୍ୟ ମଧ୍ୟରେ ମନ କିନ୍ତୁ ସଦା ବିକ୍ଷୋଭିତ, ଅଶାନ୍ତ ରହିଲା, କୋହିନୂର ହଜାଇଥିବାର ବ୍ୟଥା ତାଙ୍କୁ ବ୍ୟାକୁଳିତ କରିବାକୁ ଲାଗିଲା । ସେ ଚେଷ୍ଟିତ ହେଲେ, କିନ୍ତୁ ବିଫଳତା ହିଁ ତାଙ୍କର ଲଲାଟଲିପି ଲେଖିଲା । ଅବହେଳା ଓ ଅନଭ୍ୟାସବଶତଃ ପୂର୍ବର ସେଇ ପ୍ରାଞ୍ଜଳତା ଉତ୍ସ ବା ପ୍ରାବାହିକତା ଆଉ ଫେରିଲା ନାହିଁ । ଶେଷ ଜୀବନରେ କବି ଏକା ବହିର୍ଦୃଷ୍ଟି କାହିଁକି, ଅନ୍ତର୍ଦୃଷ୍ଟି

ଓ ସୃଷ୍ଟିଶକ୍ତି ବହୁଳାଂଶେ ହରାଇଥିଲେ । ସାଂସାରିକ ସାବଲୀଳ୍ୟ ଅଭିବୃଦ୍ଧିରେ ବି ସେହି ମାନସିକ କ୍ଷତିର ପୂରଣ ହୋଇ ପାରିଲା ନାହିଁ । ଦିବ୍ୟଦୃଷ୍ଟି ହରାଇ ଘୋର କ୍ଷୋଭରେ ଦିନେ କବି ଲେଖିଛନ୍ତି—

"ବାଣୀ ଆରାଧନା ତେଜି ସେବିଲି ସଂସାର
ମନା ହୋଇଗଲା ମୋତେ ଶ୍ରୀ କୋଠ ଭଣ୍ଡାର ।"

କବି କବିତାକୁ ଏକ ଅକ୍ଷୟ, ଚିରନ୍ତନ ସମ୍ପଦ, ଦେହ ଓ ସାଂସାରିକ ସମ୍ପଦକୁ ଅସ୍ଥାୟୀ ଓ କ୍ଷୟଶୀଳ ବୋଲି କଳନା କରିଛନ୍ତି । କିନ୍ତୁ ଏଇ କ୍ଷଣିକାହିଁ ତାଙ୍କ ଜୀବନକୁ ଆବୋରି ବସିଛି ଓ ଶାଶ୍ୱତ ସହିତ ତାଙ୍କର ବିଚ୍ଛେଦ ଘଟାଇଛି ।

ନନ୍ଦକିଶୋରଙ୍କ ମଧ୍ୟରେ ଚାଲିଥିଲା ଅନ୍ୟ ଏକ ଦ୍ୱନ୍ଦ୍ୱ, ବିଦଗ୍ଧତା ଓ ଲୌକିକତା ମଧ୍ୟରେ । ଓଡ଼ିଆ କବିତାକ୍ଷେତ୍ରରେ ଆଦ୍ୟକାଳରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଚିରକାଳ ସେହି ଦ୍ୱନ୍ଦ୍ୱ ଚାଲି ଆସିଛି—କବିତା କାହାପାଇଁ ଲେଖାହେବ ? ଜନଗଣଙ୍କ ପାଇଁ ନା କେତେଜଣଙ୍କ ପାଇଁ ? ଲେଖାରେ କେଉଁ ରୀତି ଅବଲମ୍ବିତ ହେବ ? ବିଦଗ୍ଧ ରୀତି ନା ଲୋକରୀତି ? କବିମାନଙ୍କ ମଧ୍ୟରୁ କେହି ବିଦଗ୍ଧ ଶୈଳୀ, କେହି ବା ଲୋକଶୈଳୀରେ ଲେଖିଛନ୍ତି; କେହି ଉଭୟ ଶୈଳୀର ପରୀକ୍ଷା କରିଛନ୍ତି ବା ସମନ୍ୱୟ ଘଟାଇଛନ୍ତି । ନନ୍ଦକିଶୋରଙ୍କ କବିତାରେ ଏହି ଉଭୟର ରୂପ ପରିଲକ୍ଷିତ ହୁଏ । ସେ ବିଦଗ୍ଧ ରୀତିରେ ଲେଖି କବିଭାବେ ପରିଚିତ ହୋଇଛନ୍ତି, କିନ୍ତୁ ପ୍ରତିଷ୍ଠିତ ହୋଇପାରି ନାହାନ୍ତି । ସେ ହୋଇଛନ୍ତି ଜଣେ ଅନୁକାରୀ ବା ଅନୁସାରୀ; ଗ୍ରନ୍ଥ ଅନ୍ୟର; ସେଥିରେ ଭାବ ଢାଳିବାରେ କିଛି ମୌଳିକତା ଫୁଟିନାହିଁ, ନିଜତ୍ୱ ଦେଖା ଦେଇନାହିଁ । ସେ ସମାଲୋଚକର ଶରବ୍ୟ ହୋଇଛନ୍ତି, ଗତିପଥ ବଦଳାଇଛନ୍ତି । ସେ ହୋଇଛନ୍ତି ନୂତନ ପଥର ସନ୍ଧାନୀ, ଶେଷରେ ନୂତନ ଦିଗ୍‌ଦର୍ଶକ ।

ସେ ଲୋକଙ୍କ ପାଇଁ ଲେଖିବା ଲାଗି ଦୃଢ଼ ପଣ କରିଛନ୍ତି, ତାହା ନିମ୍ନ ପଦରେ ଲିପିବଦ୍ଧ ହୋଇଅଛି—

"ଜ୍ଞାନିଏ, ମୋ ଗୀତ ପଦ୍ୟେ ତୁମ୍ଭେ ନ ଶୁଣ
ଗିର ଆଦର କରନା ତା ପୁଣ ପୁଣ
ଗୀତ ଶୁଣି ହୁଏ ଯେବେ କିଞ୍ଚିତ ସୁଖ
ଶୁଣିଲେ ଶୁଣନ୍ତୁ ତାହା ମୂଳିଆ ମୂର୍ଖ ।"

କବି ଜୀବନର ଗତି ବଦଳାଇବାରେ ସମାଲୋଚନା ସହାୟକ ହୋଇଅଛି । ନନ୍ଦକିଶୋର ଛିଡ଼ା ହୋଇଛନ୍ତି ଏକ ଅପରିଚିତ ପଥରେ । ସେଠି ପ୍ରତିଯୋଗିତା କରିବାକୁ କେହି ନାହିଁ । ସେଠି ସେ ହୋଇଛନ୍ତି ଏକ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭା, ପ୍ରତିଷ୍ଠାତା ଓ ପୁରୋହିତ । ବିଦଗ୍ଧ ରଚୟିତାମାନଙ୍କ ଦୀର୍ଘ ଧାଡ଼ିରେ ସେ ଥିଲେ

ପଶ୍ଚାତ୍ ଭାଗରେ, ଏବେ ଛିଡ଼ାହେଲେ ପୁରୋଭାଗରେ । ସେ ହେଲେ ଅଚିହ୍ନା, ଅଜଣା ଫୁଲର ଅନୁସନ୍ଧାନୀ, ନବ ନବ ପ୍ରଚ୍ଛଦର ଆବିଷ୍କାରକ, ତୃତୀୟ ଦୃଷ୍ଟିସମ୍ପନ୍ନ ଭବିଷ୍ୟତ ବକ୍ତା । ସେ ସୃଷ୍ଟକୁ ପୁନଃସୃଷ୍ଟି କଲେ, ମୃତପ୍ରାୟ ଏକ ସୃଷ୍ଟି ଗୌରବକୁ ଜୀବନ୍ୟାସ ଦେଲେ ।

ସେ ସାରସ୍ୱତ ମନ୍ଦିରରେ କରାଇଲେ ଏକ ପଂକ୍ତିଭୋଜନ, ଏଥିରେ ଲିଖିତ ବା କଥିତ ଭାଷାର ଭେଦଭାବ ନ ଥିଲା । ଯେ 'ଶ୍ରୀ ଅକ୍ଷର ବରୁଣେଇ ପର୍ବତ', ସେ ହେଲେ ତାଙ୍କର ଗୁରୁ । ଗଣସାହିତ୍ୟକୁ ପୁଞ୍ଜି କରି ସେ ସାରସ୍ୱତ ପୀଠରେ ଛିଡ଼ା ହୋଇଗଲେ ଏକ ଗଣପତି ରୂପେ ।

ଲୋକସାହିତ୍ୟ ସମ୍ପଦର ଅଧିକାରୀ କିଏ ? ଭୋଗଦଖଲକାରୀ ତ ସମସ୍ତେ । ଇତସ୍ତତଃ ବିଞ୍ଚି ହୋଇଛି ଅଗଣିତ ରତ୍ନ । କେହି ମାଲିକାନା ଦାବୀ କରୁ ନ ଥିବା ଏଇ ସମ୍ପତ୍ତିକୁ ଯେତେ ପାରିଲେ କବି ଦୁଇହାତରେ ସାଉଁଟି ନେଲେ । ସେ ହେଲେ ଜଣେ ସଂଗ୍ରହକାରୀ, କିନ୍ତୁ ପଲ୍ଲୀଗୀତସଞ୍ଚୟନ ପରି ସେ ତାଙ୍କର ସଂକଳନ ପ୍ରକାଶ କଲେନାହିଁ । ସେ ସେହି ସାହିତ୍ୟକୁ ଅବଲମ୍ବନ କରି ଏକ ସାହିତ୍ୟ ଗଢ଼ିଲେ । ସ୍ୱରଚିତ କବିତାରେ ମୌଖିକ କବିତାକୁ ଯେତେ ଖଞ୍ଜିବାର ଖଞ୍ଜିଦେଲେ । 'ଚୌର୍ଯ୍ୟାପରାଧରେ କିଏ ଅଭିଯୁକ୍ତ କରିବ'—ମନରେ ତିଳାର୍ଦ୍ଧ ଶଙ୍କା ନ ଥିଲା । ଏଇଭାବେ ଗଣସ୍ୱ ବା ସର୍ବସ୍ୱ ହେଲା ତାଙ୍କର ନିଜସ୍ୱ ।

ତାଙ୍କ ଗଣଗୀତି ଅବଲମ୍ବିତ କବିତାର ମୁଖ୍ୟତଃ ଦୁଇଟି ବିଭାଗ— କିଶୋର କବିତା, ବୟସ୍କ କବିତା ।

ନନ୍ଦକିଶୋର କିଶୋର କବିତାର ଜଣେ ନାମଜାଦା ସ୍ରଷ୍ଟା । ସେ ପାଶ୍ଚାତ୍ୟ ସାହିତ୍ୟରୁ ଛାଞ୍ଚ ନେଇପାରିଥାନ୍ତି, କିନ୍ତୁ ଭାବ ଆହରଣ କରିନାହାନ୍ତି । ଲୋକପ୍ରଚଳିତ କିଶୋର ସାହିତ୍ୟ ତାଙ୍କ ସୃଷ୍ଟିର ଉତ୍ସମୁଖ । ପଲ୍ଲୀର କିଶୋର କବିତାପୀଠିକାରେ କୃଷିସଭ୍ୟତା, ପଲ୍ଲୀପ୍ରକୃତି । ନନ୍ଦକିଶୋରଙ୍କ ଆଭିମୁଖ୍ୟ ତାହା ହିଁ । ପଲ୍ଲୀ କିଶୋର କବିତାର ପ୍ରବାଳ ନିଜ କବିତାମାଳାରେ ସେ ଗୁନ୍ଥି ଦେଇଛନ୍ତି । ପ୍ରବାଳ ମିଶିଯାଇଛି ତାଙ୍କ ମଣିମାଣିକ୍ୟରେ; ତାରତମ୍ୟ ବାରି ହୁଏ-ନାହିଁ । ଉଭୟର ସାମ୍ୟ କେତେ ନିବିଡ଼, ତାହା ନିମ୍ନ ଉଦ୍ଧୃତିରୁ ଜଣାଯିବ—

'ବାଘ ନ ଦେଖିଲେ ବିଲେଇ ଦେଖ ।' —ଲୋକୋକ୍ତି

'ବାଘ ରଜାର ତୁ ଅଟୁ କି ଦେଇ ?
ବାଘ ନ ଦେଖିଲେ ଦେଖ ବିଲେଇ ।' —ନାନାବାୟା ଗୀତ

'ଚୁଟେଇ ମୂଷୀ ଚୁଲି ଚୁଟେଇ ମୂଷୀ
ଧାନ ଭରଣକ ଖାଉଥା ବସି
ତୁ ଥା ମୁଁ ଯାଉଛି ରୁଷି ।' —ଲୋକଗୀତ

'ଚୁଟିଆ ମୂଷାରେ ଚୁଟିଆ ମୂଷୀ
ଧାନ ଭରଣକ ଖାଉଥା ବସି
କରୁଥା ଯାହା ତୋ ମନର ଖୁସି
ଘର ଗୁଡ଼ ମୁହିଁ ଯାଉଛୁ ରୁଷି ।' —ନାନାବାୟା ଗୀତ

'ଜହ୍ନୀ ଫୁଲ୍ ଠୋଓ ଠାଆ
କାକୁଡ଼ି ଫୁଲ ଠୋଓ ଠାଆ
ଗୁଣ୍ଡୁଚି ମୂଷା କହୁ ଯାଇଚ
ଚାଉଳ ମୁଠିଏ ଥୋଇ ଥା' —ପ. ଗୀ.

'ଗୀତ ଗାଇ ଗାଇ ବୁଲନ୍ତ ମାଆ
ଜହ୍ନୀ ଫୁଲ୍ ଫୁଟେ ଠୋଓ ଠାଆ
ଚୁଟିଆ ମୂଷା କହୁଯାଇଚ
ଚାଉଳ ମୁଠିଏ ଦେଇ ଯା'

'ବେଙ୍ଗୁଲି, ବେଙ୍ଗୁଲି ପାଣି ଦେ —ନା. ଗୀ.
ନଈ ସୁଅ ନାଲ ଭସାଇ ଦେ ।' —ପ. ଗୀ.

'ବେଙ୍ଗୁଲି, ବେଙ୍ଗୁଲି ପାଣି ଦେ
କଣ୍ଡ ସମୁଦର ଭସାଇ ଦେ' —ନା. ଗୀ.

'ଖରା କରୁଚ, ମେଘ ବରଷୁଚ
ବିଲୁଆ ନନାର ବାହା ହଉଚ' —ପ. ଗୀ.

'ଖରା କରୁଅଛୁ, ମେଘ କରୁଛୁ
ବିଲୁଆ ପୁଅର ବାହା ହେଉଛୁ' —ନା. ଗୀ.

'ଧୋଓରେ ବାଇଆ ଧୋଓ
ଯୋଉ କିଆରେ ଗହଲ ମାଣ୍ଡିଆ
ସେଇ କିଆରରେ ଶୋ' —ପ. ଗୀ.

'ବିଲରେ ପାଚଚ ରଙ୍ଗଣି ଧାନ ହୋ
ହୋରେ ବାଇଆ ହୋ
ଯୋଉ କିଆରରେ ଗହଲ ଧାନ ଭୁ
ସେଇ କିଆରରେ ଶୋ' —ନା. ଗୀ.

'ବାଇଆର କି ଯାଏ ?
ବାଆ କଲେ ବସା ଦୋହଲୁଥାଏ' —ପ. ଗୀ.

'ବାଇଆ ପୁଅର କିସ ଯାଉଛୁ
ସେ ବାଆ କଲେ ଦୋହଲୁଛୁ
ଲମ୍ବା ତାଳ ଗଛ ବାଉଁ ବରଡ଼ାରେ
ବସାରେ ବସିଛୁ ଲୁଚ ।' —ନା. ଗୀ.

'ଗରଜିଲ ମେଘ ବରଷେ ନାହିଁ
ଭୁକିଲ କୁକୁର କାମୁଡ଼େ ନାହିଁ' —ପ. ଗୀ.

'ଘୋର ଘଡ଼ଘଡ଼ି ଘଡ଼ ଘଡ଼ ରଡ଼ି
କମ୍ପେ ପ୍ରାଣ ତାହା ଶୁଣି
ଗରଜିଲ ମେଘ ନ ବରଷେ ପାଣି
କିଏ କହୁଥାଏ ପୁଣି ।' —ନା. ଗୀ.

ନନ୍ଦକିଶୋରଙ୍କ କବିତାର ଅନ୍ୟ ଏକ ଅବଲମ୍ବନ ଢଗଢ଼ମାଳି, ଲୋକୋକ୍ତି । ତଳେ କେତୋଟି ତୁଳନାତ୍ମକ ଉଦ୍ଧୃତି ଦିଆଗଲା—

'ଗୋଟିଏ ଗୁଡ଼ଲରେ ଗଡ଼ା' —ଲୋକୋକ୍ତି
'ଗୋଟିଏ ଗୁଡ଼ଲେ ଯେତେକ ଦେହଟି ତା ଗଢ଼ା'
—'ଓଡ଼ିଆ ଲଳନା' ନ. କି.

'ଗୁଲୁଣି କହିଲା ଛୁଞ୍ଚିକି
ତୋ ପଛଆଡ଼େ ଗୋଟାଏ କଣା' —ଲୋକୋକ୍ତି

'ଗୋଦରା ଲୋ ତଳକୁ ଅନା' —ଲୋକୋକ୍ତି
'ଛୁଞ୍ଚି କହୁଅଛି ଗୋଦରା,
ନିଜ ଗୋଡ଼କୁ ଅନା' 'ଛୁଞ୍ଚି ଓ ଗୁଲୁଣୀ' ନ. କି.

'ଚମ ବାଇଦ କୋଶେ
ତୁଣ୍ଡ ବାଇଦ ସହସ୍ରେ କୋଶ' —ଢଗ
ଚମ ବାଇଦ ତ କୋଶେ
ତୁଣ୍ଡର ବାଇଦ ସହସ୍ରେ କୋଶ' —ନନ୍ଦକିଶୋର

'ଢିଙ୍କିଶାଳେ ଢେଙ୍କାନାଳ କଥା' —ଲୋକୋକ୍ତି
'ଢିଙ୍କିଶାଳ କଥା ଯାଇଁ ହେବ ଢେଙ୍କାନାଳେ' —ନ. କି.
'ଗାଁ ଜାଣଆଁ ସିଙ୍ଘାଣିନାକୀ' —ଢଗ
'ଗାଁ ଜାଣଆଁ ସିଙ୍ଘାଣିନାକୀଟା' —ନ. କି.
'ଅତି ପରଚୟେ ଗୌରବ ନଷ୍ଟ' —ଢଗ

'ଅତି ପରିଚୟେ ହୁଏ ଗଉରବ ନଷ୍ଟ' —ନ. କି.

'ଝିଣ୍ଟିକା ମାରି ବଣି ପୋଷିବା' —ରୂଢ଼ି ବଚନ

'ଝିଣ୍ଟିକା ମାରଣ ବଣି ପୋଷିବା କର୍ମ
ଜମିଦାର ଧନୀଙ୍କର ରାଜସ ଧର୍ମ ।' —ନ. କି.

'ତେଲିଆ ମୁଣ୍ଡରେ ତେଲ' —ରୂଢ଼ି ବଚନ

'ତେଲିଆ ମୁଣ୍ଡରେ ତେଲ ଢାଳିବା ବିଧି' —ନ. କି.

'ଜଗନ୍ନାଥଙ୍କର ବଡ଼ାଇ
କାହାକୁ ଦିଅନ୍ତି ପାଟ ପୀତାମ୍ବର
କାହାକୁ ଦିଅନ୍ତି ଗଡ଼ାଇ ।' —ଢଗ

'ଜଗନ୍ନାଥଙ୍କର ସିନା ଅଟଇ ବଡ଼ାଇ
କାହାକୁ ଦିଅନ୍ତି ପାଟ କାହାକୁ ଗଡ଼ାଇ ।'
—ଜେମାଦେଈ, ନ. କି.

'ଗାଁ ମୁଣ୍ଡ ଘର ବୈରକୁ
ବୁଢ଼ାକାଳ ବିହା ପରକୁ ।' —ଢଗ

'ଗାଁ ଶେଷ ମୁଣ୍ଡ ଘର ଅଟଇ ବୈରକୁ
ବୁଢ଼ାକାଳ ବିଭା ପରା ଅଟଇ ପରକୁ ।' —ଜେମାଦେଈ

'ଯାହା ମନ ଯହିଁକି ରସେ
ତାହା ବିନା ତାକୁ ଆନ ନ ଦିଶେ ।' —ଢଗ

'ଯାହା ମନ ଯାହାଠାରେ
ଲାଖିଯାଏ ରସେ
ତା ଲାଗି ନ ଦିଶେ କେହି
ରହେ ସେ ତା ବଶେ ।' —କଳଙ୍କିନୀ

'ନଈ ସେ ପାରିରେ ରାବୁଛି କୁଆ
କାହା ଘରେ ଅଛି ନଦା ଗୁଆ ?' —ନାଁ ଦିଆ

'ଅଲେ ସାରି ଅଲେ ଶୁଆ
କାହା ହାତେ ନଦା ଗୁଆ ?' —ନ. କି.

'ଦେଲାଠାରୁ ପୁଣ୍ୟ ନାହିଁ
ମାଗିଲାଠାରୁ ହୀନ ନାହିଁ ।' —ଢଗ

'ଦେଲାଠାରୁ ପୁଣ୍ୟ ନେଲାଠାରୁ ହୀନ ନାହିଁ
ସେ ବୋଲନ୍ତି ଜନେ ।' —ପଲ୍ଲୀଚିତ୍ର

'ପାପ ଧନ ପ୍ରାୟଶ୍ଚିତ୍ତରେ ଯାଏ ।' —ଢଗ

'ପାପ ଧନ ଯିନା ଯାଏ ପ୍ରାୟଶ୍ଚିତ୍ତେ ବୋଧ ।' —ପଲ୍ଲୀଚନ୍ଦ

'ବସି ଖାଇଲେ ନଈ ବାଲି ସରେ' —ଢଗ

'ବସି ଖାଇଲେ ତ ନଈ ବାଲି ସରେ
ଅଉ ତ ମିଳିବ ନାହିଁ ।' —ପ. ଚ.

'ଯେ ମାଗି ଖାଏ
ସେ ଲାଗି ଖାଏ ନାହିଁ ।' —ଲୋକୋକ୍ତି

'ମାଗି ଖାଇବ ଯେ ଲାଗି ନ ଖାଇବ' —ପ. ଚ.

'ଓଡ଼ିଆସେ ଦାତା ନେହି
ବନା ମାଡ଼ସେ ଦେତା ନେହି ।' —ହିନ୍ଦୀବଚନ

ଗଲାବେଳେ ସାଧୁ କଲ୍ୟାଣ କରନ୍ତି
ଓଡ଼ିଆସେ ଦାତା ନାହିଁ
ମାରେ ବନା ଦେତା ନାହିଁ ଏହା କହି
ଅନ୍ତର୍ହିତ ହୁଏ କାହିଁ ।' —ପ. ଚ.

ପଲ୍ଲୀଗୀତ ବା ଢଗଢମାଳି ନନ୍ଦକିଶୋରଙ୍କ କାବ୍ୟକଳାର ସବଳ ପୋଷକ ବା ପରିପୂରକ ହୋଇପାରି ନାହିଁ । ବରଂ ତାଙ୍କ ସ୍ୱାଧୀନ ଦିଗ୍‌ବଳୟ ସୀମିତ ହୋଇ ଯାଇଅଛି । ସ୍ୱଚ୍ଛନ୍ଦ, ସାବଳୀଳ ଦୃଷ୍ଟି ଏକ ସ୍ୱେଚ୍ଛାଗୃହୀତ ଆବରଣରେ ଆଚ୍ଛନ୍ନ ହୋଇଯାଇଛି । ଏକ ଭଦ୍ରଙ୍କର କଣା ପରି ଏହା ତାଙ୍କୁ ଗୁପି ଧରିଛି, ବୋରଖାଙ୍କି ପରି ଘେରି ଯାଇଛି । ଆଡ଼େଇ ଆଗେଇ ଯିବାକୁ ଯେପରି କି ତାଙ୍କ ବଳ ପାଇନାହିଁ ।

ବେଳେ ବେଳେ ଏହା ହୋଇଛି ରୂପଭେକଲେଖି କାକର ମୟୂରପୁଚ୍ଛ ପରି । ସେ କାକ ଅନ୍ୟର ବାର୍ତ୍ତା ଦେବ କଣ ? ନିଜର ମୌଳିକ ସତ୍ତା, ସ୍ୱାଧୀନ ବାର୍ତ୍ତା ଦେବାର ଶକ୍ତି ଯେ ହରାଇ ବସିଛି !

ନନ୍ଦକିଶୋରଙ୍କ କବିତ୍ୱର ଧାରା ବିଲୁପ୍ତ ହୋଇଛି ଲୋକସାହିତ୍ୟ ମଧ୍ୟରେ । ଏହାକୁ ଏକ ଦୁଃଖାତ୍ମକ ପରିଣତି ବୋଲିଯାଇପାରେ ।

ଲୋକସାଧାରଣଙ୍କ ସ୍ତରକୁ କବିତାକୁ ଘେନିଯିବା ତାଙ୍କର ଲକ୍ଷ୍ୟ ଥିଲା । ତାହା ସାଧିତ ହୋଇଛି । ଏହି ମହତ୍ ଆଭିମୁଖ୍ୟ ଯୋଗୁଁ ନନ୍ଦକିଶୋର ଆଧୁନିକ କବିମଣ୍ଡଳୀର ପୁରୋଭାଗରେ ଅବତୀର୍ଣ୍ଣ । ସେହି ବିଭବରେ ସେ ଆଧୁନିକ କବି-ମାନଙ୍କର ଆଦର୍ଶ ହୋଇଛନ୍ତି—କେବଳ ବୋଧ ନୁହନ୍ତି, ସୁବୋଧ, ଶିଶୁଠାରୁ

ସବା ତଳ ପାହାଚର ଲୋକଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କର । ଓଡ଼ିଆ କବିତାକୁ ସେ ବ୍ୟାପକତର ଆସ୍ଥାନ ଦେଇଛନ୍ତି—ତା ଲାଗି ପୀଠ ଗଢ଼ିଛନ୍ତି ସମାଜର ନିମ୍ନତମ ଭୂମିରେ ।

ତାଙ୍କ କବିତାର ଭାଷା ଲୋକଭାଷା, ତାର ଶୈଳୀ ଲୋକଙ୍କ କଥନଭଙ୍ଗୀ, ସ୍ୱାଭାବିକ, ସ୍ୱତଃସ୍ଫୂର୍ତ୍ତି । ଭାବ ଯେତେ ସୁଦୂରପ୍ରସାରୀ ହେଲେ ବି ତାର ଚେର ନିମ୍ନତମ ଭୂମିର ଅନ୍ତସ୍ଥଳରେ । ଦେଶର ସାଂସ୍କୃତିକ ଐକ୍ୟ ଓ ବିଶ୍ୱସହିତ ଲାଗି ଏହା ଆବଶ୍ୟକ ।

* –

# 'ଗଣ' କବି ନନ୍ଦକିଶୋର

ନନ୍ଦକିଶୋର ବାହାରେ ସହରୀ, କିନ୍ତୁ ଭିତରେ ଏକାନ୍ତ ଗା'ର, ଗାଉଁଲି । ନଗରନଗରୀର ବହୁ ରୂପଛବି ସ୍ମୃତି ହୋଇ ତାଙ୍କ ମନରେ ମିଳିଯାଇ-ଅଛି । କିନ୍ତୁ ବାଲ୍ୟ କୈଶୋରରେ ଅନୁଭୂତ ଗ୍ରାମର ଭାବ ଆଜୀବନ ଜୀବନ୍ତ ହୋଇ ରହିଅଛି । ନିଜ ଭିତରେ ସେ ସରସ ସୁନ୍ଦର ଗ୍ରାମକୁ ନୂତନଭାବରେ ଆବିଷ୍କାର କରିଛନ୍ତି, ନିଜେ ମଧ୍ୟ ପ୍ରକୃତ ରୂପରେ ଆବିଷ୍କୃତ ହୋଇଛନ୍ତି । ତାଙ୍କ ପ୍ରତିଭା ବହୁ ବନ ପର୍ବତରେ ପଥହରା ହୋଇ ଶେଷରେ ନିଜର ବିକାଶ ପଥ ଖୋଜି ପାଇଲା । ଗାଆଁ ଗୋହିରୀର କିଆଫୁଲର ବାସନାରେ କିମ୍ବା ଗାଉଁଲି କିଶୋରୀଙ୍କ ଦୋଳି ବା ପୁଚି ଖେଳର ଗୀତଛନ୍ଦରେ । ଉତ୍କଳଭାରତୀଙ୍କ କାବ୍ୟୋଦ୍ୟାନରେ ନୂତନ ଫୁଲର ମହକ । ଏହି ଫୁଲକୁ ବନଫୁଲ ବୋଲି ମହା କବିମାନେ ଅବହେଳାରେ ଆଡ଼େଇ ଦେଇ ଯାଇଥିଲେ । ନନ୍ଦକିଶୋର ନୂଆ କରି ଏହାର ରୂପ ଆଣି ନିଜ ଉଦ୍ୟାନରେ ରୋପିଲେ ।

କବିଙ୍କ କବିତାରେ ଫୁଟି ଉଠେ ତାଙ୍କର ଅପୂର୍ବ ଶିଳ୍ପୀ ମନ, ନିରାଡ଼ମ୍ବର ବ୍ୟକ୍ତିତ୍ୱ; ସରଳ ସୁକୁମାର ରୂପ ସ୍ପର୍ଶ ମଧ୍ୟରେ ଦରଦୀ ଅଶ୍ରୁ । ଏହାକୁ ଯେ ପର୍ଯ୍ୟନ୍ତ ବଞ୍ଚାଇଥିଲେ, ବଞ୍ଚିଥିଲି ତାଙ୍କ ମଧ୍ୟରେ କବିତା । ତାଙ୍କର କବିମନ ଗାଆଁର ଲାଜ-କୁଳୀ ଫୁଲ ପରି ସଲଜ୍ଜ, ପଦ୍ମ ପରି ସତେଜ ଓ ପାଣିଶିଉଳି ଫୁଲ ପରି ସରଳ । କୃଷ୍ଣପୁର ଗାଆଁରେ, ବିରୂପା ନଈ କୂଳରେ କେତେ ଫୁଲ ଫୁଟି ଝଡ଼ିଗଲଣି, କିନ୍ତୁ ନନ୍ଦକିଶୋରଙ୍କ ମନ ବଞ୍ଚିଛି ତାଙ୍କ କାବ୍ୟ ଭିତର ଦେଇ ଆମ ଭିତରେ, ବଞ୍ଚିବ ଆମ ଭିତର ଦେଇ ଅନନ୍ତ ଆଗାମୀ ମଧ୍ୟରେ ।

ଫକୀରମୋହନଙ୍କ ଭାଷାରେ ତାଙ୍କ କବିତା ସତେ କି ବିନା ଚିନ୍ତାରେ ଲେଖନୀରୁ ବୋହି ଯାଇଛି । ସେ ଯେପରିକି ଅନାଘ୍ରାତ ପୁଷ୍ପ, ଅଙ୍ଗୁଳି ଦ୍ୱାରା ଅକଳୁଷିତ କିଶଳୟ । ତା ମଧ୍ୟରେ ଚେଷ୍ଟାର କର୍କଶତା ନାହିଁ, ଚିନ୍ତାର କ୍ଲିଷ୍ଟତା ନାହିଁ, ଜ୍ଞାନର ଗାମ୍ଭୀର୍ଯ୍ୟ ନାହିଁ, ଦର୍ଶନର ଅସ୍ପଷ୍ଟତା ନାହିଁ । କେବଳ ତରଳ ଅନୁଭୂତିର ଅବାରିତ ନିଃସରଣ ଅଛି । ସେଥିରେ ଅଳଙ୍କାରର ଝଙ୍କାର ନାହିଁ, ଆଭିଜାତ୍ୟର ଆଡ଼ମ୍ବର ନାହିଁ କି କଳ୍ପନାର ଅତ୍ୟୁକ୍ତି ବିଳାସ ନାହିଁ । ଅଛି ଗ୍ରାମ୍ୟ ବାଳିକାର ମଧୁର ସ୍ମିତ, ଦୁଃଖୀ ଜୀବନର ସୁଖସ୍ମୃତିର କରୁଣତା, ପ୍ରତିଦିନ ଅନୁଭୂତ ସୁଖ ଦୁଃଖର ଲୀଳାଞ୍ଜଳି । ସେ କବିତା ଗାଉଁଲି ଜୀବନରୁ ଭିନ୍ନ ନୁହେ;

ଏକ ବୃନ୍ତର ଦୁଇଟି ଫୁଲ ପରି କିଏ ଜୀବନ, କିଏ କବିତା ବାରି ହୁଏ ନାହିଁ । ଗାଆଁ ମରମରେ ଗୁଞ୍ଜରୁଥିବା ଅସଲ ସ୍ୱରଟିକି ନାଥର କେନ୍ଦରା ନୁହେ, ତାଙ୍କ ନିଜର କେନ୍ଦରା ବେଶ୍ ଧରି ପାରିଛି ।

ଓଡ଼ିଶାର ରାଜା ନ ହୋଇ ସେ ହୋଇଥିଲେ ସବୁ ଗାଆଁର ଅଧିକାରୀ; ଗାମର ଫସ୍କୁଟିକ ଏତେ ନିଜର ଅଉ କିଏ କରିପାରିଥିଲା ତାଙ୍କ ପରି ? ଫୁଲେ ଫୁଲେ ବୁଲୁଥିଲା ତାଙ୍କର ମନ, କେତେବେଳେ କୃଷାଣ କିଶୋରୀର ସ୍ୱପ୍ନେ ସ୍ୱପ୍ନେ । କେତେବେଳେ ବଣିର ବସାରେ ପଶି ଆଉଁସୁଥିଲା ତାର ଦେହ, କୁଆକୁ ଦେଉଥିଲା ଆଧାର, ସାରିକୁ ଶିଖାଉଥିଲା କଥା, ଅସଜା ବେଙ୍ଗୁଲିକି କରୁଥିଲା ଆକଟ, ଚୁଟିଆ ମୂଷା ପ୍ରତି ପ୍ରକାଶୁଥିଲା ଦରଦ । ବନସ୍ତର ଏ ଲତାପତ୍ର, ଏ ଫୁଲଫଳ, ହସ ଖୁସିରେ ମୁଖର ଏ ଗାଧୁଆ ତୁଠ, ଏ ମନମତାଣିଆ ଡାଆଣିଆ ଖରା, ଏ ବସନ୍ତ ସକାଳର ନାଲି କୁହୁଡ଼ି, ଏ ରଙ୍ଗ ମାଧବ ବୋହୂ, ଏ ଚିତ୍ର ପ୍ରଜାପତି ସବୁ ତାଙ୍କର ନିଜସ୍ୱ ।

ଗଛଲତା, ଜୀବଜନ୍ତୁ ଓ ମଣିଷ ତାଙ୍କ କାବ୍ୟରେ ଏକାନ୍ନବର୍ତ୍ତୀ ପରିବାରରେ ବାସ କରୁଛନ୍ତି । ସ୍ଥୂଳଦୃଷ୍ଟିରେ ସେ ସବୁ ଭିନ୍ନ । ଯୋଗୀର ବ୍ରହ୍ମମୟ ଦୃଷ୍ଟି ପରି କବିର ରସମୟ ଦୃଷ୍ଟିରେ ସେମାନେ ଏକ—ଅଭିନ୍ନ । ଅନନ୍ତ କାଳ ଧରି ଏଇ ସଖ୍ୟ, ଏଇ ଘରୋଇ ସମ୍ପର୍କ—ଏଇ ଅନ୍ତରଙ୍ଗତା ଚାଲି ଆସିଛି । କବିତା ହେଉଛି ଏ ସମ୍ପର୍କର ଯୋଗସୂତ୍ର ।

ରାଧାନମି ରାତିରେ ଝିଅମାନଙ୍କ ପୁଚିଖେଳ, ବିଲରେ ହଳିଆ ଓ ନଈରେ ନାଉରିଆର ପ୍ରାଣଖୋଲା ଗୀତ, କେଳୁଣୀର ଚଡ଼ାକୁଟା, ନାଥର କେନ୍ଦରାବଜା, ପୋଖରୀ ହୁଡ଼ାରେ ମଈଁଷିଆଳର ଧୁଡ଼ୁକୁବଜା, ବାଉଁଶରାଣୀର ଅସାଧ୍ୟ ଖେଳ, ଗାଈଜଗା ଟୋକାଙ୍କର ଡାଳିମାକୁଡ଼ି ଓ ଡାବଲପୁଆ ଖେଳ, ଶଉରି ଶଉରୁଣୀଙ୍କର ଜାମୁଡ଼ାଳୀ ନାଚ, କେଳାର ହାବୁଡ଼ା ଖେଳ, ଖୁଦୁରୁକୁଣୀର ତଅପୋଇ ଗୀତ, ବୁଢ଼ୀ ମାଆର କାହାଣୀକୁହା, ଦୋକାନର ଜାଳିବାସି ସଉଦାଦିଆ, ଗାଆଁର ଚାଟଶାଳୀ ଅବଧାନ, ଭାଗବତ ଟୁଙ୍ଗୀରେ ଭାଗବତବୋଲା, ଖଣ୍ଡାଇତଙ୍କ ଲଖବନ୍ଧା, ପଞ୍ଚାୟତଙ୍କ ନ୍ୟାୟନିଶାପ, କଳିକାଣ୍ଡୋଇ ଗାଆଁ ମାଇପୀଙ୍କ ଝଗଡ଼ା, ବ୍ରାହ୍ମଣଙ୍କ ଦର୍ଶନଚର୍ଚ୍ଚା ସଙ୍ଗେ ଚୁଡ଼ାଦହି, କୀର୍ତ୍ତନିଆଙ୍କ ଦୋମିଶା ଭାଷାରେ କୀର୍ତ୍ତନ, ପିଲାଙ୍କ ପ୍ରଜାପତିଧରା, ଛତୁତୋଳା, ଗୁରୁ-ଗୋସେଇଁଙ୍କ ଦୀକ୍ଷାଦାନ, ଜମିଦାରଙ୍କ ଆଡ଼ମ୍ବର, ସାହୁକାରଙ୍କ କାର୍ପଣ୍ୟ ପ୍ରଭୃତି ସେ କାଳର ଗ୍ରାମୀଣ ବିଭିନ୍ନ ବିଭବ ଉପରେ କବିଙ୍କ ଦୃଷ୍ଟି ପଡ଼ିଛି । ପାଣି ଆଣୁ ଆଣୁ ଖସଡ଼ା ବାଟରେ ନୂଆ ବୋହୂ ପଡ଼ିଯିବା ଓ ପିଲାମାନେ ହସିଉଠିବା, ବଣି ଚଢ଼େଇକି ପଞ୍ଜୁରୀରେ ଦୁଧଭାତ ଖାଇ ରହିବା ଲାଗି ପିଲାଟି ବୁଝେଇବା ଓ 'ବଣ ଭଲ' ବୋଲି କହି ବଣିଚଢ଼େଇ ଉଡ଼ିଯିବା, ବାଲୁଆ, କୁନ୍ଦ୍ରୀକାଉ ବା ଡାମରାକାଉ,

ବିଲେଇ, ବେଙ୍ଗୁଲି, ଚୁଟିଆମୂଷା, ସାଧବବୋହୂ ପୋକ ମଧ୍ଯ ତାଙ୍କ ଆଖି ଆଢ଼ୁଆଳରେ ରହି ଯାଇନାହିଁ ।

ପାଚିଲା ଧାନବିଲରେ କୁଡ଼ିଆ ମାରି କୃଷକ ପକ୍ଷୀ ଉଡ଼ାଇବା, ଝୋଲାରେ ବେଙ୍ଗଲା ପକାଇବା, 'ନୂଆଖିଆ' ମଉଚ୍ଛ କରିବା, ବିଧବା ହବିଷ୍ୟ ମାସରେ 'ଆକାଶ ଦୀପ' ଜଳାଇବା, ଧର୍ମପ୍ରାଣ ଲୋକେ କାର୍ତ୍ତିକ ସ୍ନାନ କରିବା, ପଯ୍ଯାଶ୍ରାଦ୍ଧ ରାତରେ ବଡ଼ବଡ଼ିଆଙ୍କୁ ଡାକିବା, କାର୍ତ୍ତିକ ପୂର୍ଣ୍ଣିମା ଦିନ ଆଳଦ୍ଧ କାଠି ଜାଳି କଦଳୀ ପଟୁକା ଡଙ୍ଗା ଗୁଡ଼ି ଦେବା; ବଡ଼ ଓଷାରେ ଓଷେଇଣୁଣୀମାନେ ଧବଳେଶ୍ୱରଙ୍କୁ ଗଜମଣ୍ଡା ମନାସିବା, କୁମାରୀମାନେ ଚଉରାରେ ବୃନ୍ଦାବତୀ ଓ ପୋଖରୀ କୂଠରେ ବାଲୁଙ୍କା ପୂଜା କରିବା, ବର ପାଲିଙ୍କିରେ ଚଢ଼ି ବାଣନିଶାଣ ଶଙ୍ଖମହୁରୀ ଘଣ୍ଟାରେ ସଲଝଣରେ ଶୋଭାଯାତ୍ରା କରିଯିବା, ଅବିବାହିତା କନ୍ୟା କୋଇଲି ବୁଡ଼ ପକେଇବା, କିଶୋରୀମାନେ ସଙ୍ଗାତୁଣୀ, ମିତଣୀ, ବଉଳ, ମକର, ଗଜା-ମୁଗ, ଅଭଡ଼ା, ତୁଳସୀ, ଗଙ୍ଗାଜଳ ବସିବା, ବୁଢ଼ାବରରେ କନ୍ୟା ସମର୍ପି ଦେବା, ବାଳଶ୍ରୀ ବିଧବା ହୋଇ ଦୁଃଖଯାତନା ଭୋଗିବା ପ୍ରଭୃତି ବିଭିନ୍ନ ଓଷାବ୍ରତ, ଠାକୁର ପୂଜା, ସାମାଜିକ ରୀତି, ସ୍ନେହର ସମ୍ପର୍କ, କୁସଂସ୍କାର ଓ ଅନ୍ଧ ବିଶ୍ୱାସ କବିଙ୍କ କାବ୍ୟିକ ଓ ସଂସ୍କାରକ ଦୃଷ୍ଟିରେ ବିଚିତ୍ର ରୂପରେ ରୂପାୟିତ ହୋଇଅଛି ।

କବି ସାରାଜୀବନ ପଲ୍ଲୀ ପରିବେଶରେ କଟାଇ ଥିଲେ, ସେଇ ପରିବେଶକୁ ସେ ଆଧୁନିକ ହେବା ପ୍ରୟାସରେ ଏଡ଼ି ଯାଇ ନାହାନ୍ତି । ଗ୍ରାମ ସ୍କୁଲମାନଙ୍କରେ ତାଙ୍କ ଗୀତର ଆବୃତ୍ତି ହେଉଥିଲା, ଗ୍ରାମେ ଗ୍ରାମେ ସେ ହୋଇଥିଲେ ଲୋକପ୍ରିୟ ପଲ୍ଲୀକବି ।

'ନିର୍ଝରିଣୀ', 'ତରଙ୍ଗିଣୀ' ଓ 'ନାନା ବାୟା ଗୀତ'ର ଅନେକ କବିତା ଗାଉଁଲି ଗୀତ ପରି ସରଳ, ସୁକୁମାର ବୋଧ ହୁଏ । କବି ନିଜେ ଲେଖିଛନ୍ତି କି ସଂଗ୍ରହ କରି ନିଜ କବିତାରେ ଲଗାଇଛନ୍ତି ଜଣାଯାଏ ନାହିଁ । ଢଗଢ଼ମାଳି, ପହେଳି, ପ୍ରବଚନ, ଛଟା, ଡାକବଚନ, ହଳିଆ ଶଗଡ଼ିଆ ନାଉରିଆ ଗୀତ, ପିଲାଙ୍କ ଖେଳ ଗୀତ, ପିଲା ଶୁଆଇବା ଗୀତ, ଦୋଳି ଓ ପୁଚିଖେଳ ଗୀତ, ଓଷା ବ୍ରତ ପୁଣ୍ୟ-ପରବର ଗୀତ, ମାଇପୀଙ୍କ କାନ୍ଦଣା ତାଙ୍କ ମନ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଅଛି । ସେଠି ସେ ହୋଇଛନ୍ତି ଜୀବନର କବି । ଯେଉଁଠି ସେ ରାଧାନାଥ ଓ ମଧୁସୂଦନଙ୍କୁ ଅନୁସରଣ କରିଛନ୍ତି, ସେ ହୋଇଛନ୍ତି ଜଣେ ଅନୁକରଣପ୍ରିୟ ସାଧାରଣ ଲେଖକ । ଶର୍ମିଷ୍ଠା ଓ କୃଷ୍ଣକୁମାରୀ ରଚନାରେ କବିଙ୍କର ସେପରି କିଛି ବୈଶିଷ୍ଟ୍ୟ ଫୁଟି ନାହିଁ ।

ଆତ୍ମପ୍ରତ୍ୟୟ କାବ୍ୟରଚନାର ମୂଳମନ୍ତ୍ର । ଉକ୍ତ ରଚନାଦ୍ୱୟରେ ତାର ଅଭାବ ଦେଖାଯାଏ । ଏଠାରେ ସେ ହୋଇଛନ୍ତି ରାଧାନାଥଙ୍କ ସୌରଚକ୍ରର ସାଧାରଣ ଗ୍ରହ; ତାର ଅସ୍ତିତ୍ୱ ଅଛି, ଆଲୋକ ବା ଉତ୍ତାପ ନାହିଁ । ହୃଦୟର ଗଭୀର ପ୍ରୀତି ନ ଦେଇ ସେ ଦେଇଛନ୍ତି ନୀରସ ନୀତି, ନ ହେଲେ ପ୍ରଚଣ୍ଡ ଶବ୍ଦର ଭୀତି, ଅବଧାନ ସାଜି ଅଭିଧାନ ଖୋଲିଛନ୍ତି, ହୃଦୟଉଦ୍ୟାନ ଛାଡ଼ି ସେ ଜ୍ଞାନର ଗହନକୁ ଯାଇଛନ୍ତି ଫୁଲ ତୋଳି । କଣ୍ଟକରେ କ୍ଷତବିକ୍ଷତ ହେବା ହିଁ ହୋଇଛି ସାର ।

କିନ୍ତୁ ପଲ୍ଲୀକବିତାରଚନାରେ ପ୍ରତିଭା ତାର ପ୍ରକୃତ ପଥ ଖୋଜି ପାଇଛି । ସେ ହୋଇଛନ୍ତି ସ୍ୱତନ୍ତ୍ର ଧାରାର ପ୍ରବର୍ତ୍ତକ; ତାଙ୍କ କବିତା ନୂଆ ଆଷାଢ଼ର ପହିଲିଧାରାରେ କେଶୁର ଗଛ ପରି ଫୁଟି ବାହାରିଛି । ସଫା ଆଲୁଅ ଓ ଖୋଲା ପବନ ପାଇ ବଢ଼ିଛି ସେ । କବି ମିଛରେ ରଜାଙ୍କୁ ଖୋଜି ବୁଲୁଛନ୍ତି । ଜାଣନ୍ତି ନାହିଁ ଯେ ସେ ନିଜେ ରାଜା—ଅଗଣିତ ମନରେ ତାଙ୍କର ରାଜୁତି । ଗ୍ରାମେ ଗ୍ରାମେ ତାଙ୍କ କୀର୍ତ୍ତିର ତେଲିଙ୍ଗିବାଜା ବାଜୁଛି । ସୁରବାଳା ଇନ୍ଦ୍ରଧନୁର ଫାଟକ ଖୋଲି ଚାହୁଁଛନ୍ତି ।

କବିଙ୍କ ଭାଷା ଲୋକଭାଷା—ଗାଉଁଲି ସ୍ୱଭାବର ଅନୁବର୍ତ୍ତୀ—ସ୍ୱଭାବୋକ୍ତିରେ ପରିପୂର୍ଣ୍ଣ—ପ୍ରାକୃତିକ । ସ୍ୱତଃସ୍ଫୂର୍ତ୍ତି ତାର ଉତ୍ସ, ସାବଲୀଳ ତାର ପ୍ରବାହ, ଏହାର ଦୃଢ଼ ବଳିଷ୍ଠତା ଅଛି । କାରଣ ଜନସମାଜର ଗଭୀରତମ ସ୍ତର ଭେଦକରି ଏହା ଉଠିଛି । ହିଡ଼ମାଉଁସରେ ଚକ୍ରପରି ଢଗଢ଼ମାଳି ପ୍ରଭୃତି ମିଶିରହି ତାଙ୍କ କବିତାକୁ ବିଶେଷ ଶକ୍ତି ଦେଇଛି । 'ଟିଙ୍କିଣୀ ଲକଥା ଯାଇ ହେବ ଢେଙ୍କାନାଳେ', 'ଗଡ଼ଆ-ଗଙ୍ଗା ମନ ତତ୍ତ୍ୱ କଲେ', 'ଦୁହିତା, ଦୁଇ କୁଳକୁ ହିତା ଅବା ପିତା', 'ମହତ ଗଲେଟି ଭଲେ ନ ଆସଇ ଆଉ', 'ନେଡ଼ିର ଚୋରାଣି ଯିବ କହୁଣୀକି ବୋହି', 'ହିଣ୍ଡିକା ମାରଣ ବଣି ପୋଷିବା କର୍ମ', 'ତେଲିଆମୁଣ୍ଡରେ ତେଲ ଢାଳିବା ବିଧି', 'ସାହସରେ ମରି ସାହସେ ଘର ଦୁଆର କରି', 'ବିଲୁଆ ନନା, ଘର ପୋଡ଼ିଗଲା ପଛକୁ ଅନା' ପ୍ରଭୃତି ସାର ନିର୍ଯ୍ୟାସ ପରି କବିତାର ଧମନୀରେ ପ୍ରବାହିତ ହେଉ-ଅଛି ।

କୌଣସି କୌଣସି ସ୍ଥାନରେ ଲୋକକବିତାର ଅଂଶମାନ ଆଣି ତାଙ୍କ ନିଜ କବିତାରେ ଖଞ୍ଜି ଦେଇଛନ୍ତି । ତାଙ୍କ ଜାଣତରେ ହେଉ ବା ଅଜାଣରେ ହେଉ, ଏହା ଅନୁକୂଳ ଅତିଥି ପରି ପ୍ରବେଶ ଲାଭକରି ତାଙ୍କ କବିତାର ମାଧୁର୍ଯ୍ୟ ବହୁ ପରିମାଣରେ ବଢ଼ାଇ ଦେଇଛି ।

ବାଡ଼ିତଳେ କି କି ଫୁଲ ଅରୁଆ ମରୁଆ
ବାଡ଼ି ତଳେ ଛାଡ଼ି ଅଇଲି ସିନ୍ଦୂର ଫରୁଆ ।

ସିନ୍ଦୂର ଫରୁଆଗୋଟି କୁଆ ଚେଢ଼ପୋ ନେଲା,
କୁଆ ଚେଢ଼ପୋ ହାତ ଗୋଡ଼ ଦେଉଳ ତୋଳାଇଲା ।
ଦେଉଳର ଗୃହପଟେ କଉଡ଼ି ଗଣାଇଲା,
କଉଡ଼ିରୁ କଡ଼େ ଊଣା ହେବାରୁ ମଇଁଷି ବିକେଇଲା ।
× × ×
କନିଆର କାଚ ହ ମୁଠି ଝୁମୁରୁ ଝୁମୁରୁ ବାଜେ,
ବରର ପଇତା ଟି ତାର ଦୁଧଭାତକୁ ସାଜେ ।
(ପଲ୍ଲୀଝରଣା, ପୃଃ ୧୧୯)

ପଲଙ୍କେ ଅଇଲା ଗୁଣ୍ଡି ସିନ୍ଦୂର ଫରୁଆ,
କିଏ ଚୋର କରିନେଲା ସିନ୍ଦୂର ଫରୁଆ ?
ମୋ ସିନ୍ଦୂର ଫରୁଆଟି ନେଲା ରଜାପୁଅ ।
× × ×
ରଜାପୁଅ ରହିବ ବୋଲି ଦେଉଳ ତୋଳାଇଲା,
ଦେଉଳ ଗୃହ ପିଠିପାକ କଉଡ଼ି ମଣ୍ଡାଇଲା,
କଡ଼େ କଉଡ଼ି ଊଣା ହେଲା କନ୍ୟା ମୂଲାଇଲା ।
କନ୍ୟା ହାତରେ କାଚ ଯୋଡ଼ିକ ଝୁଣୁ ଝୁମୁ ବାଜେ,
ବୋଉ ହାତରେ ସୁନା ପଇତା ଖଣ୍ଡେ ଦୂରକୁ ସାଜେ ।
(ନାନାବାୟା ଗୀତ)

ଡାମରା କୁଆରେ ଡାମରା କୁଆ,
ଉଚ୍ଚ ପରବତେ ବୋବାଉ ଥାଆ ।
ଉଚ୍ଚ ପରବତ କୁଚୁକୁଚିଆ
ତହିଁରେ ବସିଲେ ତିନି ଭେଣ୍ଡିଆ ।
ତିନି ତିନି ପଣ ଚଉଦ ପଣ
ଭାଉଜଙ୍କୁ ବୋଲ ଦଉଡ଼ି ଗଣ ।
କଉଡ଼ି ଗଣୁ ଗଣୁ ପାହିଲା ରାତି,
ଚୋର ନେଇଗଲା କଜଳ ପାତି ।
ଅସ ହେ ସଙ୍ଗାତ ଗାଧୋଇ ଯିବା,
କଇଁଚ କାକୁଡ଼ି ତୋଳି ଆଣିବା ।
କଇଁଚ କାକୁଡ଼ି ମୁଣ୍ଡିଟି ପିତା,
'ଛି' ଭାଇଙ୍କର 'ଛି' ମୁକୁତା ।

ମଝିଆଁ ବୋହୂର ଅମ୍ବିଳି କାଉ,
ତାହା ଖାଇଗଲା ଓଲେଇ ବୋଉ ।
ଓଲେଇ ଯାଇଛି ବାପ ଘରକୁ
ଯାହା ଆଣିଥିବ ମୋ ଘରକୁ ।
ମୋ ଘରଟି ଠେଲା ପେଲା,
ଷାଠିଏ ଟଙ୍କାର ବଳଦ ମଲା ।
(ପ: ଗୀ: ସ:; ୨ୟ ଭାଗ)

ଡାମରା କାଉରେ ଡାମରା କାଉ,
ଉଞ୍ଚ ପରବତେ ବୋବାଉ ଥାଉ ।
ଉଞ୍ଚ ପରବତ କୁଞ୍ଚିକୁଞ୍ଚିକା,
ତହିଁରେ ବସିଛି ଡନ ମଞ୍ଜିକା ।
ଢନ ଢନ ପଣ ଅଠର ପଣ,
ଖାଇଙ୍କି ଉକାଇ କଉଡ଼ି ଗଣ ।
କଉଡ଼ି ଗଣାରେ ପାହିଲା ରାତି,
କୁଆ ନେଇଗଲା କଜଳପାତି ।
ଷାଠିଏ ଟଙ୍କାର ବଳଦ ମଲା,
ଏକା କାଳୀ ଗାଈ ମଥାନ କଲା ।

ଆସ ଗୋ ସଙ୍ଗାତ ଗାଧୋଇଯିବା,
କଇଁଚ କାକୁଡ଼ି ତୋଳି ଆଣିବା ।
କଇଁଚ କାକୁଡ଼ି ମୁଣ୍ଡରେ ପିତା,
ଛ' ବୋହୂଙ୍କର ଛ' ଦୁହିତା ।
(ନାନାବାୟା ଗୀତ)

ମେଘ ବରଷିଲା ଟପର ଟପର
ମାଣ୍ଡିଆ ହୋଇଲା ଗଜା
କେଉଁ ପରବତେ ରହିଲେ ରଜା ହୋ
ଖାଇବେ କାଙ୍କଡ଼ ଭଜା ।
(ପ:ଗୀ:ସ:, ୨ୟ ଭାଗ)

ମେଘ ବରଷିଲା ଟପର ଟପର
କେସୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା । (ନର୍ତ୍ତଶଣୀ)

ଗହମ ଚଲେଇ ଦେଲି ପକେଇଦେଲି ଗୋଡ଼ି,
କୋଉ ଘଇଜରୁ ଉଡ଼ିଅଇଲେ ପାରି ଯୋଡ଼ି ଯୋଡ଼ି ।
ଆସ ଆସ ପାରିମାନେ ମୋ ପିଣ୍ଡାରେ ବସ,
ଖାଇବାକୁ ଦେବି ତୁମକୁ ଅଳେଇଚ ରସ ।
ପିଇବାକୁ ଦେବି ତୁମକୁ ମହାନଦୀ ପାଣି,
ଶୋଇବାକୁ ଦେବି ତୁମକୁ ପଲଙ୍କ ମଶୁଣି ।
ଶୋଇବାକୁ ଦେବି ତୁମକୁ ଖଟ ଯେ ପଲଙ୍କ,
ଜାଳିବାକୁ ଦେବି ତୁମକୁ ମାଣିକର ଦୀପ ।

(ପଃଗୀ:ସ:, ୨ୟ ଭାଗ)

ଡାଆଣିଆ ଖରା ପଡ଼ିଚ
ବେଲ ଯାଉଚ ବୁଡ଼ି,
କି ସୁନ୍ଦର ପାରି ଯୋଡ଼ିଏ
ଯାଉ ଅଛନ୍ତି ଉଡ଼ି ।
ଆସ ଆସ ପାରି ଯୋଡ଼ିକ
ମୋର ପିଣ୍ଡାରେ ବସ,
ଖାଇବାକୁ ଦେବି ତୁମକୁ
ମୁହିଁ ନଡ଼ିଆ ରସ ।
ପିଇବାକୁ ଦେବି ତୁମକୁ
ପଦ୍ମ ପୋଖରୀ ପାଣି,
ଶୋଇବାକୁ ଦେବି ଖଟୁଲି
ମାଳୀଘରୁ ମୁଁ ଆଣି ।
ମାଳୀଘର ଖଟୁଲିରେ ଯେ
ବାଉଁଶର ପାଢଆ
ରଜାଘର ଝିଅ ପାଦରେ
ରତନର ଝୁଣ୍ଟିଆ ।

(ନର୍ଦ୍ଦରଣୀ)

ଅନ୍ୟ ଏକ ଲୋକଗୀତରେ:—

ଖାଇବାକୁ ଦେବି ତୁମକୁ ନଡ଼ିଆର ରସ
ଶୋଇବାକୁ ଦେବି ତୁମକୁ ମାଳୀଘର ଖଟଣି
ମାଳୀଘର ଖଟୁଲିରେ ଲଗିଛୁ ପାଢଆ
ହଲାଇ ଦେଲେ ପଡ଼ିଯିବ ଗୋଡ଼ର ଝୁଣ୍ଟିଆ ।

(ପ:ଗୀ:ସ:)

ମେଘ ବରଷଇ ଝୁପୁରୁ ଝୁପୁରୁ
ବାଡ଼ଆଡ଼େ ଗୋଟେ କିଏ ରେ,
ବାରି ପଛଆଡ଼େ ମହଣପତର
ମୁଣ୍ଡରେ ଗୋଟିଏ ଦେ ରେ ।
(ପ:ଗୀ:ସ:, ୨ୟ ଭାଗ)

ଶେଯେ ଶୋଇ ହୁସୁଥାଏ
ଏ ଟୋକାଟି କିଏରେ,
କଜଳପାତି କହୁଯାଉଛୁ
ମୁଣ୍ଡରେ ଲୁଗା ଦେ ରେ ।
(ନାନାବାୟା ଗୀତ ।)

କେତେକ ଗାଉଁଲି ଗୀତର ପ୍ରଥମ ଧାଡ଼ି ପରି ନନ୍ଦକିଶୋରଙ୍କ କେତେକ କବିତାର ପ୍ରଥମାଂଶ ଅର୍ଥହୀନ । ଉପରେ ଦୃଷ୍ଟାନ୍ତ ଦିଆ ଯାଇଛି । କିନ୍ତୁ ସେଇ ଗୀତ ନୀରସ ନୁହେଁ, ଶିଶୁର ଦନ୍ତୋଷ୍ଠି ପରି ମଧୁର । ଅତି ସହଜରେ ଏହା ମନରେ ଛୁପି ହୋଇଯାଏ, ଆଉ ଲିଭେନାହିଁ । ଏଥିରେ ଗମ୍ଭୀରତା ବା ଗାମ୍ଭୀର୍ଯ୍ୟ ନାହିଁ, କିନ୍ତୁ ଚକିତ ଢେଉ ଉପରେ ଚନ୍ଦ୍ରିକାର ଶୃଙ୍ଖଳା ଅଛି । ସଂଲଗ୍ନତା ନ ଥିଲେ ହେଁ କୌଣସି ପରିବେଶର ଛବି ଏହା ଚିତ୍ରପଟରେ ଅଙ୍କନ କରେ, କବିତା ମଧ୍ୟରେ ଏକ ସୁନ୍ଦର ବାତାବରଣ ସୃଷ୍ଟିରେ ସାହାଯ୍ୟ କରେ । ତେଣୁ ଯୁଗ ଯୁଗ ଧରି ପ୍ରଚଳିତ ଏଇସବୁ ଗୀତକୁ କବି ସ୍ୱ କବିତାରେ ବ୍ୟବହାର କରିଛନ୍ତି । ରାଧାନାଥ ବା ମଧୁସୂଦନ ଏ କ୍ଷେତ୍ରରେ ତାଙ୍କର ଗୁରୁ ନୁହନ୍ତି, ହଳିଆ, ପାଟୁଆ, ନାଉରିଆ, ଦଣ୍ଡନାଟୁଆ, ଗାଉଁଲିନାରୀ ତାଙ୍କର ଆଦର୍ଶ । ସେ ଲୋକକବିଙ୍କ ପରି ଲେଖିବାକୁ ଚେଷ୍ଟା କରିଛନ୍ତି ଓ କେତେକାଂଶରେ ସଫଳ ହୋଇଛନ୍ତି । କାବ୍ୟର ଗମ୍ଭୀର ଗହନ ପରିବେଶ ଓ ସଂସ୍କୃତ ଶବ୍ଦ ଓ ଅଳଙ୍କାରପ୍ରଧାନ ପାରମ୍ପରିକ ରଚନାରୀତି ତ୍ୟାଗ କରି ସେ ପହଞ୍ଚିଛନ୍ତି ଗାଆଁରେ । କଥାରି ସହଜ, ସରସ, ସ୍ୱାଭାବିକ ରୀତି ପ୍ରବର୍ତ୍ତନ ତାଙ୍କର ଲକ୍ଷ୍ୟ ହୋଇଅଛି ଓ ସେଥିରେ ସେ ଯଶସ୍ୱୀ ହୋଇଛନ୍ତି ।

ଗାଉଁଲି ଗୀତ ପରି ଗାଉଁଲି କାହାଣୀଗୁଡ଼ିକୁ ବି କବି କବିତାରେ ରୂପାୟିତ କରିଛନ୍ତି । କଥା କହିବା ପୂର୍ବରୁ ବୁଢ଼ୀମାଆ ଯେପରି କଥାଣି କହେ— କିସ୍ କଥା ? ବେଙ୍ଗୁଲି କଥା ଇତ୍ୟାଦି, କବି ସେହିପରି ଲେଖିଛନ୍ତି—

କିସ୍ କଥା କଥା କିସ୍ ସେ ରଜାପୁଅର କଥା,
ହୁଁ ଭରୁଥିବୁ ଶୁଣିବୁ ହାତେ ରଖିଣ ମଥା ।

ତାପରେ ଆଈ ପଗ୍ଭରେ – ସୁଖ କହିବ କି ଦୁଃଖ କହିବ, ନା ଯା ଅଙ୍ଗେ ଲିଭେଇଛ ତା କହିବ ? କବି ସେହି ଭାବକୁ ଅବିକଳ ପଦ୍ୟାୟିତ କରିଛନ୍ତି, ତାପରେ ସାଧବପୁଅ କଥା, ବୁଢ଼ୀ ଅସୁରୁଣୀ କଥା, ଚମ୍ପାବତୀ ରାଜକନ୍ୟା କଥା, ଗାଉଁଲି ଲୋକଙ୍କ କହିବା ଭଙ୍ଗୀରେ ଲେଖି ଯାଇଛନ୍ତି ।

କବିଙ୍କ 'ନାନାବାୟା'ର ଶିଶୁ ଏକ ଗାଉଁଲି ଶିଶୁ—ପ୍ରକୃତି କୋଳର ଅଲିଅଳ ପୁଅ । ଜୀବଜନ୍ତୁଙ୍କ ପ୍ରତି ତାର ଅତ୍ୟନ୍ତ ଆଗ୍ରହ; ସେ କାକହାତରେ ପ୍ରବାସୀ ପିତାଙ୍କ ନିକଟକୁ ସମ୍ବାଦ ପଠାଏ, ଲିଲ୍ ଗୁଲୁ ଗୁଲୁ ଓଳି ପାଣିରେ ଖେଳେ, ଧୋ ବାୟାଗୀତ ଶୁଣି ଶୋଇପଡ଼େ ।

ନନ୍ଦକିଶୋର ବର୍ଷାର କବି । ସେ ବର୍ଷାପଲ୍ଲୀର ସକଳ ସୌନ୍ଦର୍ଯ୍ୟ ଓ କର୍ମତତ୍ପରତାରେ ସଜୀବିତ, ବାଳ୍ୟସ୍ମୃତିରେ ସୁମଧୁର । କାକୁଡ଼ି କଖାରୁ ପତରରେ ବର୍ଷାପାଣିର ଟପଟପ ଶବ୍ଦ, ବେଙ୍ଗ ଝିଙ୍କାରୀଣୀର କେଁ କଟର ତାଙ୍କ ଚିତ୍ତରେ ଆଣେ ଉଚ୍ଛ୍ୱାସ, ବାହାରରେ ବର୍ଷା, ଅନ୍ତରରେ ନିବିଡ଼ କାବ୍ୟରସ, ଫକୀରମୋହନ ଯେପରି ଗଳ୍ପ ଉପନ୍ୟାସରେ, ନନ୍ଦକିଶୋର ସେହିପରି ପଦ୍ୟରେ ଯଥାର୍ଥ 'ଗଣ' ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି । ପଲ୍ଲୀର ପ୍ରକୃତିକୁ ସେ ମାନବାୟିତ ଓ ମାନବକୁ ନିସର୍ଗାୟିତ କରିଛନ୍ତି । ଜୀବନରୁ ସେ ପାଇଛନ୍ତି ବିଷାଦ, ପ୍ରକୃତିଠାରୁ ଗଭୀର ଆନନ୍ଦ ଓ ଆଶ୍ୱାସନା । ବେଦନାମିଶ୍ରିତ ଆନନ୍ଦଉତ୍ସରୁ ହିଁ ତାଙ୍କ କାବ୍ୟଜୀବିତା ଧାରା ପାଇଛି ।

—*—

## ଲୋକ-ସାହିତ୍ୟ ଓ ସାହିତ୍ୟିକ ଲକ୍ଷ୍ମୀନାରାୟଣ

ଲକ୍ଷ୍ମୀନାରାୟଣଙ୍କ ମନ ଏକ ବାଇଆ ମନ; କେତେବେଳେ କୋଉ ଦିଗକୁ ଛୁଟେ ତାର ଠିକ୍ ଠିକଣା ନାହିଁ । ବିଚିତ୍ର ତାଙ୍କର ଖିଆଲ । କେତେବେଳେ କଣ ଲେଖନ୍ତି, କୋଉ ବିଷୟରେ ବା ନ ଲେଖନ୍ତି ? କାଳ ଅକାଳ ସେ ବାରନ୍ତି ନାହିଁ । ଶୌଚ ଶୁଚିତାର ଅପେକ୍ଷା ରଖନ୍ତି ନାହିଁ । ଘର ବାହାରର ତାରତମ୍ୟ ସେ ଦେଖନ୍ତି ନାହିଁ । ଗହଳିଚହଳିରେ ବନ୍ଧୁ ମେଳରେ ତାଙ୍କର ବାକ୍‌ସ୍ଫୂର୍ତ୍ତି ହୋଇପାରେ । ଜମାଟବନ୍ଧା ଅନ୍ଧାରରେ ମଧ୍ୟ ତାଙ୍କର ଲେଖନୀ ଚାଲେ । କାଗଜ ଉପରେ ହାତଟି ରହିଲେ ହେଲା । ଗାରକେ ଗୋଟିଏ କବିତା, ତା ଉପରେ ଆଉ ଗାର ପଡ଼େ ନାହିଁ, ବିଧିବିଧାତାଙ୍କ ସୃଷ୍ଟି ଯେପରି । ବାରମ୍ବାର ଲେଖିବା ଧୈର୍ଯ୍ୟ ତାଙ୍କର ନ ଥିଲା । ଲେଖାଟି କଳାଦିଗରୁ ପୂର୍ଣ୍ଣାଙ୍ଗ ହେଲା କି ନାହିଁ, ତା ଭିତରେ କେତେ ତ୍ରୁଟି ବିଚ୍ୟୁତି ରହିଲା, ତାହା ବାରିବା ଭଳି ସମାଲୋଚନାତ୍ମକ ମନ ତାଙ୍କର ନ ଥିଲା ।

କବି ବା ଲେଖକ ହିସାବରେ ତାଙ୍କର ଟିକିଏ ହେଲେ ବଡ଼ିମା ନ ଥିଲା । କଳାର ଆଭିଜାତ୍ୟବୋଧ କଳାକୁ ଜନସାଧାରଣଙ୍କଠାରୁ ଦୂରେଇ ରଖେ । ଲକ୍ଷ୍ମୀନାରାୟଣ ଆଗେ ଜନସେବକ, ପରେ ଲେଖକ । ଏ ଦୁଇ ଭାବକୁ ସେ ବିପରୀତ-ମୁଖୀ କରି ରଖି ନ ଥିଲେ । ତାଙ୍କଠାରୁ ବଡ଼ ସମନ୍ୱୟବାଦୀ ଏ ଯୁଗରେ ଆଉ କିଏ ଅଛି ?

ତେଣୁ ସେ କେବଳ ଲେଖକ ହୋଇ ରହିଗଲେ । ନିଜ ଲେଖାର ବିଦଗ୍ଧ ପାଠକ ହୋଇ ପାରିଲେ ନାହିଁ । ଏଥିରେ କଳାର କି କ୍ଷତି ଘଟିଲା କାଳ ତାହା ବିବେଚନା କରିବ ।

ଲେଖା ସରିବା ସଙ୍ଗେ ସଙ୍ଗେ ବହି ଛପା ହୁଏ; ଶିଶୁର କୌତୂହଳ ତାଙ୍କର । ବହିଗୁଡ଼ିକ ଆକାରରେ କ୍ଷୁଦ୍ର, ମଲାଟର ଆଡ଼ମ୍ବର ନାହିଁ; କାଗଜ ମଧ୍ୟ ସାଧାରଣ । ଦାମ୍ ଦୁଇ ଚାରିଅଣା, ମେଳଣ ଯାତ୍ରାରେ ବିକା ହେଉଥିବା ଲୋକ-କବିଙ୍କ ବହି ପରି । ପୃଥିବୀର ବଡ଼ବଡ଼ ପାଠାଗାରକୁ ସେ ଏଇ ଚଟି ବହିସବୁ ପଠାନ୍ତି । ଓଡ଼ିଆ ଦାରିଦ୍ର୍ୟର ଚରମ ପ୍ରତୀକ—ଏ ଦିଗରେ ସଙ୍କୋଚ ତାଙ୍କର ନାହିଁ । ବନ୍ଧୁବାନ୍ଧବଙ୍କୁ ଉଦାର ଭାବରେ ଉପହାର ଦିଅନ୍ତି । ପିଲାଙ୍କଠାରୁ ବୁଢ଼ାଙ୍କ ପର୍ଯ୍ୟନ୍ତ ବନ୍ଧୁ ବିନିଦ ତାଙ୍କର ଅଗଣିତ । ଛପାବହି ପ୍ରାୟ ସବୁତକ ବିତରଣରେ ଯାଏ । ବୋଧହୁଏ ପଇସାଟିଏ ପାଆନ୍ତି ନାହିଁ ।

ନାନା ଦିଗରେ ତାଙ୍କର ଆଗ୍ରହ, କିନ୍ତୁ କାହିଁରେ ସେ ଆବଦ୍ଧ ନୁହନ୍ତି । ବହୁ ଗମ୍ଭୀରରେ ତାଙ୍କ ସ୍ପୃହ, କିନ୍ତୁ ପଢ଼ୁଆ ଉଠିଆ । ସାଧନା ଏକମୁଖୀ ହୋଇ-ନାହିଁ । ତେଣୁ ସିଦ୍ଧି ମଧ୍ୟ ଜ୍ୱଳନ୍ତ ଭାବରେ ଫୁଟି ଦିଶେ ନାହିଁ । ବହୁ ଭୂମିକାରେ ସେ ଅଭିନୟ କରିଛନ୍ତି । କାହିଁରେ କୃତିତ୍ୱଅର୍ଜନଲିପ୍ସା ପ୍ରକାଶ ପାଇନାହିଁ । ହେଲେହେଁ ଲୋକଗୀତସଂଗ୍ରହ ଓ ଲୋକନାଟ୍ୟ ବିଷୟରେ ଗବେଷଣା ତାଙ୍କର ଶ୍ରେଷ୍ଠ ବିନୋଦନ, ଏଥିଲାଗି ସେ ଅବସର ସୃଷ୍ଟି କରିଛନ୍ତି; ସବୁକାର୍ଯ୍ୟ ଗୁଡ଼ି କାଟୁଦିନ ଏଥିରେ ମାତି ଯାଇଛନ୍ତି ।

ଆଦିବାସୀ ଜୀବନ ଓ ସଂସ୍କୃତି ଏ ଦେଶରେ ବିଶେଷ ଅବହେଳିତ ଅବସ୍ଥାରେ ଥିଲା । କେତେଖଣ୍ଡି ଉପନ୍ୟାସ ଓ ଯତ୍‌ସାମାନ୍ୟ ବିବରଣୀ ମଧ୍ୟରେ ଆମର ଆଦିବାସୀ ସମ୍ପର୍କୀୟ ଜ୍ଞାନ ସୀମାବଦ୍ଧ ଥିଲା । ସେମାନଙ୍କର ମୌଳିକ ଲୋକସଙ୍ଗୀତସବୁ ସଂଗୃହୀତ ହୋଇ ନଥିଲା । ଶ୍ରୀ ସାହୁଙ୍କ ପ୍ରେରଣାରେ ନବରଙ୍ଗ-ପୁରନିବାସୀ ମନ୍ତୁ ଘୋଷ ତ୍ରିପାଠୀ କୋରାପୁଟ ଅଞ୍ଚଳରୁ ଚଉତିରିଶ ଗୀତସବୁ ସଂଗ୍ରହ କରିଥିଲେ । ଏହି ଗୀତରୁ କେତେକ ପଲ୍ଲୀଗୀତସଞ୍ଚୟନର ପ୍ରଥମ ଓ ଦ୍ୱିତୀୟ ଭାଗର ଅନ୍ତର୍ଭୁକ୍ତ ହୋଇଅଛି ।

'ଗାନ୍ଧର୍ବିକା ଶତଦଳ' ନାମରେ ଖଣ୍ଡିଏ ଗୀତସଂଗ୍ରହ ସେ ପ୍ରକାଶ କରିଅଛନ୍ତି । ତାଙ୍କ ସଂଗ୍ରହ କୋରାପୁଟ ଜିଲ୍ଲା ମଧ୍ୟରେ ସୀମିତ । ଏହି ଜିଲ୍ଲାର ବନ୍ଧୁ-ମାନଙ୍କ ସାହାଯ୍ୟରେ ଗୀତସଂଗ୍ରହ ଓ ଅନୁବାଦ ସମ୍ଭବ ହୋଇଥିଲା । କନ୍ଧ, ସଉରା, ସାନ୍ତାଳ, ଗାଦ୍‌ବା, ଝଡ଼ିଆ ପରଜା, ବଡ଼ ପରଜା, ମାଟିଆ ପରଜା, ପାରେଙ୍ଗା ପରଜା, କୋୟା, ଡମ ଓ ପାଣମାନଙ୍କ ଗୀତର ଯତ୍‌କିଞ୍ଚିତ୍ ନମୁନା ଏଥିରେ ଦିଆ ଯାଇଅଛି । ଏହା ମୁଖ୍ୟତଃ ବିବାହ ସମ୍ପର୍କୀୟ, ବିଭିନ୍ନ ଆଦିବାସୀ ଗୋଷ୍ଠୀଙ୍କ ସାମାଜିକ ଚଳଣିର ବୈଚିତ୍ର୍ୟ ଏଥିରେ ପ୍ରକଟିତ ହୋଇଅଛି । ତୀବ୍ର ଜୀବନସଂଗ୍ରାମ ଓ ଗହନ ମନର ଗୋପନବାର୍ତ୍ତା ମଧ୍ୟ ଏଥିରେ ସରସ ଭାବରେ ରୂପାୟିତ ହୋଇଅଛି । ତଳେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦିଆଗଲା—

ସାରି କ ସାୟା ଖାଟାରି ହେଲ ଉମ୍ବର
କୁକୁଟୀ ମାୟା ଖାଟାରି ହେଲ ଉମ୍ବକ୍କ ନଲସ ହେ
କାମ୍ବେଲ ବର୍ମି ଖ ଟାରି ହେଲ ନଲସ ହେ ।
କାରଲ କାମ୍ବଲ ଖାଟେଡ ହେଲ ନଲସ ହେ
ଲଜା ହାବୁ ଅବେଗୁ ହେଲ ନଲସ ହେ
ଆଟାଙ୍ଗା ହାଙ୍ଗୁଡ଼ା କାକାର ହେଲ ନଲସ ହେ

ମାଟାଙ୍ଗା ବାଟୁଲା କାକାର ହେଲା ନଲସ ହେ
ଅକୁଟା ଆଟାଥା କାକାର ହେଲା ନଲସ ହେ ।
× × ×
କୁମୋଠା ଶଂ ଦାଆ ଗାଟାର ହେଲ ନଲସ ହେ ।
(କୁଇ, ଭାଷା, କନ୍ଧଗୀତ)

ଅନୁବାଦ—

ତୁମ୍ଭ ମୁହଁ ରଙ୍ଗ ଦେଖିବା ମାତ୍ର ସାର ହେଲା
ଜୁଳୁଜୁଳିଆ ପୋକ ପରି ତୁମ୍ଭେ ହେଲ
ଝଟାର ଲେମ୍ବୁ ପରି ତୁମ୍ଭେ ହେଲ ।
ଖାଲି ଲଙ୍କା ଭଉଁ
ଏ ଯୌବନ ବନଟରେ ଏହିପରି ହେଲ
ହାଟକୁ ଯାଇଥିବା ପସରା ପରି ବା ପିଲାପରି
ଚଞ୍ଚଳ ହାଟରେ ବିକାଳି ଦ୍ରବ୍ୟ ପରି
ଡାଳରେ ନ ଲାଗିଲି ପରି ।

ଲକ୍ଷ୍ମୀନାରାୟଣ ଜଣେ ଗବେଷକ । ଲୋକସାହିତ୍ୟରେ ତାଙ୍କର ଗବେଷଣାର ସ୍ପଷ୍ଟ ମୁଦ୍ରା ଅଙ୍କିତ ହୋଇଅଛି । ତାଙ୍କ 'ଦଣ୍ଡନାଟ' ଗୋଟିଏ ମୌଳିକ ଗବେଷଣାମୂଳକ ପ୍ରବନ୍ଧ, ମୁଖ୍ୟତଃ ଏହାକୁ ଅବଲମ୍ବନ କରି ମୁଁ ମୋ ଥେସିସ୍‌ରେ ପ୍ରକାଶ ପାଇଥିବା 'ଦଣ୍ଡନାଟ' ପ୍ରବନ୍ଧଟି ଲେଖିଛି । ଗବେଷକ ଶ୍ରୀ ସାହୁ ଦଣ୍ଡନାଟର ଉତ୍ପତ୍ତି, କାମନା ଘର, କାମନା ଘଟ, ନାଟର ପାତ୍ରପାତ୍ରୀ ଓ ଦେବଦେବୀଙ୍କ ବିବରଣୀ, ପାଟଭୋକ୍ତା, ଚନ୍ଦନିଆ ପାତ୍ର, ଧୂପିଆ ପାତ୍ର, ବେତୁଆ ପାତ୍ର, ଦାଣ୍ଡକାଠିଆ ପାତ୍ର, ଗୋବରିଆ ପାତ୍ର, ନାଳିଆ ପାତ୍ର ଓ ଦଣ୍ଡସ୍ୱାମୀଙ୍କର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି । 'ଦଣ୍ଡନାଟ' ଓଡ଼ିଶାରେ ବ୍ୟାପକଭାବେ ପ୍ରଚଳିତ; ଦଣ୍ଡର ଠାକୁରାଣୀ ଦଣ୍ଡୀ ମହାଦେବୀ । ଦଣ୍ଡ ଶିବପାର୍ବତୀଙ୍କ ପ୍ରତୀକ ବେନ୍ତ । ଦଣ୍ଡୁଆମାନେ ଉକ୍ତ ଦେବୀଙ୍କୁ ତୁଷ୍ଟ କରିବାଳାଗି ବହୁ କାୟପାଧନା କରିଥାନ୍ତି ।

'ଦଣ୍ଡନାଟ'ରୁ ଶ୍ରୀ ସାହୁଙ୍କ ଗଭୀର ଅଧ୍ୟବସାୟ, ନିଷ୍ଠା, ମୌଳିକ ବିଷୟ ସଂଗ୍ରହ ପ୍ରଚେଷ୍ଟା ଓ ତାକୁ ବୈଜ୍ଞାନିକ ଭିତ୍ତିରେ ସଜେଇ ଲେଖି ପାରିବା ଦକ୍ଷତାର ପରିଚୟ ମିଳେ । ଓଡ଼ିଆ ଲୋକ-ସଂସ୍କୃତିର ଏହା ଏକ ଦିଗ୍‌ଦର୍ଶକ କୃର୍ତ୍ତି ।

'The Hill Tribes of Jeypore'—ଜୟପୁରର ମହାରାଜା ସାହିତ୍ୟସମ୍ରାଟ୍ ବିକ୍ରମଦେବ ବର୍ମାଙ୍କ ଅନୁକୂଲ୍ୟରେ ୧୯୪୨ରେ ପ୍ରକାଶିତ । କୌଣସି ଖଣ୍ଡିଏ ପୁସ୍ତକ ଲାଗି ଲେଖକ ଜୀବନରେ ଏତେ ପରିଶ୍ରମ କରି ନାହାନ୍ତି । ଏହି ପୁସ୍ତକ ରଚନା କରିବାଲାଗି ଲେଖକଙ୍କୁ ଜୟପୁରରେ ଦୀର୍ଘ ତିନିବର୍ଷ

ରହିବାକୁ ପଡ଼ିଥିଲା । ଏ ତିନିବର୍ଷ ସେ ସମାଜସେବା କାର୍ଯ୍ୟରୁ ଅବ୍ୟାହତି ନେଇଥିଲେ; ତାଙ୍କର ସମସ୍ତ ବ୍ୟୟ ମହାରାଜା ବହନ କରିଥିଲେ ।

କୋରାପୁଟରେ ଆଦିବାସୀ ସଂଖ୍ୟା ପାଞ୍ଚଲକ୍ଷରୁ ଅଧିକ—ପ୍ରକୃତରେ ସମସ୍ତ ଜିଲ୍ଲା ଗୋଟିଏ ମାନବୀୟ ଚିଡ଼ିଆଖାନା । ସେହିଭଳି ବୈଦେଶିକ ପଣ୍ଡିତମାନେ ଦୀର୍ଘକାଳ ଧରି ଏଠାରେ ଅଧ୍ୟୟନ କରି ଆସୁଛନ୍ତି । କନ୍ଧ, ସଉରା, ପରଜା, ଅମନାତ୍ୟ, ଭୂମିଜ, ଗଦ୍‌ବା, କୋୟା, ଗଣ୍ଡ, ରେଣା, ଢେଆରି ପ୍ରଭୃତି ପ୍ରାୟ ପାହାଡ଼ରେ ବାସ କରନ୍ତି ଓ 'ପୋଡ଼ୁ ଚାଷ' କରନ୍ତି । ଏବେ ସମତଳ କ୍ଷେତ୍ରକୁ ଅବତରଣ କରୁଛନ୍ତି । ଗବେଷକ ଶ୍ରୀ ସାହୁ ସେମାନଙ୍କ ବିକଟ ଦାରିଦ୍ର୍ୟ, ରୋଗ-ବ୍ୟାଧି, କୁସଂସ୍କାର, ଅନ୍ଧବିଶ୍ୱାସ, ସେମାନଙ୍କ ମେଳା ମହୋତ୍ସବ, ମଦ୍ୟପାନ ଓ ନୃତ୍ୟ, ସେମାନଙ୍କ ମଧ୍ୟରେ ପ୍ରଚଳିତ ଗଳ୍ପ କାହାଣୀର ସୁନ୍ଦର ନମୁନାମାନ ଦେଇଛନ୍ତି । ସେମାନଙ୍କ କେତେକ ଗୀତର ଇଂରେଜୀ ଅନୁବାଦ କରିଛନ୍ତି । ଅବଶ୍ୟ ନୃତତ୍ତ୍ୱବିତ୍ ଗବେଷଣାମୂଳକ ବିବରଣୀ ସହିତ ଅର୍ଥନୈତିକ ଯୋଜନା ଖାପ୍ ଖାଉ ନାହିଁ । ତଥାପି ଆଦିବାସୀଙ୍କ କନ୍ଦା, କରବା, ପିଠଲ, ଟାଙ୍କୁ ଆଦି ଖାଦ୍ୟ, ଲନ୍ଦା ମଦ୍ୟପାନ, ସେମାନଙ୍କ 'ଗବସୁମ୍' (ଗୋରୁ ରୋଗର ଦେବତା), ରୋଗାସୁମ୍ (ବସନ୍ତ ରୋଗର ଦେବତା), କୁଲସୁମ୍ (କୁଷ୍ଠର ଦେବତା), ମପ୍ରୁସୁମ (ମୃତ୍ୟୁ ଦେବତା), ରଥୁସୁମ୍ (ଶିକାର ଦେବତା), ଠୁଗ୍‌ଗୁ ଜୁଣ୍ଡ୍ରୀସୁମ୍ (ଭିକ୍ଷାର ଦେବତା), ଯୋ ଯୋ ବୋ ଯୋସୁମ୍ (ଧାନବୁଣାର ଦେବତା), ଓୟୁମ୍‌ସୁମ୍ (ଉତ୍ସବର ଦେବତା) ପ୍ରଭୃତି ବହୁ ଦେବତା, ଆଦିବାସୀଙ୍କ ସାହିତ୍ୟ, ଜନ୍ମାଦି ସଂସ୍କାର ଓ ମୃତାହି ନିୟମର ପୁଙ୍ଖାନୁପୁଙ୍ଖ ବିବରଣୀ ଏ ପୁସ୍ତକରେ ଦିଆଯାଇଛି । ତାଙ୍କ ସଂଗୃହୀତ ମେରିଆ ପୂଜାର ସାରାଂଶ ତଳେ ଦେଉଅଛି ।

କନ୍ଧ ଦେବତା ଜାକରିଙ୍କ ଆଗରେ ମେରିଆପୂଜା ବା ଟୋକାପୂଜା ହୁଏ ।

ତାରି ରନା ରନା ତାରି ରନା ରନା

ଟୋକାପୂଜା ମେରିଆପୂଜା କନା ! (କନା—କରିବା)

ଅବିବାହିତ ଯୁବକ ବା ଯୁବତୀ ମେରିଆ ହେବାକୁ ସମର୍ଥ । ବଳି ପୂର୍ବରୁ ତାହାକୁ ଛ'ମାସ ପର୍ଯ୍ୟନ୍ତ ଉତ୍କୃଷ୍ଟ ଖାଦ୍ୟ ଦିଆଯାଏ । ଯେ କୌଣସି ପୁରୁଷ ବା ସ୍ତ୍ରୀ ସଙ୍ଗ କରିବାଲାଗି ମେରିଆ ଟୋକା ବା ଟୋକୀକୁ ସୁଯୋଗ ମିଳେ । ବଳିବେଳେ ମେରିଆ 'ଅହିତ୍ୟା' କହିଲେ ଦିଶାରିର ମୃତ୍ୟୁ କିମ୍ବା 'ଅହିତ୍ୟାନ୍' କହିଲେ ଦିଶାରିର ସ୍ତ୍ରୀର ମୃତ୍ୟୁ ହେବ ବୋଲି ସୂଚନା ମିଳେ । କାଳେ ସେ ଶବ୍ଦ ମେରିଆ ତୁଣ୍ଡରୁ ବାହାରି ପଡ଼ିବ ଏଥିଲାଗି ଦିଶାରି ଭୟରେ ଥରୁଥାଏ । ଦିଶାରି ମେରିଆ ମୁଣ୍ଡର ଅଧିକାରୀ । ସେ ମେରିଆର ମୁଣ୍ଡଟି ନେଇ ଭଲ ଫସଲ ଆଶାରେ ନିଜ ବିଲରେ ପୋତିଦିଏ ।

କନ୍ଧ ପରିବାର ପାଳି କରି ମେରିଆ ଯୋଗାଇ ଥାଆନ୍ତି; କିମ୍ବା ଅର୍ଥ ସଂଗ୍ରହ କରି କୌଣସି ଦୁଃସ୍ଥ ପରିବାରରୁ ମେରିଆ କିଣି ଆଣନ୍ତି କିମ୍ବା ଦଳବାନ୍ଧି ସମତଳ ଅଞ୍ଚଳରୁ ପିଲାଟିଏ ଚୋରାଇ ଆଣନ୍ତି । ମେରିଆ ଲାଗି ପିଲା ବିକ୍ରୀ କରିବା କନ୍ଧ ସମାଜରେ ଅତି ନିନ୍ଦନୀୟ ।

ବଳି ପୂର୍ବରୁ ମେରିଆକୁ ଖିଅର କରାହୁଏ । ସରସର କରି ଦେହରେ ହଳଦୀ ମାଲିସ ବୋଳି ଗାଧୋଇ ଦିଆହୁଏ । ତାକୁ ଫୁଲମାଳ ପିନ୍ଧାଇ ପଟୁଆରରେ ବୁଲେଇ ଅଣାହୁଏ । ତା'ପରେ ଗୋଟିଏ ଖମ୍ବରେ ବାନ୍ଧି କନ୍ଧମାନେ ତା ଚତୁର୍ଦ୍ଦିଗରେ ନୃତ୍ୟ କରନ୍ତି । ବଳିଦେବା ପୂର୍ବରୁ ଦିଶାରି କହେ, "ହେ ଈଶ୍ୱର, ଆମ ବଡ଼ବଡ଼ିଆ ଯାହା କରୁଥିଲେ, ଅମେ ସେଇଆ କରୁଛୁ । ଆମକୁ ଭଲ ଫସଲ ଦିଅ । ଆମ ଦେହପା ଭଲ ରଖ ।"

କେତେକ ସ୍ଥାନରେ ଲୋକେ ପଟୁଆରବେଳେ ମେରିଆ ମୁଣ୍ଡରୁ ବାଳଭିଡ଼ି ନେଇଯାଆନ୍ତି । ତାର ଟିକିଏ ମାଂସ, ହାଡ଼ କି ଟିକିଏ ବାଳ ରଖିବା ଶୁଭ । ବଳି ପୂର୍ବରୁ ମେରିଆର ହାତଗୋଡ଼ ଭଙ୍ଗିଦିଆ ହୋଇଥାଏ । ତାହାହେଲେ ସେ କୌଣସି ପ୍ରତିରୋଧ କରି ପାରିବ ନାହିଁ । ତାକୁ ବହୁତ ଅଫିମ ଖୁଆଇ ଦିଆ-ହୋଇଥାଏ ।

କେଉଁଠି ବୃକ୍ଷଶାଖା ସାହାଯ୍ୟରେ ମେରିଆର ଗ୍ରୀବା ବା ତୋଣ୍ଟି ଚିପା ହୋଇଥାଏ କିମ୍ବା ଦିଶାରି ତା ତୋଣ୍ଟିରେ କୁରାଢ଼ି ମାରିଦିଏ । ରକ୍ତଧାରା ଝର ଝର ହୋଇ ବୋହୁଥାଏ । କେବଳ ମୁଣ୍ଡକୁ ଛାଡ଼ି ଜୀଅନ୍ତା ଅବସ୍ଥାରେ ଲୋକେ ତାହା ଦେହରୁ ଟିକିଏ ଟିକିଏ ମାଂସ କାଟି ନିଅନ୍ତି ।

ଏବେ ପୋଢ଼ମେରିଆ ହେଉଅଛି; ଏହା ଅତି ନିଷ୍ଠୁର ପ୍ରଥା ହେଲେବି ସାମାଜିକ ଚଳଣିର ଅନ୍ତର୍ଗତ ହୋଇଅଛି । ଶ୍ରୀ ସାହୁ ଏ ପ୍ରଥାର ତୁଳନାତ୍ମକ ଅଧ୍ୟୟନ କରିଅଛନ୍ତି ।

ଭେରିଅର ଏଲ୍‌ୱିନ୍‌ଙ୍କ ପରି ପଣ୍ଡିତମାନେ ଏ ଜିଲ୍ଲାରୁ ଲୋକତତ୍ତ୍ୱର ବହୁ ଉପାଦାନ ସଂଗ୍ରହ କରିଥିଲେ । କୋରାପୁଟରେ ଭାଷା ଗବେଷଣା ଲାଗି ଆମେରିକାର ଭାଷାତତ୍ତ୍ୱବିତ୍‌ମାନେ କୋରାପୁଟ ଆସିଥିଲେ । କୋରାପୁଟ ସମ୍ପର୍କରେ କେତେକ ଉପାଦେୟ ପୁସ୍ତକ ପ୍ରକାଶିତ ହୋଇଅଛି । ତେଣୁ ଓଡ଼ିଶାର ଯେ କୌଣସି ଜିଲ୍ଲା ଅପେକ୍ଷା ନୃତାତ୍ତ୍ୱିକ ଦୃଷ୍ଟିରୁ କୋରାପୁଟ ଭାରତ ବାହାରେ ଅଧିକ ପରିଚିତ । କୋରାପୁଟ ଆଦିବାସୀଙ୍କ ସମ୍ପର୍କରେ ଗବେଷଣାରେ ମାନବ-ପ୍ରେମୀ, ସମାଜସେବାବ୍ରତୀ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଆଙ୍କ ମଧ୍ୟରେ ଅଗ୍ରଣୀ । ତାଙ୍କ ଗବେଷଣା ଯେ ଅନ୍ୟମାନଙ୍କର ପଥପ୍ରଦର୍ଶକ ହେବ, ଏଥିରେ ସନ୍ଦେହ ନାହିଁ ।

—*—

## ରବୀନ୍ଦ୍ରନାଥ ଓ ପଲ୍ଲୀସାହିତ୍ୟ

କୌଣସି ମହାନ୍ କବି, ଗାୟକ ବା ଶିଳ୍ପୀଙ୍କ ରଚନାରେ ଯେଉଁ ଉପାଦାନ ଦୁର୍ଲଭ, ତାହା ସାଧାରଣ ଜନସମାଜର ମୌଖିକ, ପ୍ରାକୃତିକ ବାଣୀରୁ ସଂଗ୍ରହ କରି ମନୁଷ୍ୟର ଇତିହାସ ରଚନା କରିବା ପଲ୍ଲୀସାହିତ୍ୟବିଦ୍‌ମାନଙ୍କର ଲକ୍ଷ୍ୟ । ପଲ୍ଲୀ ସଙ୍ଗୀତ ଗ୍ରାମୀଣ ଭାବଧାରାର ବାହକ । ବିଦଗ୍ଧ ସାହିତ୍ୟ, ସଙ୍ଗୀତ ଓ କଳାଠାରୁ ଏହା ଭିନ୍ନ । ଜନସମାଜ ମଧ୍ୟରେ ସମାନ୍ତରାଳ ଭାବରେ ଦୁଇଟି ଧାରା ଗତି କରୁଥିବାର ଦେଖାଯାଏ । ଗୋଟିଏ ଲୌକିକ, ଅନ୍ୟଟି ବିଦଗ୍ଧ ବା କଳାତ୍ମକ । ଏହି ଦୁଇ ଧାରା ମଧ୍ୟରେ ସବୁବେଳେ ନିରବଚ୍ଛିନ୍ନ ସମ୍ବନ୍ଧ ରହିଆସିଛି ଓ ବିନିମୟ ଘଟିଛି । ଏକ ଅନ୍ୟକୁ ପ୍ରଭାବିତ ଓ ରୂପାନ୍ତରିତ କରିଅଛି । ପ୍ରଖ୍ୟାତନାମା ଲେଖକମାନେ ନିଜ ରଚନାରେ ପଲ୍ଲୀ ଭାବଧାରାର ସଂଯୋଗ କରିଥାନ୍ତି । ଲୋକଗୀତ ଓ ଲୋକକାହାଣୀ ମାଧ୍ୟମରେ ଜନସାଧାରଣ କିଛିତ୍ ପରିମାଣରେ ବିଦଗ୍ଧ ପରମ୍ପରାର ଅଧିକାରୀ ହୁଅନ୍ତି । ଲୋକଗୀତ ଓ କାହାଣୀ ଯୋଗୁଁ ଆମେ ପଲ୍ଲୀସମାଜର ଭାବଧାରା ସହିତ ପରିଚିତ ହେଉଁ । ଏହି ଗ୍ରାମୀଣ ଜନସାଧାରଣ ହିଁ ଅତୀତ ସହିତ ବର୍ତ୍ତମାନର, ଆମ ସହିତ ଆମ ପୂର୍ବ ପୁରୁଷଙ୍କର ଧର୍ମ ଧାରଣା ଓ ବିଶ୍ୱାସର ଯୋଗସୂତ୍ର । ତେଣୁ ବିଦଗ୍ଧ ସାହିତ୍ୟର ବିକାଶ ମଧ୍ୟରେ ପଲ୍ଲୀ ସାହିତ୍ୟର ଗୁରୁତ୍ୱ ରବୀନ୍ଦ୍ରନାଥ ଉପଲବ୍ଧି କରିଥିଲେ । ସେ ଜାଣିଥିଲେ ଯେ ଲୋକ-ଗୀତିର ସଂଗ୍ରହ ଓ ସଂରକ୍ଷଣ ଆମ ସଂସ୍କୃତିକୁ ସୁଦୃଢ଼ ତଥା ବଳଶାଳୀ କରିପାରିବ । ଜନ-ସାହିତ୍ୟ ଫସିଲ୍ ଭଳି ଅମର ନୁହେଁ, ତାଙ୍କ ମତରେ ଏହା ଜୀବନ୍ତ ଓ କ୍ରିୟାଶୀଳ । ତେଣୁ ଏହାର ସଂଗ୍ରହ ଓ ସଂରକ୍ଷଣରେ ଦାୟିତ୍ୱ ସେ ନିଜେ ବହନ କରିଥିଲେ ।

ଆଧୁନିକ ଯୁଗରେ ଲୋକସାଧାରଣ ନାଗରିକ ସଭ୍ୟତା ଦ୍ୱାରା ବିଶେଷ ପ୍ରଭାବିତ ହେଉଛନ୍ତି । ନିଜ ସଂସ୍କୃତିର ବିଲୋପ ଘଟିଲେ ବି ସେମାନେ ଆଉ ଅନୁତପ୍ତ ହେଉ ନାହାନ୍ତି । ଗ୍ରାମସବୁ ଶିଳ୍ପ ଓ ବ୍ୟବସାୟର କେନ୍ଦ୍ର ହୋଇ ଉଠୁଛି । ଆଜି ଯେଉଁଠି ଥିଲା କ୍ଷେତ, କାଲି ସେଠି ଗଢ଼ିଉଠୁଛି ବିରାଟ ଶିଳ୍ପାଗାର । ସାମାଜିକ ଶୃଙ୍ଖଳା, ରୀତି ଓ ଚଳଣିର ଦ୍ରୁତ ପରିବର୍ତ୍ତନ ଘଟୁଛି । ନୂତନ ରୀତି ଏହାର ସ୍ଥାନ ଅଧିକାର କରୁଛି । କୃଷିକ୍ଷେତ୍ରରେ ପ୍ରଚଳିତ ହଳିଆ ଗୀତ, କଳର ମଜଦୁର୍ ମନରେ ଆନନ୍ଦ ଆଣୁ ନାହିଁ । ପଲ୍ଲୀଗୀତର ପୃଷ୍ଠପୋଷକ କେହି ନାହାନ୍ତି । ଶିଳ୍ପର ବିକାଶ ସଙ୍ଗେ ସଙ୍ଗେ ଏହି ସାହିତ୍ୟ ବିଲୁପ୍ତ ହେଉଅଛି ।

ରବୀନ୍ଦ୍ରନାଥ ନିଜ ସୃଷ୍ଟିରେ ଅବିରତ ମଗ୍ନ ଥାଇ ମଧ୍ୟ ଲୋକଗୀତସଂଗ୍ରହ ଲାଗି ଅବସର ସୃଷ୍ଟି କରି ପାରିଛନ୍ତି, ଆଜୀବନ ଲୋକ ସାହିତ୍ୟକ ଅନୁଷ୍ଠାନ, ଲୋକସାହିତ୍ୟ ଓ ସଙ୍ଗୀତ ପ୍ରତି ଆଗ୍ରହ ପ୍ରକାଶ କରି ଆସିଛନ୍ତି । ଲୋକଗୀତ ଓ କାହାଣୀରେ ମାନବସମାଜର ଯୁଗଯୁଗାନ୍ତର ଭାବଧାରା ସଞ୍ଚିତ ହୋଇଅଛି । ତେଣୁ ତାହା ପ୍ରତି ଗଭୀର ଶ୍ରଦ୍ଧା ପୋଷଣ କରିବା ତାଙ୍କ ପକ୍ଷରେ ସ୍ୱାଭାବିକ ।

ଲୋକଗୀତର ସୌନ୍ଦର୍ଯ୍ୟରେ କବି ଆତ୍ମହରା ହେଉଥିଲେ । ଏହାର ମଧୁର ଛନ୍ଦମାଧୁରୀ ତାଙ୍କୁ ଏକ ନୂତନ ଭାବରାଜ୍ୟକୁ ନେଇ ଯାଉଥିଲା । ବୃଷ୍ଟି ପଡ଼େ ଟାପୁର୍ ଟାପୁର୍ ନଦେଏଲୋ ବାନ୍' ତାଙ୍କୁ ଚିରଦିନ ମନ୍ତ୍ରମୁଗ୍ଧ କରିଥିଲା । ସେ ଏହି ପଂକ୍ତିଟି ନିଜ କବିତାରେ ବାରମ୍ବାର ବ୍ୟବହାର କରିଛନ୍ତି । ତାଙ୍କ ପରି ଲୋକଗୀତର ପ୍ରକୃତ ସମଜ୍‌ଦାର କ୍ୱଚିତ୍ ଦେଖାଯାନ୍ତି ।

କେତେ ବଡ଼ ବଡ଼ କଥା ଭୁଲି ହୋଇଯାଏ । ଯେଉଁ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ, ସେ ସାମ୍ରାଜ୍ୟ ମଧ୍ୟ ଭାଙ୍ଗି ପଡ଼େ । କିନ୍ତୁ ଲୋକଗୀତ ଅବିସ୍ମରଣୀୟ ।

ଏହା ଗୌରବମୟ ଇତିହାସ ନୁହେଁ; ଏଥିରେ ଗଭୀର ଦର୍ଶନ ନାହିଁ । ଏହା କୌଣସି ମହାନ୍ କବିଙ୍କ ସୃଷ୍ଟି ନୁହେଁ । ଏହାର ଭାବଧାରା ସହତିହୀନ, ରୂପ ଅମାର୍ଜିତ, ପଦଯୋଜନା ଅନିପୁଣ ଓ ପଦାବଳୀ ଅର୍ଥହୀନ । ତଥାପି ଏହା ଲୋକସ୍ମୃତିରେ ଅମର । କାରଣ ଏହା ଚିରନ୍ତନ ଆନନ୍ଦର ବହମାନ ଧାରା । ମାନବହୃଦୟର ସହଜ, ସ୍ୱତଃସ୍ଫୂର୍ତ୍ତି ଅନୁଭୂତି ଭିତରେ ଏହା ରସାଳ, ଲାବଣ୍ୟମୟ ଓ ଛନ୍ଦୋମୟ । ଏହାର ଆସ୍ୱାଦ ଭିନ୍ନ, ସୌରଭ ସ୍ୱତନ୍ତ୍ର । ଏହାର ଭାବଧାରା ଯେଉଁ ରୂପରେ ପ୍ରକାଶ ପାଏ, ତାହା ମଧ୍ୟ ଆତ୍ମସଚେତନ ବିଦଗ୍ଧ କବିତାଠାରୁ ସ୍ୱତନ୍ତ୍ର । ଏହା ସୁକଳ୍ପିତ ନୁହେଁ, କୌଣସି କଳାତ୍ମକ ଯୋଜନାର ସଙ୍କେତ ମଧ୍ୟ ଏଥିରେ ମିଳେ ନାହିଁ । ଏହା ସ୍ୱତଃସ୍ଫୂର୍ତ୍ତି ମୌଖିକ ରଚନା । ପ୍ରାକୃତିକ ମାଧୁର୍ଯ୍ୟର ସକଳ ବିଭବ ଏହାର ଅଙ୍ଗୀଭୂତ । ଠିକ୍ ଆଜି ପରି ଲୋକଗୀତ ଆମ ପୂର୍ବ-ପୁରୁଷଙ୍କ ହୃଦୟକୁ ରସସିକ୍ତ କରୁଥିଲା । ସେହି ଭାବରେ ଏବେ ବି ଏହା ପୂର୍ବ-ପୁରୁଷଙ୍କ ସହିତ ଆମର ଆତ୍ମିକ ବନ୍ଧନ ନିବିଡ଼ତର କରୁଛି । ଲୋକଗୀତ ଓ କାହାଣୀ ଜାତୀୟ ଉତ୍ତରାଧିକାରର ଅଂଶବିଶେଷ । ଏହାର ସଂରକ୍ଷଣ ଲାଗି ପ୍ରୟାସ ହେବା ଯଥାର୍ଥ ।

ରବୀନ୍ଦ୍ରନାଥ ବୁଝିଥିଲେ, ସାମାଜିକ, ଐତିହାସିକ ଓ ଭାଷାତାତ୍ତ୍ୱିକ ଆଦି ନାନା ଦୃଷ୍ଟିକୋଣରୁ ଲୋକସାହିତ୍ୟକୁ ଆଲୋଚନା କରାଯାଇପାରେ । କିନ୍ତୁ ସେ ଗବେଷକ ବା ସମାଲୋଚକ ଦୃଷ୍ଟିରେ ପଲ୍ଲୀସାହିତ୍ୟକୁ ଦେଖୁ ନ ଥିଲେ ।

ବିଶେଷତଃ କୋମଳ ମଧୁ ଶିଶୁସଙ୍ଗୀତ ଏ ପ୍ରକାର ବିଶ୍ଳେଷଣର ତୀକ୍ଷ୍ଣତା ସହ୍ୟ କରିବାକୁ ଅସମର୍ଥ । ରବୀନ୍ଦ୍ରନାଥଙ୍କ ମତରେ ଲୋକଗୀତକୁ ସମାଲୋଚନା ଦୃଷ୍ଟିରେ ଦେଖିବାଟା ଗୋଟିଏ ଲଜ୍ଜାବତୀ ଯୁବତୀକୁ ବିଚାରାଳୟରେ ସର୍ବସାଧାରଣଙ୍କ ସମ୍ମୁଖରେ ପ୍ରଶ୍ନମାଳାରେ ଜର୍ଜରିତ କରିବା ସଙ୍ଗେ ସମାନ । ରୋମାଣ୍ଟିକ୍ ଦୃଷ୍ଟିରେ ରବୀନ୍ଦ୍ରନାଥ ପଲ୍ଲୀସାହିତ୍ୟ ଅଧ୍ୟୟନ କରିଛନ୍ତି । ସେ ତୁଳନାତ୍ମକ ଆଲୋଚନା କରିନାହାନ୍ତି କିମ୍ବା କିଛି ନୂଆ ସିଦ୍ଧାନ୍ତରେ ଉପନୀତ ହୋଇ ନାହାନ୍ତି । ହୃଦୟର ନିଭୃତତମ ପ୍ରଦେଶରେ ସେ ଏହାକୁ ଭଲ ପାଉଥିଲେ ଓ ଏଥିରୁ ଅସରନ୍ତି ଆନନ୍ଦ ଲାଭ କରୁଥିଲେ । ତାଙ୍କର ସୃଷ୍ଟି ରସଧାରାରେ ରଞ୍ଜିତ ହୋଇ ଲୋକ-ସାହିତ୍ୟ ନୂତନ ରଙ୍ଗ ଓ ଜୀବନ ଲାଭ କରିଛି । ସେ ଏହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ବିଚିତ୍ର ରହସ୍ୟ ଉଦ୍‌ଘାଟନ କରିଛନ୍ତି । ଏ କ୍ଷେତ୍ରରେ ରବୀନ୍ଦ୍ରନାଥ ଅଗ୍ରଦୂତ ।

ପଲ୍ଲୀସାହିତ୍ୟର ଅଧ୍ୟୟନ ତିନୋଟି ଉପାୟରେ କରା ଯାଇପାରେ । ପ୍ରଥମତଃ ସମସ୍ତ ନିରୂପଣ, ଦ୍ୱିତୀୟରେ ନୃତାତ୍ତ୍ୱିକ ସାମ୍ୟ ଓ ବୈଷମ୍ୟ ଦ୍ୱାରା ସମସ୍ୟର ତୁଳନାତ୍ମକ ବିଚାର ଏବଂ ସର୍ବ ଶେଷରେ ଯୁଗର ସାମାଜିକ ଓ ମନସ୍ତାତ୍ତ୍ୱିକ ଦିଗରୁ ବିଶ୍ଳେଷଣ ।

ରବୀନ୍ଦ୍ରନାଥ ପ୍ରଥମ ଓ କେତେକ ପରିମାଣରେ ଶେଷ ଉପାୟଟି ଗ୍ରହଣ କରିଛନ୍ତି । ସେ ଲୋକସାହିତ୍ୟର ସାହିତ୍ୟିକ ମୂଲ୍ୟରେ ଆଗ୍ରହୀ । ତେଣୁ ତାଙ୍କ ରଚନାରେ ଭୌଗୋଳିକ, ଐତିହାସିକ ଓ ନୃତାତ୍ତ୍ୱିକ ଦୃଷ୍ଟିକୋଣର ପ୍ରଶ୍ନ ଉଠେ ନାହିଁ । ଏକ ଗୀତର ରୂପ ରୂପାନ୍ତର ସେ ଲିପିବଦ୍ଧ କରି ରଖୁଥିଲେ । ଏଥି ମଧ୍ୟରୁ କେଉଁଟି ମୌଳିକ ଗୀତ ଜାଣିବା ସମ୍ଭବ ନୁହେଁ । କେଉଁ କେଉଁ ସ୍ଥାନରୁ ଗୀତ-ଗୁଡ଼ିକ ସଂଗୃହୀତ ହୋଇଛି ଉଲ୍ଲେଖ କରିଥିଲେ ଗବେଷଣାର ପନ୍ଥା ସରଳତର ହୋଇଥାନ୍ତା ।

ରବୀନ୍ଦ୍ରନାଥଙ୍କ ସଂଗ୍ରହର ପରିମାଣ ବିପୁଳ ନୁହେଁ । ସେଥିଲାଗି ସେ ଏକ ବିସ୍ତୃତ ଯୋଜନା କରି ନଥିଲେ । ପୁଣି ଗୋଟିଏ ଦିଗରେ ଏହା ସୀମିତ— ଶିଶୁଖେଳ ଗୀତ । ଏ ଗୀତଗୁଡ଼ିକ କୋମଳହୃଦୟା ଜନନୀ କିମ୍ବା ଶିଶୁମାନେ ବୋଲିଥାନ୍ତି । ଦୋଳିଗୀତ, ଗାଥାଗୀତିକା, ନାଉରୀଗୀତ, ଟଗରିଆଗୀତ ପ୍ରଭୃତି ରବୀନ୍ଦ୍ରନାଥ ସଂଗ୍ରହ କରି ନାହାନ୍ତି । ତଥାପି ସୁନିର୍ବାଚିତ ହୋଇଥିବାରୁ ଭାରତୀୟ ଲୋକଗୀତ ମଧ୍ୟରେ ରବୀନ୍ଦ୍ରଙ୍କ ସଂଗ୍ରହ ଏକ ମୁଖ୍ୟ ସ୍ଥାନ ଅଧିକାର କରିଛି ।

ହୋଇପାରେ, ଗୀତର କେତେକ ପଂକ୍ତି ନିରର୍ଥକ । କିନ୍ତୁ ସେଥିରେ ଗ୍ରାମ୍ୟ ଶିଶୁର କଳ୍ପନା ମୁକ୍ତଭାବରେ କ୍ରୀଡ଼ା କରୁଅଛି । ନୌକାରେ ବୁଲି ମାଛଧରି ସାନପୁଅ ଘରକୁ ବାହୁଡ଼ିବାର ପଥକୁ ମାଆର ପ୍ରତୀକ୍ଷା, ପୁଅଝିଅଙ୍କ ବାହାଘର ଲାଗି ମାଆର ସୁଖସ୍ୱପ୍ନ, ଶିଶୁର ନୃତ୍ୟ, ଗୋଠବାହୁଡ଼ା, ବାଳକର ଧୂଳିବୋଳା

ଦେହି ଦେଖିବାରେ ମାଆର ପୁଲକ ପ୍ରଭୃତି ଶୈଶବ ଜୀବନର ବହୁ ଆନନ୍ଦ-ଉତ୍ସବମୟ ବୈଭବ ଏଥିରେ ପ୍ରକାଶିତ । କେଉଁଠି ଗାଈର ନାଆଁ 'ହାସି' ତ ପୁଅର ନାଆଁ 'ଧୂଳିଆ ବାବାଜି' । କେଉଁଠି ମାଆ ଅବୁଝା ପିଲା ଲାଗି ବର୍ଣ୍ଣି ତଥ୍ୟର କରେ, କେଉଁଠି ବା ଦୁରନ୍ତ ଶିଶୁକୁ ଶାସନ କରେ । କେଉଁଠି ଝିଅ ବାହୁନି ବାହୁନି ବାପଘରୁ ବିଦାୟ ନଏ । ଏହିସବୁ ନିବିଡ଼ ରସାଳ ଅନୁଭୂତି ଅତି ଅଳ୍ପ କଥାରେ ପ୍ରକାଶ ପାଇଅଛି ।

"ଆଗେ କାନ୍ଦେ ମା ବାପ ପିଛେ କାନ୍ଦେ ପର"
"କସେର ମାସୀ, କସେର ପିସୀ, କସେର ବୃନ୍ଦାବନ
ଅତୋଦିନେ ଜାନଲାମ ମା ବଡ଼ ଧନ ।"
ଅଥବା
"ଧନକେ ନଯ୍ୟେ ବନଯ୍ୟେ ଯାବୋ ସେଖାନେ ଖାବୋ କି ?
ନିରଲେ ବସିୟା ଚାନ୍ଦେର ମୁଖ ନିରେଖି ।"

ରବୀନ୍ଦ୍ରନାଥ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି ଯେ ତାଙ୍କ ସଂଗ୍ରହ କେବଳ ବଙ୍ଗ ମଧ୍ୟରେ ସୀମାବଦ୍ଧ ନୁହେଁ । ତାଙ୍କ ସଂଗୃହୀତ କେତେକ ସଙ୍ଗୀତ ପଡ଼ୋଶୀ ପ୍ରଦେଶର ସୀମାନ୍ତ ଅଞ୍ଚଳରେ ଦେଖିବାକୁ ମିଳେ । ଉପଭାଷା ଅନ୍ତର୍ଗତ କେତେକ ଶବ୍ଦରୁ ଏହା ସ୍ପଷ୍ଟ ବୋଧହୁଏ । ମୋର ଦୃଢ଼ ବିଶ୍ୱାସ, ତାଙ୍କର କେତେକ ଗୀତ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କଣ୍ଟାଇରୁ ସଂଗୃହୀତ । ସେହି ଅଞ୍ଚଳରୁ ମୋ ସଂଗୃହୀତ ସଙ୍ଗୀତ ସହିତ ରବୀନ୍ଦ୍ରଙ୍କ ଶିଶୁ ସଙ୍ଗୀତର ନିବିଡ଼ ସାମ୍ୟ ଥିବାରୁ ଏହା ଲେଖୁଅଛି ।

ଏହି ଅଞ୍ଚଳରେ କଥିତ ଭାଷା ଓଡ଼ିଆର ଏକ ଉପଭାଷା । ଏଠି ଗୋଟିଏ ଦୃଷ୍ଟାନ୍ତ ଦେଲେ ଓଡ଼ିଆ ଓ ଓଡ଼ିଆ ବଙ୍ଗଳା ମିଶ୍ରିତ ଉପଭାଷା ମଧ୍ୟରେ ସାମ୍ୟ ସହଜରେ ଜଣାଯିବ ।

ବଙ୍ଗଳା— ଜାଦୁ ଏତୋ ବଡ଼ୋ ରଙ୍ଗୋ
ଚାର ରଙ୍ଗ ଦେଖାତେ ପାରୋ
ଜାବୋ ତୋମାର ସଙ୍ଗ ।
ଜବା ରଙ୍ଗ କରବୀ ରଙ୍ଗ, ରଙ୍ଗ କୁସୁମ ଫୁଲ୍
ତାହାର ଅଧିକ ରଙ୍ଗ କନ୍ୟେ ତୋମାର ମଥାର ସିନ୍ଦୂର ।
ଜାଦୁ ଏତୋ ବଡ଼ୋ ରଙ୍ଗୋ, ଏତୋ ବଡ଼ୋ ରଙ୍ଗୋ
ଚାର ଧାଲେ ଦେଖାତେ ପାରୋ, ଯାବୋ ତୋମାର ସଙ୍ଗ
ବାକ୍ ଧାଲେ, ବସ୍ତ୍ର ଧାଲେ ଆର୍ଲେ ରାଜହଂସ
ତାହାର ଅଧିକ ଧାଲେ କନ୍ୟେ ତୋମାର ହାତେର ଶଙ୍ଖ ।

ଜାଦୁ ଏତୋ ବଡ଼ୋ ରଙ୍ଗୋ, ଏତୋ ବଡ଼ୋ ରଙ୍ଗୋ
ଗ୍ଡ଼ର କାଲେ ଦେଖାତେ ପାରେ । ଯାବୋ ତୋମାର ସଙ୍ଗ
କାକ କାଲୋ, କୋକିଲ କାଲୋ, କାଲୋ ଫିଙ୍ଗେର ବେଶ
ତାହାର ଅଧିକ କାଲୋ କନ୍ୟେ ତୋମାର ମଥାର କେଶ ।

ଓଡ଼ିଆ—ରଙ୍ଗ ରଙ୍ଗଣୀ ଏଦୁହେଁ ରଙ୍ଗ ଲୋ, ରଙ୍ଗ ତ ଫୁଲ ମନ୍ଦାର
ଆହୁର ଯେବେ ତୁ ରଙ୍ଗ ପଗ୍ଡ଼ଲୁ
ଚଢ଼େଇ୍ସାଣୀ ଲୋ,
ତୋହର ମଥା ସିନ୍ଦୂର ।

ରଙ୍ଗ ଗ୍ଡ଼ର ଛାନ୍ଦ କହଲୁ ନାଗର, ତୁ ମୋର ଜୀବନ ଧନ
ଧଳା ଗ୍ଡ଼ର ଛାନ୍ଦ ଯେବେ କହବୁରେ,
ଯାଚ ଭୁଞ୍ଜାଇବ ପାନ ।
ଧୋବ ଧୋବଳୀ ଏ ଦୁହେଁ ଧୋବ ଲୋ
ଧୋବ ତ ରଜାଙ୍କ ହଂସ
ଆହୁର ଧୋବ ତୁ ଯେବେ ପଗ୍ଡ଼ଲୁ
ଚଢ଼େଇ୍ସାଣୀ ଲୋ,
ତୋହର ପିନ୍ଧଲା ବାସ ।
ଧୋବ ଗ୍ଡ଼ର ଛାନ୍ଦ କହଲୁ ନାଗର
ତୁ ମୋର ଜୀବର ଧନ
କଳା ଗ୍ଡ଼ର ଛାନ୍ଦ ଯେବେ କହବୁରେ,
ଯାଚ ଦେବ ଯଉବନ ।
କଳା କଳା ଏଦୁହେଁ କଳା ଲୋ
କଳା ତ ବଲ ମଇଁଷି
ଆହୁର ଯେବେ ତୁ କଳା ପଗ୍ଡ଼ଲୁ
ଚଢ଼େଇ୍ସାଣୀ ଲୋ
ତୋହର ମୁଣ୍ଡର କେଶି ।

ନାନାପ୍ରକାର ଶବ୍ଦଗତ ସାମ୍ୟ ମଧ୍ୟରେ ଆମେ ଯତ୍‌ସାମାନ୍ୟ ତାରତମ୍ୟ ଏହି ଦୁଇ କବିତାଂଶରେ ଦେଖିବାକୁ ପାଉଁ । ପ୍ରୀତି ମନୋଭାବ ଓଡ଼ିଆ ଗୀତରେ ସୁନ୍ଦରତର ଭାବରେ ପ୍ରକାଶ ପାଇଅଛି । ଏହା ଜଣେ ଶିକାରୀ ଓ ତାର ସ୍ତ୍ରୀର ଆଳାପ ମାତ୍ର । ବଙ୍ଗଳା ଗୀତରେ ପୁରୁଷ ସ୍ତ୍ରୀର ରଙ୍ଗବିଷୟକ ପ୍ରଶ୍ନାବଳୀର ଉତ୍ତର ଠିକ୍‌ଭାବେ ଦେଲେ ସ୍ତ୍ରୀ ତାର ଯୌବନ ଅର୍ପଣ କରିବ ବୋଲି ବ୍ୟକ୍ତ କରିଛି । ଓଡ଼ିଆ ଗୀତରେ ସ୍ତ୍ରୀ ପ୍ରଥମେ ନାନାପ୍ରକାର ଉପହାର ଦେଇଛି ଓ ପରିଶେଷରେ

ରଙ୍ଗବିଷୟକ ସମସ୍ତ ଉତ୍ତର ପାଇବା ମାନେ ନିଜର ଯୌବନ ଅର୍ପଣ କରିବାକୁ ସ୍ୱୀକୃତ ହୋଇଅଛି ।

ରବୀନ୍ଦ୍ରନାଥଙ୍କ ବାଉଲ୍ ସଙ୍ଗୀତପ୍ରୀତି ସର୍ବଜନବିଦିତ । ସେ ନିଜେ ଜୀବନଦର୍ଶନର ପୁଷ୍ଟି ଲାଗି ସେମାନଙ୍କ ସଙ୍ଗୀତରୁ ପ୍ରେରଣା ଲାଭ କରିଥିଲେ । ତାଙ୍କର କେତେକ ଗୀତ ବାଉଲ୍ ଗୀତଭଙ୍ଗୀରେ ରଚିତ ପଲ୍ଲୀଗୀତ ଛନ୍ଦ ମଧ୍ୟ ତାଙ୍କୁ ବହୁ ପରିମାଣରେ ଅନୁପ୍ରାଣିତ କରିଥିଲା । ଏହି ପୃଷ୍ଠଭୂମିରେ ହିଁ ରବୀନ୍ଦ୍ରନାଥ ମନୋହାରୀ ଶିଶୁଗୀତ ରଚନା କରିଥିଲେ ।

ଗୋଟିଏ କଥାରେ କହିଲେ, ରବୀନ୍ଦ୍ରନାଥ ନବଭାବରେ ପଲ୍ଲୀଗୀତର ଆବିଷ୍କାର କରିଛନ୍ତି, ନିଜ କୃତିରେ ଅଙ୍ଗୀଭୂତ କରି ତାହାକୁ ପୁନର୍ଜୀବିତ କରିଛନ୍ତି । କାରଣ ଏହା ମଧ୍ୟରେ ମନୁଷ୍ୟର ଶ୍ରେଷ୍ଠ ଧର୍ମ, ମାନବହୃଦୟର ସାର୍ବଜନୀନ ଚିରନ୍ତନ ଅନୁଭୂତି ପ୍ରକାଶିତ ହୋଇଅଛି, ଅରୂପ ରୂପାୟିତ ହୋଇଅଛି, ଅବାନ୍ତର ଶବ୍ଦସମୂହ ଅର୍ଥାନ୍ୱିତ ହୋଇଅଛି, ପ୍ରାଣମୟ, ଆନନ୍ଦମୟ ରୂପରେ । ମାନବତାବାଦୀ ରବୀନ୍ଦ୍ରନାଥ ଯୁଗ ଯୁଗ ଧରି ଅବହେଳିତ, ଅବଜ୍ଞାତ ମୂକ ଜନତାର ମର୍ମନ୍ତୁଦ ଅନୁଭୂତି ରୂପାୟିତ କରିଛନ୍ତି । *

—*—

* ୧୯୬୧ ମସିହା ଅଗଷ୍ଟ ୧୦ ତାରିଖରେ ଅନୁଷ୍ଠିତ ରବୀନ୍ଦ୍ର ଶତବାର୍ଷିକୀ ଉପଲକ୍ଷ୍ୟେ ରବୀନ୍ଦ୍ର ଓ ଭାରତୀୟ ସାହିତ୍ୟ ଅଧିବେଶନରେ ପଠିତ ଲେଖକଙ୍କ ଇଂରେଜୀ ପ୍ରବନ୍ଧର ଭାବାନୁବାଦ ।

## ବଙ୍ଗଳା ଓ ଓଡ଼ିଆ ପଲ୍ଲୀସାହିତ୍ୟ

ସଂସ୍କୃତି ପୁଷ୍କରିଣୀ ଜଳ ପରି ଗୋଟିଏ ସ୍ଥାନରେ ଆବଦ୍ଧ ହୋଇ ରହେ ନାହିଁ । ଏହାର ଧାରା ସାମୁଦ୍ରିକ ସ୍ରୋତ ସଦୃଶ ଦେଶଦେଶାନ୍ତରେ ପ୍ରବାହିତ ହୁଏ । ବଙ୍ଗଳା ଓ ଓଡ଼ିଶାର ସଂସ୍କୃତି ପକ୍ଷରେ ଏହା ଅନୁରୂପ ସତ୍ୟ । ଏଇ ଦୁଇ ପ୍ରଦେଶ ପ୍ରତିବେଶୀ ଓ ଦୁହିଁଙ୍କ ମଧ୍ୟରେ ଯୁଗ ଯୁଗ ଧରି ସାଂସ୍କୃତିକ ଆଦାନପ୍ରଦାନ ଚାଲି ଆସୁଅଛି । ଲୋକ-ସାହିତ୍ୟ ବିଶେଷତଃ ଲୋକ-କବିତା ଓ ସଙ୍ଗୀତ ଏହାର ସ୍ପଷ୍ଟ ସଙ୍କେତ ବହନ କରେ ।

ଓଡ଼ିଶାର ପାଲି ଓ ବଙ୍ଗଳାର 'କବିର ଗାନ' ଦୁଇଟି ପ୍ରାଚୀନ ଲୋକପ୍ରିୟ ସାହିତ୍ୟିକ ଅନୁଷ୍ଠାନ । ଗାୟକ ଓ ବାଦକ ବ୍ୟତୀତ ଏଥିରେ ଆଉ ଚାରିଜଣ ପାଳିଆ ଥାନ୍ତି । ପାଲିର ଗାୟକ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଧୁରନ୍ଧର, ପ୍ରାଚୀନ ରାଗରାଗିଣୀରେ ଓସ୍ତାଦ୍ । ତାର ଡାହାଣ ହାତରେ ଚିନ, ବାମ ହସ୍ତରେ ଚାମର, ପିନ୍ଧା ଘେର, ଚପ୍‌କନ୍, ଟୋପି । ସେ ପଲ୍ଲୀକବିମାନଙ୍କର ରଚିତ ଗୀତ ଗାଏ । ପଲ୍ଲୀର ପାଲିକବି ସଙ୍ଗୀତରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ-ସିଂହାର, ଭକ୍ତଚରଣ ପ୍ରଭୃତି ପ୍ରାଚୀନ ଓଡ଼ିଆ କବିଙ୍କର ଛାନ୍ଦ, ଚୌପଦୀ, ସଂସ୍କୃତ ଶ୍ଳୋକ ଖଞ୍ଜିଥାନ୍ତି । ବଙ୍ଗଳା କବିଦଳ ମଧ୍ୟରେ ପ୍ରତିଯୋଗିତା ପରି ବାଦୀପାଲି ବିଶେଷ ଉପଭୋଗ୍ୟ । ଦୁଇ ଗାୟକ ପ୍ରଶ୍ନୋତ୍ତର ଛଳରେ ଜ୍ଞାନରାଜ୍ୟରେ ପ୍ରବେଶ କରନ୍ତି । ଶ୍ରୋତା ବା ଦ୍ରଷ୍ଟାଙ୍କୁ ମଧ୍ୟ ସଙ୍ଗରେ ଘେନିଯାନ୍ତି । ସାତ ଦିନରୁ ଏକମାସ ପର୍ଯ୍ୟନ୍ତ ପାଲି ପ୍ରତିଯୋଗିତା ଚାଲେ । ବିଚାରକମଣ୍ଡଳୀ ଉଭୟ ଦଳ ମଧ୍ୟରେ କିଏ ସରସ, କିଏ ନୀରସ ବାଛି ଦିଅନ୍ତି । ଗାୟକର ଜ୍ଞାନର ଗମ୍ଭୀରତା, ପ୍ରତ୍ୟୁତ୍ପନ୍ନମତିତା, ବାଗ୍ମିତା, ସ୍ମୃତିଶକ୍ତି ଓ କଣ୍ଠସ୍ୱର, ବାଦ୍ୟର ତାଳ, ପାଳିଆମାନଙ୍କ ନୃତ୍ୟ ଓ ପାଳି ଧରିବାର ରୀତି, ଗାୟକର ସୌଜନ୍ୟ, ବିନୟ, ଭାବଭଙ୍ଗୀ ଓ ଆଶୁକବିତ୍ୱ ପ୍ରଭୃତି ନାନା ଦିଗରୁ ବିଚାରକମାନେ ବିବେଚନା କରିଥାନ୍ତି । 'କବିଗାନ'ରେ ଢୋଲ ବାଜେ; ପାଲିରେ ମୃଦଙ୍ଗ । ପାଲିରେ ଗୋଟିଏ ଦଳ ଗୀତି ବୋଲି ସାରିଲା ପରେ ଆଉ ଗୋଟିଏ ଦଳ ଉଠନ୍ତି । 'କବିଗାନ'ରେ ସେହିପରି ହୁଏ । କିନ୍ତୁ ଶେଷରେ କବି ପ୍ରତିଯୋଗୀ କବିର ସମ୍ମୁଖୀନ ହୁଏ । ଏଥିରେ ରଚିତ ଗୀତି ବିରଳ, ଆଶୁକବିତ୍ୱ ପୂର୍ଣ୍ଣମାତ୍ରାରେ ପ୍ରକାଶ ପାଏ । ପାଲିର ରାଗରାଗିଣୀର ମାଧୁରୀ ଏଥିରେ ଦୁର୍ଲଭ । କବିର ସ୍ୱତନ୍ତ୍ର ବେଶଭୂଷଣ ମଧ୍ୟ ନାହିଁ । ସେ ଲୁଗା ପଞ୍ଜାବୀପିନ୍ଧା ଭଦ୍ର-ଲୋକ । ପାଲି ପରି ଏଥିରେ ଛଳୋକ୍ତି ଚିତ୍ତାକର୍ଷକ ହୋଇଥାଏ । କିନ୍ତୁ 'କବିଗାନ'

ବହୁ ସଂସ୍କାର ପରେ ଏବେ ଏକ ଆଲୋଚନାସଭାରେ ପରିଣତ ହୋଇଅଛି । ପାଲା ମଧ୍ୟ କ୍ରମେ ତାର ସଂସ୍କାରପ୍ରିୟତା ଯୋଗୁଁ ପ୍ରାଚୀନ ମାଧୁର୍ଯ୍ୟ ହରାଇ ବସିଲାଣି । ଯୁଗୋପଯୋଗୀ ହେବା ପ୍ରୟାସରେ ଉଭୟେ ହୁଏତ ଲୋପ ପାଇଯିବେ ।

ବଙ୍ଗଳାର ପଟୁଆ ଓ ଓଡ଼ିଆ ପାଟୁଆ ଯାତ୍ରା ମଧ୍ୟରେ ଗଭୀର ସାମ୍ୟ ରହିଅଛି । ପଟୁଆମାନେ ହିନ୍ଦୁ ନୁହନ୍ତି କିମ୍ବା ମୁସଲମାନ ନୁହନ୍ତି । ସେମାନେ ମୁସଲମାନଙ୍କ ପରି ନମାଜ ପଢ଼ନ୍ତି, ପୁଣି ହିନ୍ଦୁ ଦେବଦେବୀମାନଙ୍କର ଚିତ୍ର ମଧ୍ୟ ଅଙ୍କନ କରନ୍ତି । କୋଡ଼ିଏ ପଚିଶହାତ ଲମ୍ବ ପଟ ଉପରେ ସେମାନେ କୌଣସି କାହାଣୀକୁ ଧାରାବାହିକ ରୂପରେ ଚିତ୍ର ରୂପ ପ୍ରଦାନ କରନ୍ତି ଓ ଏହି କାହାଣୀକୁ ଅବଲମ୍ବନକରି ଗୀତକାବ୍ୟ ରଚନା କରନ୍ତି । ସେମାନେ ଗ୍ରାମେ ଗ୍ରାମେ ବୁଲି ଚିତ୍ର ସାହାଯ୍ୟରେ ଗୀତର ଅର୍ଥ ବୁଝାଇଥାନ୍ତି । ଏହା ସେମାନଙ୍କର ଏକ ସାମୟିକ କିନ୍ତୁ ପାରମ୍ପରିକ ବୃତ୍ତି । ସେମାନେ ଏକାଧାରରେ କବି ଓ ଶିଳ୍ପୀ ।

ଓଡ଼ିଶାର ପାଟୁଆମାନେ ହିନ୍ଦୁ ବୋଲି ଅଭିହିତ ହେଲେହେଁ ସେମାନଙ୍କର ମନ୍ଦିର ପ୍ରବେଶାଧିକାର ନ ଥିଲା । ସେମାନେ ଅସ୍ପୃଶ୍ୟ ଥିଲେ ଓ ମୁସଲମାନମାନଙ୍କୁ ସବାରିରେ ବସାଇ କାନ୍ଧରେ ବୋହିନେବାରେ ସେମାନଙ୍କର ଜାତିଗତ ଅନ୍ତରାୟ ନ ଥିଲା । ସେମାନେ ପାଲାବାଲାଙ୍କପରି ପଲ୍ଲୀ-କବିଙ୍କ ରଚିତ ଗୀତ ବୋଲନ୍ତି, ମଧ୍ୟେ ମଧ୍ୟେ ମନଗଢ଼ା ବଚନିକା ବୋଲିଥାନ୍ତି । ବାଦୀ ପାଲା ପରି ବାଦୀ ପାଟୁଆ ମଧ୍ୟ ଲୋକପ୍ରିୟ । ପଟୁଆଙ୍କ ପରି ପାଟୁଆମାନଙ୍କର ପଟଚିତ୍ର ସହିତ ଏବେ କୌଣସି ସମ୍ପର୍କ ନାହିଁ, ଯଦି ବା ଓଡ଼ିଆର ପଟଚିତ୍ର ଭାରତପ୍ରସିଦ୍ଧ ଓ ଚିତ୍ରକରମାନଙ୍କର ମୁଖ୍ୟ ଜୀବିକା ।

ବଙ୍ଗଳାର 'ଶିବେର ଗାଜନ' ପରି ଓଡ଼ିଶାର ଦଣ୍ଡନାଟ ପ୍ରସିଦ୍ଧ । ଉଭୟ ଅନୁଷ୍ଠାନର ଆରାଧ୍ୟ ଦେବତା ଶିବ । ବଙ୍ଗଳାର 'ବେତତୋଲା', 'ଘଟଭରା' ଉତ୍ସବ ପରି ଓଡ଼ିଶାରେ 'ଘଟଉଠା', 'ପାଣିତୋଳା' ଉତ୍ସବ ଅନୁଷ୍ଠିତ ହୁଏ । ଦଣ୍ଡନାଟର ଏହି ଘଟକୁ 'କାମନାଘଟ' କହନ୍ତି । ଉଭୟ ଉତ୍ସବରେ ଘଟ ସହିତ ଶିବ ଓ ଗୌରୀ ବେତର ମଧ୍ୟ ପୂଜା ହୁଏ । ଶିବ ଓ ଗୌରୀଙ୍କର ପ୍ରତୀକ ବେତ ଦୁଇଟିକୁ ପାଣିଭରା ମାଟିଆରେ ରଖି ପଙ୍କ ତଳେ ସମାଧି ଦିଆଯାଏ । ପୁଣି ପର-ବର୍ଷ ଉଠାଯାଏ । 'ଦଣ୍ଡନାଟ' ଓ 'ଶିବେର ଗାଜନ' ଉଭୟ କୃଷିଉତ୍ସବ । ଦଣ୍ଡ-ନାଟର 'କାମନାଘରେ' ବାଲି ବିଛେଇ ଦିଆହୁଏ; ସେଥିରେ ଧାନ, ଗହମ, ମୁଗ, ମସୁର ପ୍ରଭୃତି ପଞ୍ଚଧାନ୍ୟ ବୁଣାଯାଏ । ଗଜାହେଲେ ତାକୁ 'ବାଲିଫୁଲ' କହନ୍ତି, ଏହା କୃଷକ ଶିବଙ୍କ କୃଷିର ଅଭିନୟ । 'ଶିବେର ଗାଜନ'ର ଶିବ ମଧ୍ୟ ଜଣେ କୃଷକ । ଭକ୍ତମାନଙ୍କ ମଧ୍ୟରୁ କିଏ ହଳ ବୁଲାଏ, କିଏ ଧାନ ବୁଣେ, କିଏ ଧାନ

କାଟେ, କିଏ ଗୋରୁ ବା ଛେଳି ହୋଇ ଧାନ ଖାଏ । ପ୍ରଶ୍ନୋତ୍ତର ଛଳରେ ସେ ବର୍ଷର ଧାନ୍ୟଉତ୍ପାଦନର ପରିମାଣ ମଧ୍ୟ ସ୍ଥିରୀକୃତ ହୁଏ ।

ଦଣ୍ଡନାଟରେ କାଳୀପର ଗାଜନରେ ମୁଣ୍ଡମାଳୀ । ଦଣ୍ଡରେ ଚଢେ଼ୟା ଚଢେ଼ୟାଣୀ, ଫକୀର, ଫକୀରାଣୀ, ପନ୍ଥ ସଉରୁଣୀ, ବାଇଧନ ପରି ଗାଜନରେ ବହୁ ସୁଆଙ୍ଗ ବାହାରନ୍ତି । ବହୁ ରଚିତ ଗୀତ ବୋଲାହୁଏ । ଏହି ଦୁଇ ଅନୁଷ୍ଠାନ ସାଧାରଣତଃ ନିମ୍ନଶ୍ରେଣୀ ମଧ୍ୟରେ ଆବଦ୍ଧ ହେଲେ ବି ଜାତିଭେଦର ସ୍ଥାନ ଏଥିରେ ନାହିଁ । ଉଚ୍ଚଶ୍ରେଣୀର ବ୍ୟକ୍ତି ଅବାଧରେ ଏଥିରେ ଯୋଗ ଦେଇ ପାରନ୍ତି । ବହୁ ଶାସ୍ତ୍ରପୁରାଣର ଆଲୋଚନା ହୁଏ ।

ଉଭୟ ପ୍ରଦେଶରେ ଚଡ଼କପୂଜାର ପ୍ରଚଳନ ଅଛି । ନିଆଁ ଅଙ୍ଗାରେ ଚାଲିବା, କଣ୍ଟାଉପରେ ଶୋଇବା, ତାତିଲା ବାଲିଉପରେ ଗଡ଼ିବା, ଜିଭରେ ଲୁହାକଣ୍ଟା ଫୋଡ଼ିବା, ଖଣ୍ଡାଉପରେ ଖାଲିପାଦରେ ଠିଆହେବା, ଗଛଡ଼ାଳରେ ପାଦଦୁଇଟି ବାନ୍ଧି ଜଳନ୍ତା ନିଆଁ ଉପରେ ମୁଣ୍ଡ ଝୁଲାଇବା ପ୍ରଭୃତି ଯାବତୀୟ କାୟକ୍ଲେଶକର କ୍ରିୟାସବୁ ପ୍ରଦର୍ଶିତ ହୁଏ । ଉଦ୍ଦେଶ୍ୟ, ଶିବଙ୍କ ସନ୍ତୋଷବିଧାନ । ଯଜମାନର କଲ୍ୟାଣ କାମନାରେ ପୂଜକ ସମସ୍ତ କାୟକ୍ଲେଶ ବରଣ କରେ । ଦୃଢ଼ ଭଗବତ୍ ବିଶ୍ୱାସ ଥିବାରୁ ତାର କିଛି ଶାରୀରିକ କ୍ଷତି ହୁଏନାହିଁ ।

ସତ୍ୟପୀରଙ୍କ ମାନସିକ ପୂଜା ଉଭୟ ପ୍ରଦେଶରେ ପ୍ରଚଳିତ । ଆୟୁବୃଦ୍ଧି, ସନ୍ତାନପ୍ରାପ୍ତି, ଧନଲାଭ ଓ ଯଶଲାଭ ଲାଗି ଏହି ପୂଜା ହୁଏ । ଓଡ଼ିଆ ପାଲା ଓ ବଙ୍ଗଳା ପାଞ୍ଚାଳୀ କାହାଣୀ ମଧ୍ୟରେ ବିଶେଷ ସାଦୃଶ୍ୟ ରହିଅଛି । ଓଡ଼ିଶାରେ ପ୍ରଚଳିତ କବିକର୍ଣ୍ଣଙ୍କ ପାଲାର ଭାଷା ବଙ୍ଗଳା ଓ ପାରସୀ ଶବ୍ଦ ମିଶା । ସମ୍ଭବତଃ ସତ୍ୟପୀରଙ୍କ ପାଲା ବଙ୍ଗଳାରୁ ଓଡ଼ିଶାକୁ ଆସିଛି । ଓଡ଼ିଶାରେ ହିନ୍ଦୁ ମୁସଲମାନ ସମସ୍ୟା କେବେ ଉତ୍କଟ ହୋଇନାହିଁ । ଉଭୟ ସମ୍ପ୍ରଦାୟ ମଧ୍ୟରେ ମିଳନପ୍ରଚେଷ୍ଟା ପ୍ରଥମେ ବଙ୍ଗଦେଶରେ ଆରମ୍ଭ ହୁଏ, ପରେ ଓଡ଼ିଶାରେ ପ୍ରସାରିତ ହୁଏ । ଓଡ଼ିଶାରେ ସାଧାରଣତଃ ଏହା ହିନ୍ଦୁ ପୂଜା ଭାବରେ ଅନୁଷ୍ଠିତ ହୁଏ ।

ବଙ୍ଗଳାମିଶା ଓଡ଼ିଆ ସଂକୀର୍ତ୍ତନ ଏବେ ବି କିଛି ପରିମାଣରେ ଓଡ଼ିଶାର ପୂର୍ବପଲ୍ଲୀରେ ପ୍ରଚଳିତ ଅଛି । ହାଡ଼ିପାଙ୍କ ଶିଷ୍ୟ ବଙ୍ଗଦେଶର ରାଜା ଗୋବିନ୍ଦଚନ୍ଦ୍ରଙ୍କ ରାଜ୍ୟତ୍ୟାଗ କାହାଣୀ ଏବେ ବି ଓଡ଼ିଆ ପଲ୍ଲୀବାସିନ୍ଦାମାନଙ୍କ ନୟନ ଅଶ୍ରୁସିକ୍ତ କରେ । ସେହିପରି ଜଳେଶ୍ୱର ଅଞ୍ଚଳର ଲିଙ୍ଗଳେଶ୍ୱର ଶିବଙ୍କ ବିଷୟର କିମ୍ବଦନ୍ତୀ ମେଦିନୀପୁରର କବି ରାମେଶ୍ୱରଙ୍କ 'ଶିବାୟନ' କାବ୍ୟରେ, ପୁରୁଷୋତ୍ତମଦେବଙ୍କ କାଞ୍ଚିବିଜୟ କିମ୍ବଦନ୍ତୀ କବି ରଙ୍ଗଲାଲ୍‌ବନ୍ଦ୍ୟୋପାଧ୍ୟାୟଙ୍କ କାଞ୍ଚିକାବେରୀ କାବ୍ୟରେ ରୂପାୟିତ ହୋଇଅଛି । ଉଭୟ ପ୍ରଦେଶର ବାରମାସୀ, ଛଡ଼ା, ଡାକବଚନ,

କାହାଣୀ, କିମ୍ବଦନ୍ତୀ, ପାର୍ବଣ, ଯାତ୍ରା, ଉତ୍ସବ ମଧ୍ୟରେ ନିବିଡ଼ ସାମଞ୍ଜସ୍ୟ ରହିଅଛି ।

ଏହି ପ୍ରବନ୍ଧରେ ପ୍ରସଙ୍ଗର ଅବତାରଣା କରାଗଲା ମାତ୍ର ।

ବଙ୍ଗଳାର ବାଉଲ ସଙ୍ଗୀତ ପରି ଓଡ଼ିଶାରେ ପିଣ୍ଡବ୍ରହ୍ମାଣ୍ଡ ଦର୍ଶନର ପ୍ରତୀକ ବହୁ ଶରୀରଭେଦ ଭଜନ, ଶୂନ୍ୟବାଦୀ ବୈରାଗ୍ୟମୂଳକ ଭଜନ ପ୍ରଚଳିତ ଅଛି । ପଞ୍ଚସଖା ଯୁଗରୁ ଆରମ୍ଭକରି ଏ ପର୍ଯ୍ୟନ୍ତ ସେଗୁଡ଼ିକ ଲୋକସଂସ୍କୃତି ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରି ଆସିଅଛି । ମହିମାଧର୍ମ ପ୍ରଚାରକଙ୍କ ପ୍ରଚାର ଫଳରେ ନିମ୍ନଶ୍ରେଣୀ ମାନଙ୍କରେ ଏହିଭଳି ଭାବର ବିଶେଷ ପ୍ରସାର ହୋଇଅଛି । ବଙ୍ଗଳାର ବାଉଲ୍ ଓ ଓଡ଼ିଶାର ଭଜନ ମଧ୍ୟରେ କି ପ୍ରକାର ସାଦୃଶ୍ୟ ରହିଅଛି ତାହା ନିମ୍ନୋଦ୍ଧୃତ ଉଦାହରଣରୁ ସ୍ପଷ୍ଟ ହେବ ।

ବଙ୍ଗଳା

ମନେର ଅନୁରାଗୀ ଆମାର ପୋଷା ପାଖି ଗିୟାଛେ ଉଡ଼େ
ଯଖନ ପାଖିର ମନ୍ ଛିଲ ସରଲ
ଫାଁକିଦିୟା କାଟ୍ୟା ଗେଲ ତିନ ପେଁଚେର ଶିକଲ ।
ଓ ଗୋ ମା ତୋର ପାୟେ ଧରି, ଆମାର ପାଖି ଦାଓ ଧରେ
ମନେର ଅନୁରାଗୀ ଆମାର ପୋଷା ପାଖି ଗିୟାଛେ ଉଡ଼େ ।
ପାଖିର ମାଥେ ମୟୂରେର ପାଖା,
ଗୌର ବରନ ସେଇ ନା ପାଖା, ଶ୍ୱେତ ଦୁଇଟି ରାଙ୍ଗା
ହିଙ୍ଗୁଲ ବରନ ସେଇ ନା ପାଖି ଦେଖଲେ ମୁନିର ମନ ଝୁରେ
ମନେର ଅନୁରାଗୀ ପାଖି ଆମାର ଗିୟେଛେ ଉଡ଼େ ।

ଓଡ଼ିଆ

ଉଜାଣି ବୃକ୍ଷେ ଖେଳୁଛି ଲୋଟଣି ପାରା
ଅଠାକାଠି ପଞ୍ଜୁରିରେ ନ ପଡ଼େ ଧରା
ପାରାଟି ଯେ ପଞ୍ଚୁବର୍ଣ୍ଣ
ନାହିଁ ଇନ୍ଦ୍ରି ନାହିଁ ଯୋନି
ପାଞ୍ଚଗୋଟି ପୁଅ ଯେନ୍ ଖେଳୁଛି ପରା । ୧ ।
ସେ ପାରାର ଡେଣା ନାହିଁ
ଲକ୍ଷେ ଯୋଜନେ ଉଡ଼ଇ
ଜଳ ଫଳ ନ ଭୁଞ୍ଜଇ ଅଟେ ଅମରା । ୨ ।

ପାର ଅଛ କେଉଁଠାରେ
କେହି ତା ଦେଖି ନ ପାରେ
ଶୀତଳ ଗୁଆ କୋଟରେ ନ ପଡେ ଧରା । ୩ ।
ପାର ଆଜ ଯିବ ଉଡ଼ି
ବୃକ୍ଷ ପତ୍ରବ ଉପୁଡ଼ି
ଦାସ ସାଧୁ ବୋଲେ ଭଜ ଦୁଃଖ ପାସୋରା । ୪ ।

ବଙ୍ଗଳା ଓ ଓଡ଼ିଶାର ବୁଢ଼ୀମାଆମାନେ ଏକା ପ୍ରକାରେ ରୂପକଥା ଆରମ୍ଭ ଓ ଶେଷ କରନ୍ତି । ଏ ଧାରା କେଉଁ ପ୍ରଦେଶରୁ କେଉଁ ପ୍ରଦେଶକୁ ଯାଇଛି କହିବା କଷ୍ଟକର । ଗଳ୍ପ ଆରମ୍ଭରେ—

କଥାଟିଏ କହୁଁ, କଥାଟିଏ କହୁଁ
କି କଥା ? ବେଙ୍ଗ କଥା
କି ବେଙ୍ଗ ? ଠୁଣ୍ଟା ବେଙ୍ଗ
କି ଠୁଣ୍ଟା ? ବ୍ରାହ୍ମଣମଣ୍ଟ
କି ବ୍ରାହ୍ମଣ ? କୁଜ ବ୍ରାହ୍ମଣ
କି କୁଜ ? କଥା କୁଜ
କି କଥା ? ରଜା ଭିଆ
କି ରଜା ? ଖଣ୍ଡି ଖଜା
କି ଖଣ୍ଡି ? ମିରଗ ଲଣ୍ଡି
କି ମିରଗ ? ଝାଡ଼ ମିରଗ
କି ଝାଡ଼ ? କଣ୍ଟା ଝାଡ଼
କି କଣ୍ଟା ? କାନକୋଳି କଣ୍ଟା
ଯହିଁ ଲଗିଯାଏ ଝଟାପଟା ।
(ଉତ୍କଳ କାହାଣୀ)

ଢାଢ ଲେ ଢାଢ ଏକଟା କଥା
କି କଥା ? ବ୍ୟାଙେର ମାଥା
କି ବ୍ୟାଙ ? ସରୁ ବ୍ୟାଙ
କି ସରୁ ? ବ୍ରାହ୍ମନ ଗୋରୁ
କି ବ୍ରାହ୍ମନ ? ଭଟ ବ୍ରାହ୍ମନ
କି ଭଟ ? ଗୁୟା କାଟ
କି ଗୁୟା ? ଚିକ ଗୁୟା
କି ଚିକ ? ସୋନାର ଚିକ

କ ସୋନା ? ଗୁଇ ଖାନା
ତାର ଅର୍ଦ୍ଧେକ ଭାଗ ନେ ନା
ଭାଗ ନଏ କରବ କ ?
ତୋର ଭାଗ ତୋରେ ଦ !

(ଛେଲେ ଭୁଲାନୋ ଛଡ଼ା)

କଥା ଶେଷରେ—

ମୋ କଥାଟି ସରଲ
ଫୁଲ ଗଛଟି ମରଲ ।
ହଇରେ ଫୁଲଗଛ, ତୁ କାହିଁକି ମଲୁ ?
ମୋତେ କାଳୀଗାଈ ଖାଇଗଲା
ହଇଲୋ କାଳୀଗାଈ, ତୁ କାହିଁକି ଖାଇଦେଲୁ ?
ମୋତେ ଗଉଡ଼ ଜଗିଲା ନାହିଁ ।
ହଇରେ ଗଉଡ଼, ତୁ କାହିଁକି ଜଗିଲୁ ନାହିଁ ?
ମୋତେ ବଡ଼ବୋହୂ ଭାତ ଦେଲାନାହିଁ ।
ହଇଲୋ ବଡ଼ବୋହୂ, ତୁ କାହିଁକି ଭାତ ଦେଲୁନାହିଁ ?
ପିଲା କାନ୍ଦଲା ।
ହଇରେ ପିଲା, ତୁ କାହିଁକି କାନ୍ଦଲୁ ?
ମୋତେ ଧୂଳିଆଜନ୍ଦା କାମୁଡ଼ି ଦେଲା ।
ହଇରେ ଧୂଳିଅଜନ୍ଦା, ତୁ କାହିଁକି କାମୁଡ଼ି ଦେଲୁ ?
ମୁଁ ଭୂଇଁ ତଳେ ତଳେ ଥାଏ
କଅଁଳ ମାଉଁସ ପାଇଲେ
ରଙ୍କିକେ କାମୁଡ଼ି ଦଏ

(ଉତ୍କଳ କାହାଣୀ)

ଆମାର କଥାଟି ଫୁରୋଲ
ନଟେ ଗାଛଟି ମୁଡ଼ୋଲ ।
କେନରେ ନଟେ ମୁଡ଼ୁଲି ?
ଗୋରୁତେ କେନ ଖାୟ ?
କେନରେ ଗୋରୁ ଖାସ୍ ?
ରାଖାଲ କେନ ଚରାୟନା ?
କେନରେ ରାଖାଲ ଚରାସ୍ ନା ?
ବଉ କେନ ଭାତ ଦେୟ ନା ?

କେନରେ ବଉ୍ ଭାତ ହାସ୍‌ନେ ?
କଲାଗାଛ କେନ ପାତ୍ ଫେଲେନା ?
କେନରେ କଲାଗାଛ ପାତ ଫେଲସ୍ ନା ?
ଜଲ୍ କେନ ହୟନା ?
କେନରେ ଜଲ୍ ହୋସ ନା ?
ବ୍ୟାଙ୍ଗ କେନ ଡାକେ ନା ?
କେନରେ ବ୍ୟାଙ୍ଗ ଡାକସ ନା ?
ସାପେ କେନ ଖାୟ ?
କେନରେ ସାପ ଖାସ୍ ?
ଖାବାର ଧନ ଖାବୋ
ଗୁଡ଼ି ଗୁଡ଼ୋତେ ଯାବୋ ।

କୌଲୀନ୍ୟମୋହରେ ବା ଅର୍ଥ ଲାଳସାରେ ବାଳିକା କନ୍ୟାକୁ ପିତା ବୃଦ୍ଧ ହସ୍ତରେ ସମର୍ପଣ କରିବା ଓଡ଼ିଶାର ପଲ୍ଲୀଅଞ୍ଚଳରେ ଏକ ଅସାଧାରଣ ଘଟଣା ନ ଥିଲା । ମରମୀ ପଲ୍ଲୀ କବିମାନଙ୍କ ଗୀତରେ ବାଳିକାବଧୂର କରୁଣ ବେଦନା ରୂପାୟିତ ହୋଇଅଛି ।

ଦାନ୍ତ ନାହିଁ ବୁଢ଼ା ପାକୁଆ ପାଟି, ବୋଉ କି ଲୋ
ବେଦୀରେ ବସିଛି ଆଖି ତରାଟି, ବୋଉ କି ଲୋ
ପର୍ବତ ଶିଖରେ ପାଚିଛି ବେଲ, ବୋଉ କି ଲୋ
ତୋତେ ଲାଜନାହିଁ
ବୁଢ଼ା ମୁଣ୍ଡେ ନେଇ
ଫିଙ୍ଗିଲୁ ଫୁଲ, ବୋଉ କି ଲୋ
ବାପା ବସିଥିଲେ ଗର୍ଭିଣୀ ଘରେ, ବୋଉ କି ଲୋ
ଟଙ୍କା ପହଞ୍ଚିଲା ଦୁଇ ପହରେ, ବୋଉ କି ଲୋ
ମୋହର ଯେମନ୍ତ ନିଶ୍ବାସ ଥିବ, ବୋଉ କି ଲୋ
ଟଙ୍କା ବାରବୋଡ଼ି ଅଙ୍ଗାର ହେବ, ବୋଉ କି ଲୋ

ବଙ୍ଗଳା

ତାଲ୍ ଗାଛ କାଟମ ବୋସେର ବାଟମ ଗୌରୀ ଏଲ ଝି
ତୋର କପାଲେ ବୁଡ଼ୋବର ଆମି କରବୋ କି ?
ଟଙ୍କା ଭେଙ୍ଗେ ଶଙ୍ଖା ଦିଲାମ କାନେ ମଦନ କଡ଼ି
ବିୟେର ବେଲା ଦେଖେ ଏଲାମ ବୁଡ଼ୋ ଚାପଦାଡ଼ି
ଚୋଖ ଖାଓ ଗୋ ବାପମା ଚୋଖ ଖାଓ ଗୋ ଖୁଡ଼ୋ

ଏମନ ବରକେ ବସ୍ତେ ଦିଲେ ତାମାକ ଖେଗୋ ବୁଡ଼ୋ
ବୁଡ଼ୋର ହୁକୋ ଗେଲ୍‌ଭେସେ ବୁଡ଼ୋ ମରେ କେଶେ
ନେଢ଼େଚେଢ଼େ ଦେଖି ବୁଡ଼ୋ ମରେ ରସ୍ୱେଛେ
ଫେନ ଗାଲବାର ସମସ୍ତ ବୁଡ଼ୋ ନେଚେ ଉଠେଛେ ।
(ଲୋକସାହିତ୍ୟ)

ଦୁଇ ପ୍ରଦେଶର ଶିଶୁଭୁଲାଣିଆ ଗୀତ ମଧ୍ୟରେ ସେହିପରି ନିବିଡ଼ ସାମଞ୍ଜସ୍ୟ ରହିଛି । ଜହ୍ନ ଓଡ଼ିଆ ଓ ବଙ୍ଗାଳୀ ଶିଶୁର ମାମୁଁ, ଓଡ଼ିଆ ଓ ବଙ୍ଗାଳୀ ମାଆ ସମାନ ଶ୍ରଦ୍ଧା ଓ ସ୍ନେହରେ ତାଙ୍କୁ ଡାକନ୍ତି ।

ଓଡ଼ିଆ

ଆ ଜହ୍ନମାମୁଁ ଶରଦ ଶଶୀ
ମୋ କହ୍ନୁ ହାତରେ ପଡ଼ରେ ଖସି
ଆ ଆ ଜହ୍ନମାମୁ ଆ ଆ
ପାଟ କାଛଟିଏ ଦେଇ ଯା
ଗୋଟିଏ ହେଲେ କାହ୍ନୁ ମୋର ହସିବ
ଯୋଡ଼ିଏ ହେଲେ ପିଢ଼ା ମାଡ଼ି ବସିବ ।

ବଙ୍ଗଳା

ଆୟ ଆୟ ଚାଁଦ ମାମା
ଟି ଦିୟେ ଯା
ମାଛ କୁଟଲେ ମୁଡ଼ୋ ଦେବ
ଧାନ ଭାନଲେ କୁଁଡ଼ୋ ଦେବ
କାଲୋ ଗୋରୁର ଦୁଧ ଦେବ
ଚାଁଦେର କପାଲେ ଚାଁଦ ଟି ଦିୟେ ଯା ।

ବାରମାସୀ ପଲ୍ଲୀଜୀବନର ବାରମାସର ସୁଖ ଦୁଃଖ ଘେନି ରଚିତ । ବାରୋଟି ପଦର କ୍ଷୁଦ୍ର ପରସର ମଧ୍ୟରେ ନିରାଡ଼ମ୍ବର, ନିଷ୍କପଟ ପଲ୍ଲୀଜୀବନର ପ୍ରତ୍ୟକ୍ଷ ସ୍ପର୍ଶ ମିଳେ । ବାରମାସୀ ନାରୀସମାଜର ଏକାନ୍ତ ନିଜସ୍ୱ । ବର୍ଷଯାପନର ଏଇ ସଂକ୍ଷିପ୍ତ ବର୍ଣ୍ଣନା କେଉଁଠି ଅଜ୍ଞାତ ସୂତ୍ରର କରୁଣ ରସରେ ଝଙ୍କୃତ, କେଉଁଠି ବା ଦୁଃଖମୟ ଜୀବନର ଆଶଙ୍କାରେ ଉଦ୍‌ବେଳ । ହିନ୍ଦୀ, ଭୋଜପୁରୀ, ଓଡ଼ିଆ ଓ ବଙ୍ଗଳା ଭାଷାରେ ବହୁବିଧ ବାରମାସୀ ପ୍ରଚଳିତ । ଅଧିକାଂଶ ମଧ୍ୟରେ ପ୍ରାୟ ଏକପ୍ରକାର ଭାବଧାରା ପ୍ରଚଳିତ । ନିମ୍ନ ଖାଦ୍ୟ-ବାରମାସୀରୁ ଦୁଇ ପ୍ରଦେଶର ରୁଚିର ସାଦୃଶ୍ୟ ବୁଝାଯାଏ ।

ବଙ୍ଗଳା

ଜ୍ୟୈଷ୍ଠମାସେ ମିଷ୍ଟଫଳ
ଆଷାଢ଼େ ବରଷାର ଜଳ
ଭାଦ୍ରମାସେ ତାଲେର ପିଠା
ଆଶ୍ୱିନମାସେ ଶଶା ମିଠା
ଅଘ୍ରାନେତେ ନବାନ୍ନ ନତୁନ ଧାନ କେଟେ
ପୌଷମାସେ ପିଠେ ପାର୍ବଣ ଘରେ ଘରେ ପିଠେ
ଶ୍ରାବଣେ ଝୁଲନଯାତ୍ରା ଘି ଆର ମୁଡ଼ି
ଭାଦ୍ରମାସେ ପାନ୍ତା ଭାତ ଖାନ ମନସା ବୁଡ଼ି ।

ଓଡ଼ିଆ

ମଗୁଶିରେ ନୂଆଭାତ ଚୁଙ୍ଗୁଡ଼ି ମାଛର ରସ
ଅଶିଣରେ ଘିଅପିଠା କାର୍ତ୍ତିକେ ହବିଷ୍ୟ
ପୌଷମାସେ ମୂଳା ମୁଢ଼ି ଖାଇବାକୁ ମିଠା
ଘନଆଉଟା ପାଟକପୁର କଦଳୀ ଚକଟା
ବାରମାସରେ ବାର ଖାଇଲୁ ଆଉ ଖାଇବୁ କି ?
ପଖାଳ ଭାତରେ ବାଇଗଣ ପୋଡ଼ା ଖେସୁଡ଼ି ଭାତରେ ଘି ।



# ଲୋକସାହିତ୍ୟ ଓ ଜାତୀୟ ସଂହତି

'ଆପେ ବଞ୍ଚିଲେ ବାପର ନାମ'—ଏ ସ୍ୱାର୍ଥପରର କଥା; ଯେ କେବଳ ନିଜ ପାଇଁ ବଞ୍ଚେ ସେ ସ୍ୱାର୍ଥପର । ପରଲାଗି ଯେ ଆତ୍ମସୁଖରେ ଜଳାଞ୍ଜଳି ଦିଏ, ସେ ମହାପୁରୁଷ ବା ମହାତ୍ମା । ଜଗତର କ୍ଷୁଦ୍ରତମ ସମାଜ ହେଉଛି ପରିବାର । ସ୍ୱାର୍ଥପର କେବଳ ନିଜ ପାଇଁ, ସାଧାରଣ ଲୋକ ପରିବାରପାଇଁ, ମହାପୁରୁଷ ଦେଶର ସମାଜ ବା ବିଶ୍ୱସମାଜ ପାଇଁ ଜୀବନ ଧାରଣ କରେ । ବ୍ୟକ୍ତି ବ୍ୟକ୍ତି ଉପରେ, ଏକ ପରିବାର ବହୁ ପରିବାର ଉପରେ ନିର୍ଭରଶୀଳ ।

ମଣିଷ ଏକାକୀ ବଞ୍ଚିପାରେ ନାହିଁ । ତାର ପିନ୍ଧିଲା ବାସ କେଉଁ ତନ୍ତୁବାୟ ପ୍ରସ୍ତୁତ କରିଅଛି । ତାର ବାସଭବନ କେଉଁ ମିସ୍ତ୍ରୀ ବା ମହାରଣା ନିର୍ମାଣ କରିଅଛି, ତା ଘରର ଖଟ, ଚୌକି, ଟେବୁଲ, ପରଦା, ଗାଲିଚା, ବାସନକୁସନ ଦେଖିଲେ ବୁଝାଯାଏ ଯେ ମଣିଷ ପର ବିନା ମୁହୂର୍ତ୍ତେ ଚଳିପାରେ ନାହିଁ । ପରବିନା ଘର ଅଚଳ ।

ନିଜକୁ କିଛି ପରିମାଣରେ ପର ନ କଲେ ପରକୁ ଆପଣାର କରି ହୁଏ-ନାହିଁ । ଆମ ସମାଜରେ ସ୍ୱାର୍ଥପରର ସ୍ଥାନ ଅତି ନିମ୍ନରେ । ପରକୁ ଆପଣାର କରିବା ମହତ୍ତ୍ୱର ପରିଚାୟକ । ଲୋକସଂସ୍କୃତିରେ 'ପଞ୍ଚମୁଖେ ହରି' 'ପର ପରମେଶ୍ୱର', ପରର ବ୍ରହ୍ମ ଯେ ଚିହ୍ନିପାରେ ସେ ଶ୍ରେଷ୍ଠ ମନୁଷ୍ୟ । ପର ଚରିତ୍ର ପରିଚୟରେ ଯଥାର୍ଥ ଆତ୍ମପରିଚୟ ସମ୍ଭବ ହୁଏ । ପରକୁ ନିଜର କରିବା ବିଶ୍ୱକୁଟୁମ୍ବିତାର ମୂଳଭିତ୍ତି ।

ଆମ ଗ୍ରାମମାନ ଏପରି ଗଠିତ ଯେ ପରସ୍ପର ସାହାଯ୍ୟ ସହାନୁଭୂତି ବିନା କେହି ମୁହୂର୍ତ୍ତେ ଚଳିପାରିବ ନାହିଁ । ଚୂଳକୁ ଚୂଳ ଲାଗିଛି । ଘରପୋଡ଼ି ଗ୍ରାମର ଏକ ସମୂହ ବିପଦ, କଥା ଅଛି –

ଘୋଡ଼ାଚଢ଼ାରୁ ସମ୍ପତ୍ତି ନାହିଁ
ଘରପୋଡ଼ାରୁ ବିପତ୍ତି ନାହିଁ ।

ସେହିପରି ଚୌର୍ଯ୍ୟ ଏକ ସମୂହ ବିପଦ । ଆଜି ଜଣକ ଘରେ ସଫଳ ହେଲେ କାଲି ଅନ୍ୟ ଜଣଙ୍କ ଘରେ ଚୋରି ସମ୍ଭବ ହେବ । ତେଣୁ ଏଭଳି ବିପଦରେ ସାଇପଡ଼ିଶାର ଓ ଗ୍ରାମବାସୀଙ୍କର କ୍ରିୟାଶୀଳ ସହଯୋଗ ମିଳେ । ବେଳେ ବେଳେ ହଇଜାଦି ଭୟଙ୍କର ରୋଗର ପ୍ରାଦୁର୍ଭାବ ଘଟିଥାଏ; ବ୍ୟକ୍ତିର ସାମାନ୍ୟ

ଅସାବଧାନତା ହେତୁରୁ ସମୂହକୁ ଆକ୍ରାନ୍ତ କରିଥାଏ । ଏଭଳି ଆପଦବିପଦରେ ଲୋକ ପରସ୍ପରକୁ ସାହାଭରସା ନ ହେଲେ ଖଣ୍ଡପ୍ରଳୟ ଘଟିଥାଏ ।

ଦାଉ ପଡ଼ିଥିବ ଯେତିକବେଳେ
ବିଧାଏ ମାରିବ ସେତିକବେଳେ ।

ପ୍ରତିହିଂସାପ୍ରିୟ ଲୋକର ଶତ୍ରୁ ସାଧିବାର ପନ୍ଥା ଏ; ଝଗଡ଼ାଲୋକ 'ଏ ଘରେ ମାଉସୀ, ସେ ଘରେ ପିଉସୀ' ସାଜେ । ସେ କପଟୀ । 'ଦେଖିଲେ କଥା ନ କହେ, ନ ଦେଖିଲେ କାନ୍ଦୁଥାଏ ।' ସ୍ୱାର୍ଥପର ସ୍ୱାର୍ଥସିଦ୍ଧି କାମନାରେ 'ଗଛୁ ପୁନେଇଁ ଦାନ ମାଈଁ ସାଜେ' । ପରଦୋଷଦର୍ଶୀ 'ଜିଭରୁ ଶିର କାଢ଼େ', 'ଛେନାରୁ ଟେପା ଛଡ଼ାଏ' । କୃପଣ 'ଅଜଗରକୁ ଦାନ୍ତାରମ୍, ଅଧେ ତୂଷ ଅଧେ ଧାନ' । ଏହିପରି ସାମାଜିକ ଐକ୍ୟର ବହୁ ଶତ୍ରୁ ରହିଛନ୍ତି । ସମାଜକଲ୍ୟାଣକାମୀ ମୈତ୍ରୀଧର୍ମୀ ଲୋକକବିଙ୍କର ବଚନ ହେଉଛି—

ସାଇପଡ଼ିଶାରେ କରିବ ଘର
ଅଧେ ଆପଣା ଅଧେ ପର ।

ମାମଲତକାର ବା ଟାଉଟର ସାମାଜିକ ସଂହତିନାଶର ଅନ୍ୟତମ ହେତୁ । ସାମାନ୍ୟ ଗ୍ରାମକଳହର ମୀମାଂସା ନ କରି ସେ ଗୋଟିଏ ପକ୍ଷକୁ ଉତ୍ତେଜିତ କରେ, ମାଲିମକଦ୍ଦମା ଲାଗି ପ୍ରବର୍ତ୍ତାଏ । ଫଳରେ ଉଭୟପକ୍ଷ ସର୍ବସ୍ୱାନ୍ତ ହୁଅନ୍ତି । ମାମଲତକାର ଜଣେ ସମାଜନେତା; ଗ୍ରାମର ଧନୀ, ପ୍ରତିପତ୍ତିଶାଳୀ ବେଳେବେଳେ ତା ବୁଦ୍ଧିରେ ଚାଳିତ ହୁଅନ୍ତି । ସାମାନ୍ୟ ଅପରାଧରେ କାହାକୁ ଏକଘରିଆ କରାଯାଏ । ତା ସଙ୍ଗେ କେହି କଥାଭାଷା କରନ୍ତି ନାହିଁ । ଧୋବା ଲୁଗା କାଚେ ନାହିଁ, ଭଣ୍ଡାରୀ କଉରି କରେନାହିଁ, ବଢ଼େଇ ତା ଲଙ୍ଗଳ ଗଢ଼େ ନାହିଁ, କମାର ଲୁହା ପକେଇ ଦିଏନାହିଁ, ସେ ଯେଉଁ ପୋଖରୀ ବା କୂଅ ଛୁଏଁ ତା ମାରି ହୁଏ । ତା ପରିବାରରୁ କେହି ମରିଗଲେ ଗ୍ରାମବାସୀ ମଡ଼ା ଉଠାନ୍ତି ନାହିଁ । ଏହିପରି ନାନା ଦୁଃଖକଷ୍ଟ ପାଇ ଶେଷରେ ସେ ଶରଣ ପଶେ, କଠୋର ପ୍ରାୟଶ୍ଚିତ୍ତ କରେ; ମାମଲତକାର ଶୁଖିଲାରେ ବସି ବାଲିଆ ପିଟେ ।

ଧର୍ମଧ୍ୱଜୀ ପୁରୋହିତ ନାନା କୁସଂସ୍କାରରେ ସମାଜକୁ ବାନ୍ଧେ । ଜାତିଭେଦର ସେ ଜଣେ ମୁଖ୍ୟ ସମର୍ଥକ । ସେ ସମାଜର ଛ' ପାଟକକୁ ଛତିଶ ପାଟକରେ ପରିଣତ କରେ, କେହି ଜାତି ହରାଇଲେ ସେ ପଞ୍ଚଗବ୍ୟର ବ୍ୟବସ୍ଥା କରେ । ଜାତିଆଣ ଭାବକୁ ଅବ୍ୟାହତ ରଖିବାରେ ତା ଚେଷ୍ଟାର ଅନ୍ତ ନାହିଁ । ଜାତିଆଣ ଭାବରୁ ସମାଜରେ ନାନା ବିରୋଧ, ବିଦ୍ୱେଷ ଓ କଳହର ସୂତ୍ରପାତ ହୋଇଥାଏ ।

ଅର୍ଥନୈତିକ ବୈଷମ୍ୟ ସାମାଜିକ ସଂହତିନାଶର ଅନ୍ୟ ଏକ ହେତୁ । କିଏ 'କିତ ମୂଲିଆ ମୂଲକୁ ଯାଏ, ଘନେ ନ ଗଲେ ଓପାସେ ଶୁଏ ।' କିଏ ପିତୃ-ଅର୍ଜିତ ଜମିଜମାରେ, ତା ଉଦ୍ଧିକ ଅଣ୍ଟିସରେ କଟାଇଦିଏ । କିଏ ଦିନସାରା ଖଟି ପେଟକୁ ଗଣ୍ଡିଏ ଦାନା, ଅଣ୍ଟାକୁ ଖଣ୍ଡିଏ କନା ଯୋଗାଡ଼ କରିପାରେ ନାହିଁ, ଦିନ ଓଳିରେ ଓଳିଏ ଚୁଲ୍ଲୀ ଜଳେ ନାହିଁ, ବେଢ଼ ଉପରେ କୋରଡ଼ା ପଡ଼ୁଥାଏ । କାହାର ବା ପାଲିଙ୍କି ଉପରେ ପ.ଟଛଡା ଟଣା ହୁଏ । ସାମାଜିକ ବ୍ୟବସ୍ଥା ଏପରି ଯେ ବିବାହ, ବାଣ, ଗ୍ରେଷଣିରେ ନିମିତ୍ୟ, ଭାଇଭାତରେ ଗୃହସ୍ଥକୁ ବିସ୍ତର ଖର୍ଚ୍ଚ କରିବାକୁ ହୁଏ, ହାତରେ ଧନ ନଥିଲେ ବି, ଅଭାବ କଥାଟା କେହି ବିଗୃରକୁ ଆଣନ୍ତି ନାହିଁ । 'ମୁଁ କରିଛି, ତୋତେ କରିବାକୁ ହେବ ।'

ଗୃହସ୍ଥ ସାହୁକାରଠାରେ ଜମି ବନ୍ଧା ପକେଇ ଟଙ୍କା କରଜ ଆଣେ, କିନ୍ତୁ ଶୁଝିପାରେ ନାହିଁ । ଖଣ୍ଡିକ ପଚ୍ଚର ଖଣ୍ଡିଏ ଜମି ଏହିପରି ହସ୍ତାନ୍ତରିତ ହୁଏ । ମଧ୍ୟବିତ୍ତ ହୁଏ ମୂଲିଆ ; ସାହୁକାର ଧନବଢ଼ତିର ଇତିହାସ ମଧ୍ୟ ଏହିପରି ।

ଜମିଦାର, ସାହୁକାର ବା ପୁରୋହିତ ଭାଗ୍ୟବାଦର ଜଣେ ଜଣେ ବଡ଼ ପ୍ରଚ୍ଚରକ, ଅର୍ଥନୈତିକ ବୈଷମ୍ୟ ମନୁଷ୍ୟକୃତ ନୁହେଁ, ଦୈବ କୀର୍ତ୍ତି । ଦୈବ ପାଞ୍ଚ ଆଙ୍ଗୁଠିକି ସମାନ କରିନାହିଁ । ପୂର୍ବଜନ୍ମର କର୍ମ ଅନୁସାରେ ଫଳ ମିଳିଛି । ଭଗବାନ୍ କାହାକୁ ଯାଚି ଧନ ଦେଇଛନ୍ତି, କାହାକୁ ଗଡ଼େଇ ମାରିଛନ୍ତି । 'ଦେଇଥିଲେ ପାଇ'; ଯେ ପୂର୍ବଜନ୍ମରେ ଦେଇନାହିଁ, ସେ ଏ ଜନ୍ମରେ ପାଇବ ନାହିଁ ।

'ଯାହା ଦେଇନାହିଁ କପାଳ
ତାହା ଦେବେ ନାହିଁ ଗୋପାଳ ।'
'ଯେଣେ ଯିବୁ ତେଣେ ଯା
କର୍ମ ଘେନି ବୁଲୁଥା ।'
'ଭାଗ୍ୟଂ ଫଳତି ସର୍ବତ୍ର
ନ ବିଦ୍ୟା ନ ଚ ପୌରୁଷମ୍ ।"
'ଯାହା କରିବେ ସାଇଁ
ତା କାହାରି ହାତରେ ନାହିଁ ।'

ମଣିଷ କାଳସ୍ରୋତରେ କୁଟାଖିଅ ପରି ଭାସିଯାଏ; ତାର କିଛି କର୍ତ୍ତୃତ୍ୱ ନାହିଁ । ସବୁ ବିଧାତାର ଖିଆଲ୍ । ଯେ ଯାହା ହେବାର କଥା, ବିଧାତା କରି ବା କପାଳରେ ଲେଖି ଦେଇଥାନ୍ତି । ମଣିଷର ଚେଷ୍ଟା ବୃଥା ।

'ଅକର୍ମୀ ଯେଉଁଠି ଯାଏ,
ଶମ୍ଭୁର ଲିଙ୍ଗ ଗୁଡ଼ ପଳାଏ ।'

ଗ୍ରହ ମନ୍ଦ ପଡ଼ିବାରୁ ନଳ ରାଜାଙ୍କୁ ଘାସ କାଟିବାକୁ ହେଲା, ରାମଚନ୍ଦ୍ରଙ୍କୁ ଚଉଦବର୍ଷ ବନବାସ କଷ୍ଟ ସହିବାକୁ ପଡ଼ିଲା, ପରାକ୍ରମଶାଳୀ ପାଣ୍ଡବମାନଙ୍କୁ ହୀନ ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ହୋଇଥିଲା। ତେଣୁ

'କର୍ମ ଆଦର ସହି ଦୁଃଖ
କେବେ ହେଁ ନୋହିବ ବିମୁଖ ।'
'କର୍ମ କପଣ ଦେହ ସହେ
ଅରଣ୍ୟେ ଅଜଗର ପ୍ରାୟେ ।'

କ୍ରମେ ଅବସ୍ଥାଚକ୍ରାନ୍ତରେ ସାଧାରଣ ମନୁଷ୍ୟକୁ ଭାଗ୍ୟ ଆଗରେ ନତମସ୍ତକ ହେବାକୁ ପଡ଼େ । ପାରମ୍ପରିକ ଅନ୍ଧବିଶ୍ୱାସ ତା ଚରିତ୍ରକୁ ପ୍ରଭାବିତ କରେ; ତାର ପୌରୁଷଶକ୍ତି ବିନଷ୍ଟ ହୁଏ । ଆତ୍ମୋନ୍ନତି ଲାଗି ସେ ଉଦ୍ୟମଶୀଳ ହୋଇପାରେ ନାହିଁ, ପଲ୍ଲୀବାସୀର ଭଗବତ୍‌ଧାରଣା ହିଁ ଅର୍ଥନୈତିକ ବୈଷମ୍ୟର ଅନ୍ୟ ଏକ କାରଣ । ଗାଆଁଗହଳରେ 'ବଡ଼ଲୋକ'ର ବ୍ୟାଖ୍ୟା ବିଚିତ୍ର । ବିଦ୍ୱାନ୍, କବି, ସମାଜସେବକ ବଡ଼ଲୋକ ବିବେଚିତ ହୁଅନ୍ତି ନାହିଁ । ଯାହା ଦୁଆରେ ପଞ୍ଚଗୌଣୀ ବା ପାଞ୍ଚ ଟଙ୍କା ଲାଗି ଅକାଳରେ ଗୋଡ଼ ଭାଙ୍ଗି ଛିଡ଼ା ହେବାକୁ ହୁଏ, ଯାହାର ଭ୍ରୂକୁଟି ସର୍ବନାଶ ଘଟାଏ, ସେଇ ଲୋକ ହୁଏ ସମାଜର ହର୍ତ୍ତା, କର୍ତ୍ତା, ଭାଗ୍ୟ-ବିଧାତା । ବଡ଼ଲୋକ ସବୁବେଳେ ଭଲଲୋକ ନୁହେଁ । ସେ ଲୋକଙ୍କୁ ବେଠି ଖଟାଏ, ଭେଟି ଆଦାୟ କରେ, ସାମାଜିକ ଐକ୍ୟ ତା ଦୃଷ୍ଟିରେ ଏକ ବିପ୍ଳବ । ତେଣୁ ସେ ପୁରୋହିତ ବା ଟାଉଟରଙ୍କ ସାହାଯ୍ୟରେ ନାନା ଶ୍ରେଣୀସଂଘର୍ଷ ସୃଷ୍ଟି କରିଥାଏ ।

ଅସ୍ପୃଶ୍ୟତା ଆମ ସମାଜର ଏକ ବ୍ୟାଧି । ଅଛୁଆଁଙ୍କୁ ଆମେ ହିନ୍ଦୁ ବୋଲି ସ୍ୱୀକାର କରୁ, ଅଥଚ ସେମାନଙ୍କ ଛାଇ ପଡ଼ିଲେ ଆମ କାୟା ମାରା ହୋଇଯାଏ । ସେମାନେ ଆମ ବିଲ ହଳ କରନ୍ତି, ଧାନ କାଟନ୍ତି, ବାଡ଼ ବୁଜନ୍ତି, ଘର ଛପର କରନ୍ତି, ସେମାନଙ୍କ ସାହାଯ୍ୟ ସହଯୋଗ ବିନା ସାମାଜିକ ସ୍ୱାସ୍ଥ୍ୟ, ସୁଖସ୍ୱାଚ୍ଛନ୍ଦ୍ୟ ଏକ ଅସମ୍ଭବ ବ୍ୟାପାର । ଅଥଚ ସେମାନଙ୍କୁ ଆମେ ଦୂରେଇ ରଖିଥାଉ ।

ବୌଦ୍ଧ, ଖ୍ରୀଷ୍ଟିୟାନ୍, ଇସ୍‌ଲାମ୍ ବା ଇହୁଦି ଧର୍ମରେ ଛୁଆଁଛୁତ ନାହିଁ । ହିନ୍ଦୁ ବୈଷ୍ଣବମାନେ ମଧ୍ୟ ଏହା ମାନନ୍ତି ନାହିଁ ।

'ବାରଜାତି ତେର ଗୋଲ
ବୈଷ୍ଣବ ହେଲେ ସବୁ ଗଲ ।'

ଶ୍ରୀମନ୍ଦିରରେ ଛୁଆଁଅଛୁଆଁ ବୈଷମ୍ୟ ରଖିବାକୁ ଯାଇ ବଳରାମ-ଜଗନ୍ନାଥଙ୍କୁ କପର ଦୁଃଖକଷ୍ଟ ବରଣ କରିବାକୁ ପଡ଼ିଥିଲା ତାହା 'ଲକ୍ଷ୍ମୀପୁରାଣ'ରେ ମିଳେ । ଛୁଆଁଛୁତ ମାନୁଥିବା ଦେବତା ବି ଅଛୁଆଁ, ଲକ୍ଷ୍ମୀଛଡ଼ା ବିବେଚିତ

ହୋଇଛନ୍ତି । ଏ ଆଦର୍ଶ ଅତି ମହାନ୍ । ସେହି କାଳରୁ ଗୋଟିଏ ଢଗ ପ୍ରଚଳିତ ହୋଇ ଆସୁଛି—

'ସମସ୍ତେ ତ ଏକା ଜାତି
କାହିଁ ଅଇଲା ଛୁଆଁ ଛୁତି ?'

କିନ୍ତୁ ଅର୍ଥ ତଣ୍ଟି ଦେଲେ ଅଜାତିଆ ଜାତି ହୋଇଯାଏ । ସେଥିଲାଗି କୁହାଯାଇଛି—

'ଜାତି କୋଉଠି ?
ନା, ଟଙ୍କା ବାକ୍ସରେ ।'

ଅର୍ଥରେ ଯଦି ପାପ କ୍ଷାଳିତ ହୋଇପାରେ, ତେବେ ଅର୍ଥର ସ୍ଥାନ ଧର୍ମ ଅପେକ୍ଷା ଉଚ୍ଚତର, ଏହି ସମାଜର ଭିତ୍ତି କି ଦୁର୍ବଳ ତାହା ସହଜରେ ବୋଧଗମ୍ୟ ହୁଏ ।

ଆମ ସମାଜ ପରିବାର ଉପରେ ପ୍ରତିଷ୍ଠିତ । ପରିବାରର ବିଭେଦ ବୈଷମ୍ୟ ସମାଜକୁ ସଂକ୍ରମିତ କରିଥାଏ । ଏକାନ୍ନବର୍ତ୍ତୀ ପରିବାରରେ 'ଅରଜେ ଜଣେ, ଖାଆନ୍ତି ପଣେ, ତା ଘରଟି ଡ଼ୁବିଇ ଦିନେ ।'

'ବସି ଖାଇବାକୁ ଶିହେ ପରାଣୀ ଲୋ
ବାପା ଜାହାଜ ମେଲିବେ ଏକା ।'

ଏହି ପରିବାରରେ ଶାଶୂ ବୋହୂକୁ ଦେଖିପାରେ ନାହିଁ । ବୋହୂ ପ୍ରତି ଅତ୍ୟାଚାରରେ ନଣନ୍ଦ ସହଯୋଗିନୀ ।

'ଶାଶୂର ପଦକୁ ନଣନ୍ଦର ପଦେ
କାହା ଜାଲା ମୁଁ ସହିବି ଲୋ
କୂଅକୁ ଡେଇଁ ପଡ଼ିବି ।'

ସ୍ୱାମୀ ମଧ୍ୟ ଗୃହଲକ୍ଷ୍ମୀ ଦେହରେ ହାତ ଲଗାଏ । ସ୍ତ୍ରୀ ଗାଳି ମାଡ଼ ଖାଇ ଶେଷକୁ ଛାଡ଼ପତ୍ର ମାଗେ ।

'ଉଞ୍ଚୁ ଉଞ୍ଚୁ ପିଣ୍ଡାରେ ଲୋ
ଦେଇଗଲ ଝୋଟି
କି ମାଡ଼ ମାଇଲେ ସ୍ୱାମୀ
ଫାଟିଗଲା ପିଠି ।
ତୁମ ଭାତ ତୁମ ତୁଣ
ନୈଲେଡ଼ା ନାହିଁ ମୋର
ଛାଡ଼ପତ୍ର ଖଣ୍ଡେ ଦେଲେ
ଯିବି ବାପ ଘର ।'

ଏହିପରି ଗୃହ ଗୃହ ହୋଇ ରହେ ନାହିଁ, ଏହା ଅଶାନ୍ତିର ନିଳୟ ହୁଏ ।

'ବୈକୁଣ୍ଠ ସମାନ ଆହା ଆଜେ ସେହି ଘର
ପରସ୍ପର ସ୍ନେହ ଯହିଁ ଆଏ ନିରନ୍ତରି'।

କବିଙ୍କ ସ୍ୱପ୍ନ ସ୍ୱପ୍ନ ହୋଇ ରହିଯାଏ । ତେଣୁ ସାମାଜିକ ସଂହତି ଲାଗି ନିମ୍ନତମ ସ୍ତରରୁ ହିଁ ସଂସ୍କାର ଆରମ୍ଭ କରିବାକୁ ହେବ । ପରିବାରରେ ଶାଶୂ ଓ ଶ୍ୱଶୁରଙ୍କ ଏକଛତ୍ରତ୍ୱ, ବିଭିନ୍ନ ବ୍ୟକ୍ତିଙ୍କ ପ୍ରତି ସ୍ନେହହୀନ ଭାବ ଓ ଅବିଶ୍ୱାସ ଦୂର କରିବାକୁ ହେବ । ପାରିବାରିକ ସମାଜବାଦ ଉପରେ ହିଁ ସମାଜ ପ୍ରତିଷ୍ଠିତ ହେବା ଆବଶ୍ୟକ ।

ବର୍ତ୍ତମାନ ଯୁଗରେ ଏକାନ୍ନବର୍ତ୍ତୀ ପରିବାର ଆପେ ଆପେ ଭାଙ୍ଗି ପଡ଼ୁଛି, ବୃଦ୍ଧବିବାହ, ଝୋଲା କନ୍ୟା ଦାନ, କନ୍ୟାବିକ୍ରୟ ପ୍ରଭୃତି ପ୍ରଥା ବନ୍ଦ ହୋଇ-ଯାଉଛି । ଜାତିଭେଦ ଓ ଅସ୍ପୃଶ୍ୟତା କ୍ରମେ ଦୂର ହୋଇଯାଉଛି । ପଞ୍ଚବାର୍ଷିକ ଯୋଜନା ଗୋଟିକ ପରେ ଗୋଟିଏ କାର୍ଯ୍ୟକାରୀ ହେବା ଫଳରେ ଅର୍ଥନୈତିକ ବୈଷମ୍ୟ ତୀବ୍ରତର ଆକାର ଧାରଣ କରିଛି । ତାହା ଦୂର ନ ହେବା ପର୍ଯ୍ୟନ୍ତ ସାମାଜିକ ସଂହତି ପ୍ରତିଷ୍ଠିତ ହୋଇପାରିବ ନାହିଁ ।

ଧନୀ ଦରିଦ୍ରର ବିପଦରେ ଉଦାସୀନ । ଧନୀ ବ୍ୟକ୍ତିଙ୍କୁ ଦରିଦ୍ର ଜଣେ ଶୋଷକ ବୋଲି ମନେ କରୁଛି । ମନରେ ଘୋର ଶଙ୍କା ଓ ଅବିଶ୍ୱାସ । ଗୋଟିଏ ପରିବାରରେ ମୃତ୍ୟୁର କ୍ରନ୍ଦନ ରୋଳ ଶୁଣାଯିବାବେଳେ ତାର ପଡ଼ୋଶୀ ରେଡ଼ିଓ ବଜାଉଛି । ଯଥେଷ୍ଟ ମାନସିକ ଉନ୍ନତି ଘଟିଲେ ବି ଏ ଯୁଗରେ ହୃଦୟବୃତ୍ତିର ଯଥେଷ୍ଟ ବିକାଶ ହୋଇନାହିଁ । ବ୍ୟକ୍ତିବିଶେଷ ଲାଗି ସମାଜ ଭାବୁନାହିଁ କିମ୍ବା ଅଧୋଗତ ଏକ ଜାତିର ଉନ୍ନତି ଲାଗି ସମଗ୍ର ମାନବଜାତି ଚିନ୍ତା କରୁନାହିଁ ।



# ବାସ୍ତବତା ଓ ଲୋକଗୀତ

ସାହିତ୍ୟର ଲୋକ କଳ୍ପଲୋକ; କିନ୍ତୁ ଏହା ଶୂନ୍ୟାଶ୍ରୟୀ ନୁହେଁ, ବାସ୍ତବତା ଉପରେ ପ୍ରତିଷ୍ଠିତ । କବିର କଳ୍ପନା-ପକ୍ଷୀ ଦୂରତମ ଦିଗନ୍ତକୁ ଉଡ଼ିଯାଏ, କିନ୍ତୁ ତାର ନୀଡ଼ ପୃଥିବୀ-ବୃକ୍ଷରେ । ମାଟିର ମଣିଷ ସାହିତ୍ୟର ମୁଖ୍ୟ ଅବଲମ୍ବନ, ଯଦି ବା ଏହା ମଧ୍ୟରେ ସୀମାବଦ୍ଧ ନୁହେଁ । ସ୍ୱପ୍ନ ବା କଳ୍ପନା ବିନା ସାହିତ୍ୟ ନୀରସ, ବାସ୍ତବତା ବିନା ଏହା ଶୂନ୍ୟସଞ୍ଚାରୀ କୁଜ୍ଝଟିକା । ସ୍ୱପ୍ନପ୍ରବଣ ସାହିତ୍ୟ ମନୁଷ୍ୟକୁ କିଞ୍ଚିତ୍ ଆନନ୍ଦ ଦାନ କରିପାରେ, କିନ୍ତୁ ଏହା କୌଣସି ପ୍ରୟୋଜନରେ ଆସେ ନାହିଁ । ମନୁଷ୍ୟ ତହିଁରୁ ଜୀବନର ରସ ଆହରଣ କରିପାରେ ନାହିଁ, ଯେପରି ବୃକ୍ଷ ଊଷର ମୃତ୍ତିକାରୁ । କାଳ୍ପନିକ ସାହିତ୍ୟର ଲେଖକ—'ସଂସାରରେ ଥାଇ ଚିର ଉଦାସୀନ'; ମନୁଷ୍ୟର ସୁଖରେ ସୁଖୀ ବା ଦୁଃଖରେ ଦୁଃଖୀ ହୋଇ ପାରେନାହିଁ । ଜାତୀୟ ଜୀବନ ଗଠନରେ ତାର କୌଣସି ଦାୟିତ୍ୱ ନାହିଁ, ପୌରୁଷର ପ୍ରକାଶ ନାହିଁ, ସେ ହୁଏ ଗୋଟିଏ ସଂସାର ବହିର୍ଭୂତ ଜୀବ, କରୁଣ, କିମ୍ଭୂତକିମାକାର ତାର ଜୀବନ; ସେ ନୀତ ହୁଏ, ନେତୃତ୍ୱ ଦିଏ ନାହିଁ; ସଂସ୍କୃତି ତା ନିଜ ବାଟରେ ଯାଏ, ମନୁଷ୍ୟସମାଜ କତିପୟ ନେତାଙ୍କ ମର୍ଜିରେ ଚାଳିତ ହୁଏ ।

ପ୍ରକୃତ କବି ନିଜେ ଗୋଟିଏ ଅନୁଷ୍ଠାନ, ସେ ଲୋକ ମନରେ ସ୍ଥାୟୀ ପ୍ରଭାବ ବିସ୍ତାର କରେ; ସେ ସଂସ୍କାରକ, ଚିନ୍ତାଶକ୍ତିର ସଂଗଠକ, ସଂସ୍କୃତିର ନେତା । ଜୀବନଗଙ୍ଗାର ଭଗୀରଥ ସେ, ଜୀବନ-ରଥର ସାରଥୀ, ଜୀବନନୌକାର କାଣ୍ଡାରୀ । ତେଣୁ ତାର ସାହିତ୍ୟ କଳ୍ପଲୋକର ଫସଲ ନୁହେ, 'ସାହିତ୍ୟଲାଗି ସାହିତ୍ୟ' ସେ ଲେଖେ ନାହିଁ, ମଣିଷ ଲାଗି ଲେଖେ । ସମାଜ ତା ଭାବରେ ଭାବିତ, ତା ହୃଦୟ ରସରେ ପୁଷ୍ଟ । କେବଳ ଅନୁରଞ୍ଜକ ନୁହେ, ଏହାର ଗୂଢ଼ତର ଓ ଗୁରୁତର ଉଦ୍ଦେଶ୍ୟ ଅଛି ।

ରୀତିଯୁଗରେ ଅତିରଞ୍ଜିତ କଳ୍ପନା ଥିଲା କବିର ବିଳାସ; କେଉଁ ଅଦୃଶ୍ୟ ଲୋକ ତାର ବିହାର ଭୂମି । ସେ କୋଉଠୁ ବାହାରି କୋଉଠି ପହଞ୍ଚୁଥିଲା ତାର ଇୟତ୍ତା ନାହିଁ, ସାଧାରଣ ଜୀବନ ହୋଇଥିଲା ଅସ୍ପୃଶ୍ୟ, ଅପାଙ୍କ୍ତେୟ । ରାଜା ବା ସାମନ୍ତଙ୍କ ଜୀବନର ଗୋଟିଏ ଦିଗ ଉପରେ ତାର ଦୃଷ୍ଟି ବିଶେଷ ଭାବରେ ନିବଦ୍ଧ ଥିଲା—ଶୃଙ୍ଗାରକତା ; ଦୈହିକ ପ୍ରେମ ଆତ୍ମାର ସୀମା ସ୍ପର୍ଶ କରି ପାରୁ ନ ଥିଲା । ତାଙ୍କ ଜୀବନର କର୍ମନିଷ୍ଠା, ଚାରିତ୍ର୍ୟ ଓ ମହତ୍ତ୍ୱ ପ୍ରଭୃତି ବିଭବ ଦର୍ଶାଇବାକୁ ଏହା ଅସମର୍ଥ ହୋଇଥିଲା ।

ବାସ୍ତବତା ଆଧୁନିକ ସାହିତ୍ୟର ଗୋଟିଏ ମୁଖ୍ୟ ଆଭିମୁଖ୍ୟ, ଗୋଟିଏ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ, ଜୀବନକୁ ଜୀବନ ଭାବରେ ଦେଖିବାରେ ହିଁ ଏହାର ବୈଶିଷ୍ଟ୍ୟ । ଗ୍ରାମ ବା ବସ୍ତି, କୃଷିକ୍ଷେତ୍ର ବା କଲକାରଖାନାରେ ଚାଷୀ ମୂଲିଆ, ପୁଞ୍ଜିପତି ବା ମଜଦୁରଙ୍କ ଜୀବନସମସ୍ୟା, ଅଭାବଅନଟନ, ସଂଗ୍ରାମସଂଘର୍ଷର ଚିତ୍ର ଏଯୁଗର କବିତା ଓ ଗଳ୍ପ ଉପନ୍ୟାସମାନଙ୍କରୁ ମିଳିଥାଏ ।

ଅଗ୍ରଜ ଧର୍ମ ନୁହେ, ଅନୁଜ ବିଜ୍ଞାନ ଏ ଯୁଗ ଜୀବନର ନିୟାମକ, ଶିଳ୍ପ-ବାଣିଜ୍ୟ-ସଭ୍ୟତାର ବିକାଶକ, ସ୍ୱପ୍ନାଚ୍ଛନ୍ନତା ଦୂର କରି ବାସ୍ତବ ଦିଗ ପ୍ରତି ଏହା ଲୋକଦୃଷ୍ଟି ଆକର୍ଷଣ କରେ । ପୁଙ୍ଖାନୁପୁଙ୍ଖ ତଥ୍ୟ ଉପରେ ଏହାର ସତ୍ୟ ପ୍ରତିଷ୍ଠିତ । କିନ୍ତୁ ତଥ୍ୟଗତ ସତ୍ୟକୁ ଉଚ୍ଚତର କଳ୍ପନାର ଆଲୋକରେ ଉଦ୍ଭାସିତ କରି ନ ପାରିଲେ ସାହିତ୍ୟ ସାହିତ୍ୟପଦବାଚ୍ୟ ହୋଇ ନ ପାରେ । କୌଣସି ସରକାରୀ ଅନୁସନ୍ଧାନର ବିବରଣୀ, ସମ୍ବାଦପତ୍ରର ସମ୍ବାଦ, ବ୍ୟବସାୟୀର ହିସାବ-ପତ୍ର, ଆଇନର ବ୍ୟାଖ୍ୟା, ଔଷଧର ପ୍ରୟୋଗ-ବିଧି, ଜ୍ୟୋତିଷୀର ଗଣନା-ଲେଖ କିମ୍ବା ଅଶ୍ଳୀଳ ଅସଙ୍ଗତ ସମ୍ପର୍କର ଚିତ୍ରଣ, ବିଶୃଙ୍ଖଳ ବିମୂର୍ତ୍ତ ରୂପର ଅସ୍ୱାଦ୍ୟ ପରି-ବେଷଣକୁ ସାହିତ୍ୟିକ ମର୍ଯ୍ୟାଦା ଦିଆଯାଇ ନ ପାରେ । ବସ୍ତୁ ଓ ଭାବର ସମନ୍ୱିତ ରସସୃଷ୍ଟି ହିଁ ଉଚ୍ଚାଙ୍ଗ ସାହିତ୍ୟର ଆଦର୍ଶ । ଭାବଗତ ସତ୍ୟ ସାହିତ୍ୟର ମାନଦଣ୍ଡ । ନିର୍ଘଣ୍ଟ ବାସ୍ତବର ଚିନ୍ମୟ ରୂପ ଅଙ୍କନରେ ହିଁ ଏହାର ମହତ୍ତ୍ୱ ।

ତେଣୁ ଯେତେ ବାସ୍ତବ ହେଲେହେଁ ଆଧୁନିକ ସାହିତ୍ୟ ଆଦର୍ଶଚ୍ୟୁତ ନୁହେଁ । କାରଣ ଏହା ଏବେ ମରଣଶୀଳକୁ ଅମୃତତ୍ତ୍ୱର ଆସ୍ୱାଦ ଦେବାଲାଗି ଆକାଂକ୍ଷୀ । ସାହିତ୍ୟ ବାସ୍ତବମୁଖୀ ହେଲା ବୋଲି ଯେ କୌଣସି ବିଷୟ ଏହାର ଉପଜୀବ୍ୟ ହୋଇ ପାରିବ ନାହିଁ; ବସ୍ତୁ ବା ବିଷୟସ୍ତୂପ ମଧ୍ୟରୁ ମନୁଷ୍ୟଜୀବନର ଉପଯୋଗିତା ଦୃଷ୍ଟିରୁ ଗୋଟିଏ ବିଷୟ ପସନ୍ଦ କରିବା ଆବଶ୍ୟକ । ଯାହା ସୌନ୍ଦର୍ଯ୍ୟଦୀପ୍ତିରେ ଭାସ୍ୱର, ପ୍ରେମପ୍ରୀତିରେ ଉଜ୍ଜ୍ୱଳ, ସଂଗ୍ରାମସଂଘର୍ଷରେ କ୍ଷିପ୍ର, ତାହାହିଁ ଉତ୍କୃଷ୍ଟ ସାହିତ୍ୟର ବିଷୟ ହେବାକୁ ଯୋଗ୍ୟ । କୁତ୍ସିତର ଚିତ୍ରଣ କରି-ଯାଇପାରେ, ଏହାକୁ ସୁନ୍ଦର କରିବା ଲାଗି । ଉନ୍ନତ ମାନବିକତାର ଚିତ୍ରଣ ଶ୍ରେଷ୍ଠ ସାହିତ୍ୟର ଲକ୍ଷ୍ୟ ।

ବର୍ତ୍ତମାନ ଭାରତୀୟ ସାହିତ୍ୟ ପାଶ୍ଚାତ୍ୟ ସାହିତ୍ୟର ସମ୍ପର୍କରେ ଆସି ବାସ୍ତବମୁଖୀ ହେଲା, ଏହା ସତ୍ୟ । କିନ୍ତୁ ପ୍ରାଚୀନ ସାହିତ୍ୟରେ ବାସ୍ତବତା ନ ଥିଲା, ଏହା କୁହାଯାଇ ନ ପାରେ । ରାମାୟଣ ମହାଭାରତ ଆମ ନିକଟରେ ଏକ ଚିତ୍ତବିନୋଦକ କାହାଣୀ ମାତ୍ର ନୁହେଁ, ଗଭୀର ସତ୍ୟ; ଜୀବନ-ସତ୍ୟ ଅପେକ୍ଷା ମହତ୍ତର ସାହିତ୍ୟ-ସତ୍ୟ, ଚିରନ୍ତନ । ହେଲେହେଁ ବାସ୍ତବତା କଳ୍ପନାରଙ୍ଗରେ ଅନୁରଞ୍ଜିତ ବା ଅତିରଞ୍ଜିତ ହୋଇଥିଲା—ରଙ୍ଗିନ୍ କୁହୁଡ଼ି ମଧ୍ୟରେ ସ୍ପଷ୍ଟ ହେଉ

ନ ଥିଲା ଜୀବନର ସୂର୍ଯ୍ୟରଶ୍ମି । ପୁରାଣ ଉକ୍ତ, କାହାଣୀ କିମ୍ବଦନ୍ତୀ ମଧ୍ୟରେ ଜୀବନ ସତ୍ୟ ଖୋଜି ପାଇବା ଦୁଷ୍କର ।

ଲୋକ-କବିର କଳନାର ସାଧନା ନାହିଁ; ତାର ଗୀତ ଗାଇବା ଏକ ସ୍ୱାଭାବିକ ସ୍ୱତ । ପୂର୍ବର ପ୍ରସ୍ତୁତ ତାହାରେ ନ ଥାଏ । ଅଧ୍ୟୟନ ନ ଥାଏ, ଥାଏ ହୁଏତ ଅଂଶୁକବିର ମନକୁ ମନ ଗୀତ ଗାଇବା ଅଭ୍ୟାସ । ସ୍ୱତଃସ୍ଫୂର୍ତ୍ତି ଭାବରେ ସେ ଗାଏ, ଯାହା ଜାଣିଥାଏ, ଅନୁଭବ କରିଥାଏ ସେଇ ବିଷୟରେ । ନନ୍ଦନବନରୁ ପାରିଜାତ ଲୋଡି ଆଣିବାର ଅବସର ତାର ନ ଥାଏ, ସେ ଅବସରର କବି ନୁହେ, କର୍ମୀର । ନଗ୍ନ ବାସ୍ତବର ସଂଘର୍ଷରେ ସେ ଆସିଛି, ତାହା ହିଁ ତାର ଚିତ୍ତକୁ ଆଲୋଡିତ କରେ । ପୁରାଣ-ଅବଲମ୍ବନରେ କେତେବେଳେ ଆତ୍ମପ୍ରକାଶ କରେ, କିମ୍ବଦନ୍ତୀ କେତେବେଳେ ହୁଏ ତା ଜୀବନର ଅବଲମ୍ବନ । କେତେବେଳେ ବା କୌଣସି ମୁଖା ବ୍ୟବହାର କରେ ନାହିଁ, ସିଧାସଳଖ ଜୀବନ-ସତ୍ୟ କହେ, ଜଣେ ପ୍ରତ୍ୟକ୍ଷଦର୍ଶୀ ବା ଅନୁଭବୀ ଭାବରେ । ଲୋକସାହିତ୍ୟକୁ ଏକ ବିଶୁଦ୍ଧ ବାସ୍ତବବାଦୀ ସାହିତ୍ୟ ବୋଲି ଯାଇ ପାରେ । ତେବେ ଲୋକସାହିତ୍ୟର ବାସ୍ତବତା ଓ ଏ ଯୁଗ ସାହିତ୍ୟର ବାସ୍ତବତା ମଧ୍ୟରେ ତାରତମ୍ୟ ରହିଅଛି । ଲୋକସାହିତ୍ୟ ଜୀବନର ପୁଙ୍ଖାନୁପୁଙ୍ଖ ବା ସର୍ବାଙ୍ଗୀନ ବିବରଣୀ ଦିଏ ନାହିଁ । ଏହା ସେପରିକି ଜୀବନକୁ ଛୁଇଁ ଛୁଇଁ ଚାଲିଯାଏ, ସୁଖର ସୌରଭ ବା ଦୁଃଖର କ୍ଷତ । ଜୀବନର ମହତ୍ତମ ଉଦ୍ଦେଶ୍ୟର ବ୍ୟାଖ୍ୟା କରେ ନାହିଁ, ସେ ଦାୟିତ୍ୱ ଉଚ୍ଚାଙ୍ଗ ସାହିତ୍ୟର । ଅଧିକାଂଶ ଲୋକଗୀତ ପଲ୍ଲୀଗ୍ରାମକୁ କେନ୍ଦ୍ରକରି ରଚିତ; ସହରର ବସ୍ତି, ଶ୍ରମିକର ଦୁର୍ଦ୍ଦଶା ବା କଳକାରଖାନାର ଚିତ୍ର ଏଥିରେ ବିରଳ ।

ବିଭିନ୍ନ ଗାଥାଗୀତିକା, କାନ୍ଦଣା, ହୁଲିଆ ଶବଡିଆ ଓ ନାଉରୀ ଗୀତ ଓ ଚଉପଦୀମାଳା—ବଚନମାନଙ୍କରେ ପଲ୍ଲୀର ବାସ୍ତବ ଜୀବନ ଚିତ୍ରିତ ହୋଇଅଛି । ବୋହୂ ନିର୍ଯ୍ୟାତନାର-କରୁଣ କାହାଣୀରେ ଲୋକଗୀତ ସେପରି ଭି ଅଶ ସିକ୍ତ । ଶାଶୁ ଧାନ ଶୁଖାଏ, ଧାନ କୁଟିବ ବୋଲି ବୋହୂ ଚିଙ୍କିରେ ଚଢେ । ଦିଅଁଣ କୁଣ୍ଡୁଣୀ ଦରକାର । ଲଘୁଶରୀର । ବାଳିକାବଧୂ ଟିଙ୍କି ଲମ୍ବରେ ଏକୁଟିଆ ଛୁଡା-ହେଲେ ଟିଙ୍କି ଉଠିବ କପର ? କଠୋରହୃଦୟା ଶାଶୁ ଏହାର ପ୍ରତିକାର କରେ । ସେ ବୋହୂର ସୁକୁମାର ମୁଣ୍ଡରେ ହଳେ ଚକ ନଦଧିଏ । ବୋହୂ ଓଜ ଚକର ମିଳିତ ଓଜନରେ ଟିଙ୍କି ଉଠେ; ପାହାର ପଡେ, ଧାନକୁଟା ହୁଏ । ବୋହୂର ଅନୁଭୂତି ଟିଙ୍କିଲଙ୍କି ଖଣ୍ଡିତା କରେ, କଣ୍ଠ-ଶାଶୁର ମନ ତରଳାଇ ପାରେ ନାହିଁ ।

ବୋହୂ ଚକୁଳିପିଠା କରିବା ଲାଗି କଳନା ଚୂଲି ଉପରେ ପଲମ ବସାଏ; ପଳିଆଟି ଭାଙ୍ଗିଲେ ତେଲକନ୍ଦି ଘସି ପିଠଉ ଢାଳେ । ପିଠା ବେଳେ ବେଳେ ଭାଙ୍ଗି-

ଯାଏ କି ପୋଡ଼ିଯାଏ । ଶାଶୂ ଗର୍ଜି ପଚାରେ—"ଏ କି ପିଠା ହୋଇଛି ? ପିଠା କେମିତି ହୁଏ, ଦେଖ ।" ଯା କହି ବୋହୂର ଫୁଲକଅଁଳ ହାତକୁ ଧରେ । କାହିଁକି ହାତ, ଧରୁଛ ?—ମାରିବ ? ମାର । ଝାଡ଼ ତୁ ଦେହଘଷା ହୋଇଗଲାଣି, ନୋହୂ ବଢ଼ିଲେ । କିନ୍ତୁ ଶାଶୂ ମାରେ ନାହିଁ । ବୋହୂର ପାଦୁଲିକି ଧରି ତାତି କୁହୁଳୁଥିବା ଚୁଲି ଉପରେ ଚଲାଇ ଦିଏ । ଗୋଟାଯାକ ପାଦୁଲି ପୋଡ଼ି ଫୋଟକା ହୋଇଯାଏ । ଗୋଟାଏ ପରସ୍ତ ଛାଲ ଉତୁରିଯାଏ । ବୋହୂ ଲୁହ ନ କାଢ଼ି ରହି କାନ୍ଦେ ।

ଶାଶୂର ଘର ଦୁଃଖର ଘର; ପରଝିଅକୁ ଆପଣାର କରିବା ଚେଷ୍ଟା ସେଠି ନ ଥାଏ । ପିଠି ପେଟର ବ୍ୟଥା ଜାଣିପାରେ ନାହିଁ, ମନକଷ୍ଟର ଗୁପ୍ତ କଥା ବା ବୁଝିବ କିଏ ? ସେଠି ଅଭାବଅନାଟନ ନିତିଦିନ ଲାଗି ରହିଥାଏ । ଷଢ଼େଇରେ ପେଜ ବଣ୍ଟା ହୁଏ, ପିଠାର ବନ୍ଦ ଗଣତି ହୁଏ; ତେଲେଇ ଝାଉଁଳା ପଣ ପରଖିବା ଲାଗି ଧୋଇବା ଲାଗି ନେଉଥିବା ଗୁଡ଼ୁଲ ବାଉଁଶିଆରେ ଝଳା ମିଠେଇ ଝୋଟ ଦିଆ ହୁଏ, ଅଲ୍ପ ପାନପତ୍ରରେ ଦେଇ ଅଦ୍ଭୁତ ତରକାରୀ ବାଣ୍ଟିବା ଲାଗି ବୋହୂକୁ କୁହାଯାଏ; ନଣନ୍ଦ ପିଠି ଆଉଁସିଲେ ପିଠିରୁ ଚେପା ଛାଡ଼େ, ଶାଶୂ ଓଠରେ କରତ ଖଞ୍ଜି କଥା କହେ, ବୋହୂର କଳିଜାକୁ କରତ ଦିଏ । ନଣନ୍ଦ ବୋହୂକୁ ଗୋଡ଼େ ଗୋଡ଼େ ଜଗିଥାଏ, ଖୁଣ ଖୋଜିବା ଲାଗି ନୁହେଁ, ଖୁଣ ବାଛିବା ଲାଗି । ବୋହୂ ଶୋଇଲେ ଶିଙ୍ଗି ପଡ଼ିଲୁ ବୋଲି କହେ, କାନ୍ଦିଲେ କିଏ ମରିଲୁ ବୋଲି ପଚାରେ । ବାପ ଭାଇର ବଡ଼େଇ କଲେ ଶାଶୂ ନଣନ୍ଦ ଦୁହେଁ ମିଶି ବଚନବାଣରେ ତାର ଗୁମାନ ଭାଙ୍ଗନ୍ତି ।

ଶୋଇଲେ ନଣନ୍ଦ ପାଦ ଉଣ୍ଡିବେ
ପଦକ କଥାରେ କାଳି କରିବେ
ଝିଙ୍ଗାସିବେ ମୋତେ ଘଡ଼ିକି ଘଡ଼ି
ହାଡ଼ରୁ ମାଉଁସ ଯିବ ଛାଡ଼ି ।

ଶାଶୂ, ବୋହୂ ନନ୍ଦା ପାଇବ ବୋଲି ତୋରାଣିରେ ପାଣି ମିଶାଏ, ଲୁଚାଇ ଅଧ ଥରେ ଲୁଣ ପକାଇ ଦିଏ । ନହେଲେ ଲୁଣିଆ ବା ପାଣିଆ ଖାଇବାରେ ତାର ଆପତ୍ତି ନାହିଁ, ପଡ଼ା-ଦୁଆରର ଖାଇବା କଷ୍ଟ ହେବ ବୋଲି ଭାବନା ନାହିଁ, ବୋହୂ ଗାଳି ଖାଉ, ମାଡ଼ ଖାଉ; ଏ ତାର ଭିତରେ ଇଚ୍ଛା । ରାନ୍ଧିବା ଲାଗି ସେ ଭଲ ଜାଳ ଦିଏ ନାହିଁ, ତିଅଣ ବଘାରିବା ଲାଗି ତେଲ ଦିଏ ନାହିଁ, ତା ଆଗରେ ବାପ ଭାଇଙ୍କି ଅପମାନ ଦିଏ । ଦଉଡ଼ି ଲଗାଇ ମରିବା ଲାଗି ମୁଣ୍ଡ ଉପରେ ଦଉଡ଼ି ନେଇ ଥୁଏ, ସାମ୍ନା ହେଲେ ବେଳେ ବେଳେ ତାର କଅଁଳ ଗାଲ ମାଂସକୁ କୁତୁକୁତା କରିଦିଏ ।

ବୋହୂ ଆଉ କାହା ଆଗରେ ଗୁହାରି କରିବ ? ଯାହାକୁ ଗୁହାରି କରନ୍ତା, ସେହି ହୋଇଛି ବଇରି ।

ଶାଶୂର ଅତ୍ୟାଚାର ସହି ନ ପାରି ସେ ବେଳେ ବେଳ ଏକୁଟିଆ ଘରକୁ ପଳାଇ ଯାଏ । ଘରେ କନିଆ ମାଆ; ସେ ବାଡ଼ି ଦୁଆରେ ସଉତୁଣୀ ଝିଅର ଡାକ ଶୁଣେ; ପ୍ରଥମେ ଗାଳି ପାରି ଦିଏ, ତାପରେ ଗର୍ଜି କହେ—କଣ ଶୁଆଇ ବସାଇ ଦେବି ନାହିଁ ? କାହିଁକି ଏତେ ରାତିରେ ଡାକୁଛୁ ? ଯେବେ ଶାଶୂ କଣ କହିଲା, ଏଠିକି ପଳେଇ ଆସିଲୁ କାହିଁକି ? ବାଟରେ ଗଡ଼ିଆ ପୋଖରୀ ମିଳିଲା ନାହିଁ ? ବେକରେ ଲଗାଇ ଝୁଲି ପଡ଼ିବା ଲାଗି ହାତେ ଦଉଡ଼ି ମିଳିଲା ନାହିଁ । ମୁଁ କେମିତି ତତେ ଘରେ ଭର୍ତ୍ତି କରିବ ? ସଂକାଳୁ ପାଇପଡ଼ିଶା ମୋତେ କେଳେଇ କୁଟି ଖାଇଯିବେ । ଝିଅ ରାତିସାରା ବାଡ଼ିଦୁଆର କାନ୍ଥକୁ ଆଉଜି ବସି ରହିଲା । ବାପଘରର ଏଭଳି ଚିତ୍ର ଅବଶ୍ୟ ଲୋକଗୀତରେ ବିରଳ । ଶାଶୂଘରର ନିନ୍ଦା ପ୍ରାୟ ସର୍ବତ୍ର ପ୍ରକାଶିତ—

ବାପ ଘରେ ଝିଅ କୁସୁମହାର
ଶାଶୂ ଘରେ ହୋଇନ୍ତି ରୁଠ ପଥର
ରୁଠ ପଥର ତ ସଭିଙ୍କ ପାଇଁ
ଗୋଡ଼ ଘଷି ଲୋକେ ଯିବେ ପଳାଇ ।

ବାପ ଅର୍ଥ-ଲୋଭରେ କନ୍ୟାକୁ ବିକ୍ରୟ କରିଦିଏ । ବାପଘର ଝିଅର ଗୋଟିଏ ବଡ଼ ଭରସା । ଅତ୍ୟାଚାରିତା ହେଲେ ସେ ସେଠାକୁ ଆସି ଆଶ୍ରୟ ନିଏ । ବିକ୍ରୀତା କନ୍ୟାକୁ ବାପ ନିଏ ନାହିଁ, କନ୍ୟା ବା କେଉଁ ମୁହଁରେ ବାପଘରକୁ ଯିବ ? ସେ ନୀରବରେ ଶାଶୂଘରର ଅତ୍ୟାଚାର ସହ୍ୟ କରେ—

ତଳେ ବସାଦିଅ ଉପରେ ଘର
ଜାଣି ନ ଥିଲି ତ ଦୋବେଶ୍ୱା ବର
କେତେ କେତେ ଟଙ୍କା ଆଣିଲ ଗଣି
ସତେ କି ବାନ୍ଧିଲ ସୁନାର ଖଣି ?
ସୁନା ଖଣିରେ ତ ତମେ ରହିବ
ମାଲୁଣୀ ମୋ ହାଡ଼ ଝାଡ଼ି ଖାଇବ ।
ତମ କଷ୍ଟ ଯେବେ ଜାଣି ଥାଆନ୍ତି
ଜହର ମହୁରା ଖାଇ ଥାଆନ୍ତି ।
ଜୀବ ଥାଉଁ ଥାଉଁ ପାଇଲି ଦୁଃଖ
ଗଲାଠାରୁ ମଲା ଅଧିକ ସୁଖ ।

ପିତାମାତାଙ୍କର କର୍ତ୍ତବ୍ୟାବହେଳା, ଶାଶୂ ଶ୍ୱଶୁରଙ୍କ ଗଞ୍ଜଣା, ସ୍ୱାମୀର ପ୍ରହାର —କହିବ ଆଉ କାହାକୁ ? ସେହି ନିଷ୍ଠୁର ପିତାମାତାଙ୍କ ନିକଟକୁ ବାର୍ତ୍ତା ପଠାଏ, ତାଙ୍କ ପାଖରେ ହିଁ କୋହ ଅଭିମାନ କରେ—

ଚନ୍ଦ୍ରାବଳୀ କାନ୍ଦଇ କଳା କାଚକୁ ଗୁହିଁ,
ଆରେ କଳାକାଚ ତୁହି କହିବୁ ଯାଇ,
ବାପ ଦାରୁଣ ହେଲେ ପରଘରକୁ ଦେଲେ
ସେହି ଟଙ୍କା-ବଦଳେ କି ଘର କରିଲେ ?
ଧାନ ବାର୍ ଗଉଣୀ ଶାଶୂ ଅନ୍ଧୁଣୀ କାଣୀ
ଧାନ ଢିଙ୍କିଶାଳେ ମତେ ମାରେ କହୁଣୀ ।
ସେ ତ ଶଶୁର ବୁଢ଼ା ବଡ଼ ଦାନ୍ତକାମୁଡ଼ା
ଦାଣ୍ଡ ଦରଜାରେ ମତେ ନ କରେ ଛୁଡ଼ା ।
ଶାଗ ହେଲା ଅଲଣା ଶାଶୂ ଦେଲା ଗଞ୍ଜଣା
ଭାତ ଖାଇଲି ନାହିଁ ଶୋଇ ରହିଲି ଯାଇଁ
ମାଡ଼ ତ ମାରୁଛି ତୋର ନେଫଗ୍ ଜୋଇଁ ।

କେଉଁଠି କେଉଁଠି ଶାଶୂଘରେ ବୋହୂ ମାନଅଭିମାନ କରେ କାହିଁ; ସେଠି ଏହାର କୌଣସି ମୂଲ୍ୟ ନାହିଁ, ସେ ବୁଝିପାରେ, ମନକୁ ବୁଝାଏ ବା ମନ ମାରି ରହେ—

"ଶାଶୂ ନଣନ୍ଦର ଘର
ଗାଳିକି ନ କର ଡର
ଗାଳିକି ଯେମନ୍ତେ ଡର କରିବ
ଏଇ ନଈକୂଳେ ବୁଡ଼ି ମରିବ ।"

ଜାଆମାନେ ତାକୁ ଈର୍ଷା କରନ୍ତି, ପିଲାଟିଏ ହେଲେ ପାଇ ପଡ଼ିଶା ସୁଦ୍ଧା ଦେଖିବାକୁ ଆସନ୍ତି । କିନ୍ତୁ ଜାଆମାନେ ମନେ ମନେ ଜଳନ୍ତି, ତାର ମରଣ କାମନା କରନ୍ତି । ଏହା ମାଆ ମର୍ମେ ମର୍ମେ ଅନୁଭବ କରେ—

"ବାପା ଆଣିଚ ଝୁଲୁରିପଟି ପିଲା ଶୋଇବାକୁ
ମାଆ ଧରିଚ ଗୋ ନିଆଁ ଉହ୍ମେଇ ପିଲା ସେକିବାକୁ
ମାମୁଁ ଆଣିଚ ଝୁମୁକାବାଡ଼ି ପିଲା ଖେଳିବାକୁ
ମାଈଁ ଆଣିଚ ଦିଅଣିମୁଦି ପିଲା ପିନ୍ଧିବାକୁ
ପାଇ ପଡ଼ିଶା ଆସିଛନ୍ତି ପିଲା ଦେଖିବାକୁ
ଜାଆ ଯାଉଁଳା ଝୁହିଁଛନ୍ତି ପିଲା ମରିବାକୁ !"

ସଉତୁଣୀର ଜ୍ୱାଳା ସବୁଠାରୁ ବେଦନାଦାୟକ । ସଉତୁଣୀ ରଖିଥିବା ସ୍ୱାମୀ ଚଣ୍ଡାଳ ସଙ୍ଗେ ସମାନ । ଏଭଳି ସ୍ୱାମୀ ବା ଶ୍ୱଶୁରଗୃହ ପ୍ରତି ବୋହୂର ଆଦୌ ମୋହ ନ ଥାଏ । ଏହା ଅପେକ୍ଷା ପିତୃଗୃହ ବାସ ଅଧିକ ଶ୍ରେୟସ୍କର—

"ବାପଘର କୁଣ୍ଡଆଡ଼େ ମଶଚର ଖେଳା
ସହି ନ ପାରିବି ବାପା ସଉତୁଣୀ ଜାଲା
ସଉତୁଣୀ ଜାଲା ଗୋଟି ଅଗିନର ଝାସ
ଚଣ୍ଡାଳ ଘରେ ଦେଇଛୁ ବାପା
ଚ଼ବଶେ ଘେନି ଆସ ।"

କୌଣସି କୌଣସି ଗୀତରେ ବଧୂ ପିତୃଗୃହର ମଧୁର ସ୍ମୃତି ସ୍ମରଣ କରି ଅଶ୍ରୁ ଝରାଇଛି । ପିତାମାତା ଭ୍ରାତାଦି ଥିଲେ ଯେଉଁ ସ୍ନେହ ମିଳୁଥାଆନ୍ତା, ସେଥିରୁ ସେ ଚିର ବଞ୍ଚିତା । ଥିଲେ ପୂର୍ଣ୍ଣପର୍ବରେ, ଅକାଳରେ, ଅବେଳରେ, କେହି ତା ପାଖକୁ ଆସୁଥାନ୍ତେ ।

"ବାପା ଥାଆନ୍ତେ, ଆଣ୍ଠୁ ଚନ୍ଦ୍ର କରି କନା ଦିଅନ୍ତେ
ଭାଇ ଥାଆନ୍ତେ, ଛତାବାଡ଼ି ଧରି ଗୁଡ଼ି ନଅନ୍ତେ
ଝିଙ୍କୁଡ଼ୀ ଥାଆନ୍ତେ, ବାଡ଼ଦ୍ୱାରେ ବସି କାନ୍ଦୁଥାଆନ୍ତେ
ମାଆ ଥାଆନ୍ତା, ଝୁଙ୍କୁଲା ଗୁଞ୍ଜୁଲି ବାନ୍ଧିଦିଅନ୍ତା
ଜେଜା ଥାଆନ୍ତା, ଦାରିଆଣୀ ବେଶ କାଢ଼ିଦିଅନ୍ତା
ଆଈ ଥାଅନ୍ତା, ପୋଡ଼ା ଝୁଣ୍ଟା ଧରି ତଡ଼ି ଦିଅନ୍ତା ।"

କୌଣସି କୌଣସି ଗୀତରେ ପିତା ବା ଭ୍ରାତା ପ୍ରତି ମମତା ଊଣା ଥିବାର ପ୍ରକାଶିତ ହୋଇଛି, ସ୍ୱାମୀ ପ୍ରତି ଆକର୍ଷଣ ସ୍ୱାଭାବିକଭାବରେ ଅଧିକ ହୋଇଅଛି । ହେଲେହେଁ ଏହା ଏକ ନିତାନ୍ତ ସ୍ୱାର୍ଥପରର ବୃତ୍ତି ।

"ମୁଣ୍ଡିଆ ଉପରେ ଚକ ପଥର ଲୋ
ରଗଡ଼ିଲି ମୁଗଡାଇ
ସେଇ ମୁଗଡାଇ ପଇତି କଲି ଲୋ
ଖାଇଗଲେ ବାପ-ଭାଇ ।
ସେଇ ବାପଭାଇ କିସ କରିବେ ଲୋ
ବରଷକୁ ଖଣ୍ଡେ ଦେବେ
ମୋହର ସ୍ୱାମୀ ତ ମହୁଡ଼ମଣି ଲୋ
କାଲିଯାକ ସମ୍ଭାଳିବେ ।

ସନ୍ତାନ ନ ହେବାରୁ ସ୍ତ୍ରୀ ସଙ୍ଗେ ସ୍ୱାମୀର ଅପଡ଼ ହୁଏ । ସତେ ଯେପରି କି ଏହା ସ୍ତ୍ରୀର ହାତର କଥା, ସ୍ତ୍ରୀ ତାର ଦାୟିତ୍ୱ ତୁଲାଇ ନାହିଁ । କଟୁ ବଚନ ବା କ୍ରୂର ବ୍ୟବହାର ତା ପକ୍ଷରେ ଅସହ୍ୟ ହୋଇଅଛି । ସ୍ୱାମୀଗୃହ ତ୍ୟାଗ କରି ପରଦ୍ୱାରେ ଗୋଷାଗ୍ରି ଗୋଟେଇବାକୁ ସ୍ତ୍ରୀ ଶ୍ରେୟସ୍କର ମନେ କରିଅଛି ।

ତନ୍ତିର କଳା ତ ଆଡ଼ପତର ଲୋ
ଓଟରି ସହିବ ନାହିଁ
ଦୁଃଖକର ଧନ ଖାଇବ ପଛକେ
ତୋ ଭାଷା ସହିବ ନାହିଁ ।
ଲେଉଟିଆ ଶାଗ ଦୁଇ ପତର ଲୋ
କାଟିଦେଲି ପରିବାକୁ
ପାଖରେ ଶୋଉଛି କଥା ନ କହୁଛି
ପୁଅ ଝିଅ ନୋହିଲାକୁ ।

ସ୍ୱାମୀ ବିଦେଶଯାତ୍ରା କରିଅଛି । ଚରିତ୍ରର ସୁରକ୍ଷା ଲାଗି ସ୍ତ୍ରୀକୁ ବାରମ୍ବାର ଉଆର କହିଯାଇଅଛି, କିଛି ଉପଦେଶ ମଧ୍ୟ ଦେଇଅଛି—

ସ୍ୱାମୀ—ପିଢ଼ିଲ ଛଣା ବଇଠି
ଛମାସ ବାଟକୁ କହି ଯାଉଛି ଲୋ
ମହତ ରଖିଥିବୁଟି ।
ସ୍ତ୍ରୀ—ତୁହି ପରି ମୋର କାଳିଆ ସୁନାରେ
ଛାଆରି ଯାଉଛୁ ମତେ
ସ୍ତନ ଯଉବନ ଅବଳା ଜୀବନ
ସମ୍ଭାଳି ରଖିବ କେତେ ।
ସ୍ୱାମୀ—ତୁ ନାରୀ ଅବଳା ପିନ୍ଧିବୁ ବକଳା
ନ ଗୁହିଁବୁ ଏଣେତେଣେ
ରସିଲେ ରସନ୍ତୁ କଉଡ଼ି ବସନ୍ତୁ
ରଖିଥିବୁ ମତେ ମନେ ।

ଦାମ୍ପତ୍ୟ କଳହର ଚିତ୍ର ଲୋକଗୀତରେ ବିରଳ ନୁହେଁ । ସାମାନ୍ୟ କଳହର ପରିଣତି ବେଳେ ବେଳେ ଗୁରୁତର ହୁଏ । ସ୍ତ୍ରୀ ଅଭିମାନିନୀ, ସେ ମାଡ଼ ବା ଗାଳି ସହି ନ ପାରି ଆତ୍ମହତ୍ୟା କରେ । ସ୍ୱାମୀ ସ୍ତ୍ରୀ ହୃଦୟରେ ବ୍ୟଥାର ଗୁରୁତ୍ୱ ଉପଲବ୍ଧି କରି ପାରେନାହିଁ, କାରଣ ସ୍ତ୍ରୀ ତାର କୌଣସି ସୂଚନା ବାହାରେ ପ୍ରକାଶ କରେ ନାହିଁ । ସବୁଦିନ ପରି ଦିନ ଦି' ଘଡ଼ି ଥାଇ ସ୍ତ୍ରୀ ମୁଣ୍ଡ ବାନ୍ଧେ,

ହଳଦୀ ଲଗାଏ, ସିନ୍ଦୂର ଅଳତା ଲଗାଏ । ସବୁ କାର୍ଯ୍ୟ ସ୍ୱାଭାବିକଭାବରେ ହେଉଥିବାର ଦେଖି ସ୍ୱାମୀ କୌଣସି ଶଙ୍କା ନ କରି ପାଲି ଦେଖି ଚାଲିଯାଏ । ସ୍ତ୍ରୀ ଦେହରୁ ନୋଥ ଗୁଣାଦି ଅଳଙ୍କାର କାଢ଼ି ମିଠାଇଁ ଖାଇବା ଲାଗି କୁନି ପୁଅ ହାତରେ ଦିଏ, ପୁଅ ତାହା ଖୁସିରେ ନେଇ ଶୋଇ ପଡ଼େ । ମାଆ ଏଣେ ରେଲ ଲାଇନ୍ ତଳେ ଶୋଇ ପ୍ରାଣ ହରାଏ । ପଦୁଆଁ ବୋଲି ଆଉ ଜଣେ ସ୍ତ୍ରୀ ଲୋକ କାନ୍ଦୁ ଜଳରେ ଝାଂପ ଦେଇଛି ।

ମାଡ଼ ଯେ ଖାଇ ଦେହ କାଉଁରି ଗଲା
ବୁଢ଼ା ଯେ ମରିବାକୁ ସବୁ ଦେଖିଲା
ପୁଅକୁ କୋଳେ ଧରି କରେ ବିଚାର
ଅଇଠାରୁ ବୋଉ ଡାକ ଗଲା ତୋହର ।

ପ୍ରେମଗୀତରେ ବାସ୍ତବ ଜୀବନର ଅନୁଭୂତି ସୁନ୍ଦର ଭାବେ ବ୍ୟକ୍ତ ହୋଇଅଛି ।

'କୋଠାଘର, ବୁଢ଼ାବର, ଲୁହ ବହେ ଜରଜର
ଚାଳିଘର, ଛୋକାବର ହାଡ଼ ମାଡ଼େ କରକର ।'
'ପାଖର ପୀରତି ଦୂରକୁ ଗଲେ
ଆଉ କି ପଡ଼ଇ ମନେ ?'
'ନୂଆ ପୀରତିରେ ଦେଇଛ ଦଗା
ଗ୍ରୀଷ୍ମରେ କତରି ଲଗା ।'
'ଯେତେହେଲେ ସିନା ପର ପୀରତି
ମନ ନ ହୁଏ ତୃପତି ।'
'ଲାଗିଲା ପୀରତି ନ ଛାଡ଼େ ବେଗି
ସଂସାରେ ରହୁଛି ଲାଗି ।'
'ପାସୋରି ନାହିଁ ଗୋ ତୋତେ,
ମନରେ ଯେତେ ମୋ ହୃଦରେ ତେତେ
ଜୀବଥିବା ପରିଯନ୍ତେ ।'

ପ୍ରକୃତି ପ୍ରୀତି ସମ୍ପର୍କରେ ଅବିସ୍ମରଣୀୟ ଛନ୍ଦମାନ ଲୋକକବି ରଚନା କରିଛନ୍ତି ।

'ଝିମ୍ପୁକ କଠଉ ଶବଦ ଶୁଣି ବୋହୂ ଗଲା ପାଣି ଆଣିରେ ପ୍ରେମିକାର ଅଭିସାର ସଙ୍କେତ ବର୍ଣ୍ଣିତ ହୋଇଅଛି । ଚିଡୁଗି ବାଟପୀ ବାଟ ପୁରୁଷକୁ ନମ୍ର ପ୍ରକାରେ ସଙ୍କେତ ଦେଇଅଛି—

ଅଧାକାଣ୍ଡି, ପାଣି ନଉଥ          ନଣନ୍ଦ ଗୋଡ଼ରେ ବଳା
ଥର ଥର କରି ଆସିବୁ ଘେରୁ,     ପୁଅକୁ ଝୁଣ୍ଟିବୁ ପଗ ।

କୌଣସି ଯୁବକ ଗୋଟିଏ ଯୁବତୀକୁ ଅନାଇଥିଲା, ତାର ରୂପ ଯୌବନରେ ମୁଗ୍ଧ ହୋଇ । ଏତିକିବେଳେ ଯୁବତୀଟି ତାକୁ ଲେଉଟି ଅନାଇଲା, ଯୁବକ ଧରା ପଡ଼ିଗଲା । ଯୁବତୀଟି ତାକୁ କହିଲା—

ଅରୁଆ ଚାଉଳ ଖିରି କି
ତୁମ ଘରକର ନୁହେଁରେ କାଳିଆ
କେତେ ଚାହୁଁ ଥାଉ ନିରେଖି ?
ଲେଉଟି ନ ଚାହାଁ ମତେରେ
ମୋର ଗୁଣମଣି ତୋଠାରୁ ସୁନ୍ଦର
ଗୋଲାମ ରଖିବ ତତେ ରେ ।

ପୁରୁଷ ମଧ୍ୟ ଛାଡ଼ିବା ପାତ୍ର ନୁହେଁ, ସେ ବାଆଁରେଇଲା, କହିଲା—ମୁଁ ସିଆଡ଼େ ଚାହିଁଚି ସତ, କିନ୍ତୁ ତତେ ଚାହିଁନାହିଁ । ତୋ ରୂପର ସେଭଳି ଆକର୍ଷଣ ଶକ୍ତି ମଧ୍ୟ ନାହିଁ; ଅଧିକନ୍ତୁ ମୋ ଗୃହିଣୀ ସୁନ୍ଦରୀ, ତାକୁ ମଧ୍ୟ ମୁଁ ପଚାରେ ନାହିଁ । ତୁ ତ ତା' ଆଗରେ କିଛି ନୋହୁ, ତତେ ଚାହିଁବି କାହିଁକି ?

ଛଟିଲେ ଛଟକୁଣି ତୋ ମୁଣ୍ଡେ ଉକୁଣି
ତତେ କିଏ ମୋର ଚାହୁଁଚି ।
ମୋ'ର ଘରଣୀ ତୋଠାରୁ ସୁନ୍ଦର
ଶାଶୂ କୋଳେ ଦିନ ନଉଛି ।

ପାରିବାରିକ ଜୀବନ ବହୁଳାଂଶରେ ଲୋକଗୀତର ଅବଲମ୍ବନ । ସୁଖୀ ପରିବାରର ଚିତ୍ର ଏଥିରେ ବିରଳ । ନିର୍ଦ୍ଦିଷ୍ଟ ପରିବାରର ଦୁଃଖ ଦୁର୍ବିପାକ ଚିତ୍ରିତ ହୋଇ କ୍ରମେ ସର୍ବସାଧାରଣ ହୋଇଅଛି । ଅବଶ୍ୟ କାହାରି ନାମ ବା ଧାମ କ୍ୱଚିତ୍ ଦେଖିବାକୁ ମିଳେ । ଅଗଣିର ବୈବାହିକ ଦିନର ଦୁର୍ଘଟଣା ଏକ ନିପାତନ ନୁହେଁ, ବରଯାତ୍ରୀ ବା ଭିଗାରି ଏଭଳି ମଙ୍ଗଳ କୃତ୍ୟରେ ବିଘ୍ନର ସୂତ୍ର ଖୋଜି ବୁଲୁଥାନ୍ତି ।

ମଙ୍ଗଳକୃତ୍ୟ ଦିନ ଯୋଉ ବିପତ୍ତି
ଭିଗାରି କଲେ କୁଳି ପାହିଲା ରାତି
ଦିଅଁ ମଙ୍ଗୁଳି ଆଲୋ ଗଲାର ବେଳେ
କାଉ କୋଇଲି ଆସି ଲାଗିଲେ ଚାଳେ ।

ବୃଦ୍ଧ ବା ବୃଦ୍ଧା ମୃତ୍ୟୁ ସହିତ ସଂଗ୍ରାମ କଲାବେଳେ ଆଗେ ପଚାରି ଯାଉଥିଲା —ଟଙ୍କା କେଉଁଠି ପୋତିଛ ? ପରିବାରକୁ ଶେଷ କଥା କହୁଁ କହୁଁ କାହାର ପ୍ରାଣବାୟୁ ବାହାରି ଯାଉଥିଲା । 'ଅନ୍ତିମ ବିଦାୟ' ଗୀତରେ ମା'ଆ ଭାଉତଲେ ଆଠଶ ଟଙ୍କା ପୋତି, ସେହି ଟଙ୍କାରେ ଶୁଦ୍ଧଘର କରିବାଲାଗି କହିଯାଉଛି ।

ପାରିବାରିକ ଜୀବନକୁ ବାଦ୍ ଦେଲେ ବି ହଳିଆ, ଗଉଡ଼ିଆ, ଗାଈଆଳ, ମଇଁଷିଆଳ ପ୍ରଭୃତିଙ୍କର ସାମାଜିକ ଜୀବନ ଗୀତରେ ପ୍ରତିଫଳିତ ହୋଇଥାଏ । ବର୍ଷାଦିନରେ ପୋଖରୀ ହୁଡ଼ାରେ ଛତା ତଳେ ମଇଁଷିଆଳର ଜୀବନ କଟେ । ଏହାର ଦୁଃଖାତ୍ମକ ଚିତ୍ରଣ ମଇଁଷିଆଳ ଗୀତରୁ ମିଳେ—

ମଇଁଷି ପଡ଼ିଲେ କଲରି ଗଣ୍ଡେ ଲୋ
ଦୁଧ ପୋଟଳାରେ ଜୋକ
ଭାଇଙ୍କ ପାଖକୁ ଚିଟଉ ଲେଖରେ
ଜନ୍ମ ଚରି ବଡ଼ ଦୁଃଖ ।
ଛତାରେ ବାନ୍ଧ ବଇଁଶୀ ନଇଲେ ଲୋ
ଛତାରେ ବାନ୍ଧ ବଇଁଶୀ
ଦୂର ବାଟ ବୋଲି ଭାଇ ବଇଚ ଲୋ
ଅଇଲେ ମାଲେ ମଇଁଷି ।
ଗାଈଆ ଗଉଡ଼ ଭଲ ନଇଲେ ଲୋ
ଗାଈଆ ଗଉଡ଼ ଭଲ
ମଇଁଷିଆ ଗଉଡ଼ ମହା ପାପିଆ ଲୋ
ଛତା ତଳେ ଦିନ ଗଲା ।

ହଳିଆର ଜୀବନ ଦୁଃଖକଷ୍ଟର ଜୀବନ । ଦିନଯାକ ଖଟି ଖଟି ସେ ଲୁଣ ଦେଇ ପଖାଳ ଖାଏ । କାହା କାହା ଭାଗ୍ୟରେ ଦିଓଳା ସେତକ ବି ମିଳେ ନାହିଁ । ହଡ଼ା ବଳଦକୁ ପେଲି ପେଲି କାହା ଦେହରୁ ବଳ ଖସେ । ଗଭୀର ବିଲକୁ ଯାଉ- ବେଳେ ତାହାଲାଗି ଭାତ ବୋହିନିଆ ହୁଏ ।

ଆଗରେ ହଳଦେଇ ଦେହ କଲୁ କ୍ଷୀଣ
ପଛ ହଳିଆର ନ ସରଇ ଦିନ
ମଝି ହଳିଆର ସଜ କି ପଖାଳ
ତାଟିଆ ସଙ୍ଗେ ଲୁଣ ହେ ।
ସକାଳୁ ଉଠି ବୁଢ଼ା ଯୋଚିଦେଲା ହଳ
ବିଲଠାରେ ବେଳ ଯେ ଅଢ଼େଇ ପହର

ହଳଯୋଚ ବୁଢ଼ା ବୁଲଏ ସାତଘେର
ପାଞ୍ଚଣ ଉର୍ଚ୍ଚିଲା ଯେ ନହେ ଅଣୀ ଯୋଡ଼ା
ହଡ଼ାକୁ ପେଲ ବୁଢ଼ା ହେଲାଣି ଆସକତ
ପଛକୁ ଯେ ଗୃହେଁ ବୁଢ଼ୀ ଆଣୁଅଛୁ ଭାତ ହେ ।

ବୁଢ଼ା ବଳଦ, ସାହୁକାର କୃପଣ । ସେ ହଳିଆର ପେଟ ଚିହ୍ନେ ନାହିଁ, କେବଳ ହାଡ଼ଭଙ୍ଗା କାମ ଆଦାୟ କରେ, ସକାଳ ନ ହେଉଣୁ କୁହାଟ ମାରେ ।

ବୁଢ଼ା ତ ବଳଦ ହୋ ପନାସି ଖଣ୍ଡି ଯୋତ
ଅଦଆ ସାହୁ ମାରଇ ପାହ ନୁଆ ଡାକ ହେ ।

ହଳିଆ କବି କେବଳ ନିଜ ଜୀବନର ଗୀତ ଗାଏ ନାହିଁ । ରାଜାର ବେଠିଖଟଣି, ସାହୁର ଛୁଗ୍ଲକର ଜୀବନ, ପୁଟୁଳି ବୈଦ୍ୟର କୁଚକସ୍ତା ସଙ୍ଗେ ସଙ୍ଗେ ଖାଇ ନ ଥିବା ଭଉଣୀର ଦୁଃଖ, ସଦ୍ୟବିବାହିତା କନ୍ୟାର ପିତୃବିଚ୍ଛେଦ, ବନ୍ଧ୍ୟା ନାରୀର ବେଦନା ମଧ୍ୟ ହଳିଆ ଗୀତର ଉପଜୀବ୍ୟ ହୋଇଥାଏ । ହଳ କରିବା, ଶଗଡ଼ ବୋହିବା କେତେବେଳେ ସୁଖକର, କେଉଁ ବିଭାବରେ ଜୀବନ ସୁନ୍ଦର ସ୍ୱକଳ୍ପନା ଅନୁଯାୟୀ ହଳିଆ କବି ତାହା ବ୍ୟକ୍ତ କରିଅଛୁ । କିନ୍ତୁ ଏହା ବାସ୍ତବତାର ଦୂରବର୍ତ୍ତୀ ନୁହେଁ ।

ବଦଳ ବୁହାଇବାରେ ଦାମୁଡ଼ି ସମୟରେ
ଘର କରିଥିବ ମହାନଦୀ କୂଳେ
ମନ ଫୁଲାଣିଆ ଗୀତ ଗାଇବ
ଓହ୍ଲାଣି ଶଗଡ଼ରେ ।

ସଭାକୁ ସୁନ୍ଦର ଲୋ ପଧାନ ସାନଭାଇ
ଗୋଠକୁ ସୁନ୍ଦର ଲୋ ଦୁହାଁଳିଆ ଗାଈ
ବନ୍ଧୁରେ ସୁନ୍ଦର ଲୋ ଧଣଇ ଦୂରବାଟ
ସିନ୍ଧୁରେ ସୁନ୍ଦର ତା ଲହଡ଼ିଭଙ୍ଗା ଘାଟ
ଘରକୁ ସୁନ୍ଦର ଘରଣୀ,
ଯେବେ ନ ଯିବ ବାପଘର ହୋ ।

'ବଡ଼ଘର ବୋଲି ଦେଇଛ ବାପା ହେ ନିତି ତ ମାଣ୍ଡିଆ ପେଜ',
'ଧରିଥିଲି ସୁନାଫୁଲିଆ ହାତି ଟେକା ପାଣି ଟେକା ଭାତ',
'ବଡ଼ଘର ବୋଲି ଦେଇଛ ନନା ହେ ଦହରେ ଶୁଖିଲି ଓଦା',

'ମହାନଦୀ ମାଛ ସରୁସରୁକା ଲୋ ବୁଲଇ ପକାଏ ଘିଅ,
ରନ୍ଧବରେ ମାଛ ଗୋଟି ଗୋଟି ହୋଇ ଆମେ ପର୍ ପରଖିଅ',
'ଆମ ଦେଢ଼ଶୁର ଅଇଲେ, ତାଙ୍କ ସୁଖ ଦୁଃଖ କହଲେ,
ଆମ ଦୁଃଖ ସୁଖ କହଲବେଳେ ପଛେଇ କହୁଣୀ ମାଇଲେ ।'

ପ୍ରଭୃତ ଦୋଳ ଓ ପୁଚଖେଳ ଗୀତରେ ଶ୍ୱଶୁର ଗୃହର ଦାରିଦ୍ର୍ୟ, କାର୍ପଣ୍ୟ ଓ ଦୁର୍ବ୍ୟବହାରର ଚିତ୍ର ଅଙ୍କିତ ହୋଇଅଛି । ମୂଲିଆ ମୂଲିଆଣୀଙ୍କର ଅଭାବ ଅନଟନ ଓ ଭବିଷ୍ୟତ ଆଶାର ସ୍ୱପ୍ନ ନିମ୍ନ ଗୀତରେ ପ୍ରକାଶିତ ହୋଇଅଛି—

ହୋଇଲା ଶ୍ରାବନ
ରାଣ୍ଡୀ ଦୁଃଖୀମାନଙ୍କର ହେଲା ଉଛନ୍ନ ମନ
କେ ବୋଲୁଛି ମୋହର ଠନେ ନାହିଁ ଲୁଗାପଟା
କେ ବୋଲୁଛି ପହ୍ଲା ରୋଇଲେ କେତେ ଖାଇବ ପିଠା
କେ ବୋଲୁଛି ପହ୍ଲା ରୋଇଲେ କେତେ ଖାଇବ ମୁଢ଼ି
କେ ବୋଲୁଛି ପହ୍ଲା ରୋଇଲେ ହାତକୁ ପିନ୍ଧିବ ଦୁଇମୁଠା ଚୁଡ଼ି ।

ଏହି ଗୀତରେ 'ଠାରେ' ଅର୍ଥରେ 'ଠାନେ' ଓ 'ଡଲି' ଅର୍ଥରେ 'ପହ୍ଲା' ଶବ୍ଦ ବ୍ୟବହୃତ ହୋଇଅଛି । ଆମ ଦେଶର ପ୍ରକୃତ ଦୁରବସ୍ଥାର ଚିତ୍ର ବିଦଗ୍ଧ ସାହିତ୍ୟରେ ବିରଳ । କାରଣ ଏହାର ଲେଖକ ଧନୀ ବା ମଧ୍ୟବିତ୍ତ ଶ୍ରେଣୀର । ଶ୍ରମିକ ଶ୍ରେଣୀର ଲେଖକ ନାହିଁ କହିଲେ ଚଳେ । ତା ଜୀବନର ପୁଙ୍ଖାନୁପୁଙ୍ଖ, ବିଶ୍ୱସ୍ତ ଚିତ୍ର ତା ବ୍ୟତୀତ ଅନ୍ୟ କିଏ ଦେଇ ପାରିବ କିପରି ? ଲୋକଗୀତ ଲୋକ-ସାଧାରଣଙ୍କ ଗୀତ । ସେଥିରେ ନିବିଡ଼ଭାବେ ଅନୁଭୂତ ଦୁଃଖ ବେଦନାର ସୁସ୍ପଷ୍ଟ ଚିତ୍ର ମିଳେ ।

ଏ ଦେଶର ଆଦିବାସୀ ବଣ ପାହାଡ଼ରେ ରହନ୍ତି, ବର୍ଷକେ ଛ'ମାସ ଅନ୍ନର ମୁଖ ଦେଖନ୍ତି ନାହିଁ, କନ୍ଦା କରଡ଼ା ଖୋଳି ଖାନ୍ତି । ଅତି ଦରିଦ୍ର । ତାଙ୍କ ଝିଅ ବାପ ନିକଟରେ ମୂଲ୍ୟବାନ ଶାଢ଼ୀ ଅଲଙ୍କାର ଲାଗି ଅଳି କରିବ କିପରି ? ସେ ପହିଲପାଲି ଗଲାବେଳେ ବାପକୁ ଗୋଟାଏ ଖଦି କି ଗାମୁଛା, ଗୋଟାଏ ଖଣ୍ଡିକି ପାଛିଆ, ଗୋଟାଏ ଗାଈ କିମ୍ବା ଛେଳି ମାଗିଛି । ଦାରିଦ୍ର୍ୟ ଆଉ କେତେ ବିକଟତର ରୂପ ଗ୍ରହଣ କରିପାରେ ?

''ଖଦି ଗୁଟେ ଦେଲୁ ନାଇଁ — ମାଆ, ମାଆ
ଗାମୁଛା ଗୁଟେ ଦେଲୁ ନାଇଁ — ମାଆ, ମାଆ
ପାଚିଆ ଗୁଟେ ଦେଲୁ ନାଇଁ — ମାଆ, ମାଆ

ଗାଈ ଗୁଟେ ଦେଲୁ ନାଇଁ ଏ ବୁପା
ପେଲି (ଛେଳି) ଗୁଟେ ଦେଲୁ ନାଇଁ ଏ ବୁପା
ଦାଆ ଗୁଟେ ଦେଲୁ ନାଇଁ ଏ ବୁପା
କଣ୍ଡ (ଖଣ୍ଡା) ଗୁଟେ ଦେଲୁ ନାଇଁ ଏ ବୁପା

ଲୋକସାଧାରଣଙ୍କ ଠାକୁରଠାକୁରାଣୀ ମଧ୍ୟ ଲୋକ ଜୀବନରେ ଦଶନ୍ତମ ସ୍ତରକୁ ଖସି ଆସିଛନ୍ତି । ଦେବତା ଅଶେଷ ମହିମାମୟ ସ୍ୱର୍ଗଲୋକବାସୀ ନୁହନ୍ତି । ସେ ସୁଧାପାନ କରନ୍ତି ନାହିଁ, ବରଂ ଦୈନନ୍ଦିନ ଜୀବନର ଗରଳ ପାନ କରନ୍ତି । ସେ ପରିଶ୍ରମୀ, ପହ୍ଳା ରୁଅନ୍ତି, ଧାନ କାଟନ୍ତି । ମୂଲିଆର ଶିବ ହଳ କହନ୍ତି, ପାର୍ବତୀ ବଳଦକୁ ଭାତ ବୋହି ନଅନ୍ତି । ହରି ସାଧାରଣଙ୍କ ପରି ବାଟରେ ବହୂଆ ଖୋଲି ପାନପତର ଖାନ୍ତି । ଯେପରି ଇହଲୌକିକ ସେହିପରି ପାରଲୌକିକ ଚିନ୍ତାରେ ବି ଲୋକକବି ବାସ୍ତବବାଦୀ ହୋଇଛନ୍ତି । ସେହି ଦିଗରୁ ବିଦଗ୍ଧ ସାହିତ୍ୟର ଗୋଟିଏ ବିରାଟ ଶୂନ୍ୟସ୍ଥାନ ପୂରଣ କରେ ବାସ୍ତବ ଭିତ୍ତିରେ ଗଠିତ ଲୋକସାହିତ୍ୟ ।

—*—

## ପଲ୍ଲୀ ପଞ୍ଜି ସାହିତ୍ୟ

ଏ ବର୍ଷ ଜଣେ କାନ୍ଧୁଆଳର ଛୁଡ଼କଆ, ଆଉ ଜଣକର ମୁଡକଆ; ବଡ଼ ଚଉଦଳ ତ ମହାମେରୁ; ତାକୁ ଗୁଡସାଗୁ କାନ୍ଧେଇ ଛ’ଜଣ କାନ୍ଧୁଆଳ ଭୋଗ ଖୁଆଇବେ କେମିତ ? ଚନ୍ଦ୍ରବନ୍ଦୁ ମଣ୍ଡିତ ଲାଲ୍ ମଣ୍ଡଣି, ତା ଉପରେ କଳସ, ପିତ୍ତଳ ପ୍ରଭାରେ ବଜେ ଗୋପୀନାଥ, ତାଙ୍କ ଉପରେ ପିମ୍ପଳର ଗୁନ୍ଦୁଆ, ମଣ୍ଡଣିର ଝର୍ ଝର୍, ପାଲିଙ୍କିର ଝୁଲ୍ ପାଟଫୁଲ ଥୋପା, ଆମ୍ବକସି ପେଣ୍ଟା, ଗୁମର; ଏପରଭାବେ ଭୂଷିତ, ଘଣ୍ଟେ ଆଉ ଖଣ୍ଡିଏ ଚଉଦଳ ‘ବଲଙ୍ଗା’କ ହରଗଜପୁର ମେଳଣକୁ ଆସେ ନାହିଁ, ଶୁଣିଛୁ । ଖଣ୍ଡିଏ ଏକଗୁଳିଆ ଚଉଦଳରେ ଆଜ ଗୋପୀନାଥେ ବଜେ ହେଲେ । ଘଣ୍ଟମାଦଳରେ ଗାଆଁ ଉଛୁଳିଲା ନାହିଁ—

ସଙ୍ଗାତେ କାହିଁଥିଲ କ ?
ଯମୁନା ଗାଧେଇ ଯାଇଥିଲ କ ?

ପଟେ ଢପଟ ଫଟା ଘଣ୍ଟ ବେତାଳିଆ ବାଜିଲା । ଓଡ଼ଶାର ସେହି ଗୌରବ ଦନର ଚନ୍ଦ୍ରବନ୍ଦୁ ଅଙ୍କିତ ବଜୟପତାକା ବ ଉଡ଼ିଲା ନାହିଁ । ପାଲିଙ୍କି ଉପରେ ଯେତେବେଳେ ଓଡ଼ଶାରେ ପାଟଛତ ଉଡ଼ୁଥିଲା, ତାର ସଙ୍କେତ ସ୍ୱରୂପ ଗୋଟିଏ ହେଲେ ପାଟଛତ ପଟୁଆରରେ ବାହାରିଲା ନାହିଁ, ଓସ୍ତପତ୍ର ପରି ଗୋଟିଏ ହାସ, ସମୃଦ୍ଧ ଉତ୍କଳୀୟ କଳାଗୌରବର ସଙ୍କେତ ବହନ କରି ବାହାରିଲା । ଯେପରି ଠାକୁର ରଜା ସେହିପରି ଠାକୁର, ପ୍ରଟୁଆରରେ କୌଣସି ତାରତମ୍ୟ ନଥିଲା । କନ୍ତୁ ଆଜ ?

ହାବେଲି ଉଠିଲା ନାହିଁ କ ଚମ୍ପାବାଣ ରୂପାଫୁଲ ବର୍ଷିଲା ନାହିଁ । ସଙ୍କୀର୍ତ୍ତନର ଜୁଆର ଛୁଟିଲା ନାହିଁ କ କଳଘୋଡ଼ା ନାଚଲେ ନାହିଁ । ସେ ଜାଗାଘରର ଖେଳାଳି, ଯାତ୍ରାବାଲା, ସୁଆଙ୍ଗ ବା ଗୋଟିପୁଅ କାହାନ୍ତ ? ମିଞ୍ଜି ମିଞ୍ଜି ମଶାଲଟିଏ ଜଳୁଥାଏ, ଭୋଗଖିଆ ସରିଲା ।

ତା ଆରଦନ ଦୋଳବେଦୀ ପାଖରେ ମେଣ୍ଢାକୁଡ଼ଆ ପୋଡ଼ା । ଚୌକଦାର ଉଠି ଯାଇଛୁ । ଚୌକଆ ମେଣ୍ଢାକୁଡ଼ଆ ତଆର କଲେ ନାହିଁ । ଜାଗିର ଗ୍ରାମସହତର ଗୋଟିଏ ଭିତ୍ତି ଥିଲା; ଗ୍ରାମ ସହ୍ୟତର ମର୍ମ ନ ବୁଝି ତାକୁ ଉଠେଇ ଦଆ ହେଲା । ସବୁ ସେଟିବେଇତ ଦମେ କରଛଡ଼ା ଦେଲେଣି । ଦାଆଁ ଦେଇଲା, ବ୍ରତ ବବାହ ପ୍ରଭୃତ ଧାର୍ମିକ ଓ ସାମାଜକ ଅନୁଷ୍ଠାନମାନ ଆଉ ଚଳିବ

କପରି ? ଗୋଟିଏ ଗୋଟିଏ ସ୍ତମ୍ଭ ଭୁଶୁଡ଼ିବା ସଙ୍ଗେ ସଙ୍ଗେ ପ୍ରାଚୀନ ସମାଜ ଗଢି କରୁଛି ଅବଲୋପ ପଥରେ ।

ଦୋଳପୂର୍ଣ୍ଣିମାଦିନ ଅପରାହ୍ଣରେ ଗୋଟିଏ ଅସ୍ଥାୟୀ ମାଟି ବେଦୀ ମଣ୍ଡପରେ କାଠର ମେହେରାବୀ ପୋତା ହେଲା, ତହିଁରେ କମନୀୟକରା ଝୁଲଣି ଝୁଲାଇ ଦିଆହେଲା; ପାଟଖଦି, ପାଟମୁନୁଲି, ଫୁଲମାଳାଭରା ସେଇ ଝୁଲଣିରେ ପିତ୍ତଳ ପ୍ରସ୍ତରେ ଗୋପୀନାଥ ଦୋଳି ଝୁଲିଲେ । ସମସ୍ତ ଗ୍ରାମ ଏଇଠି ଠୁଳ । ଆଜି ପରଦା ନାହିଁ । ସ୍ତ୍ରୀମାନେ ସ୍ୱଚ୍ଛନ୍ଦଭାବରେ ଆସି ଠାକୁର ଦର୍ଶନ କରି ପାଦୁକ ପାଇ ଯାଉଛନ୍ତି । ପିଲାମାନେ ତାଳଫୁଟୁକା ଫୁଟାଉଛନ୍ତି । ବୁଢ଼ାବୁଢ଼ୀଙ୍କ ମୁଣ୍ଡରେ ଫଗୁ, ବସିଛନ୍ତି ନିଶ୍ଚଳ ହୋଇ ପାଞ୍ଜି ଶୁଣିବା ଲାଗି ।

ଲଙ୍ଗରାଜ ନାହାକେ ଝଜଣା ବସିଲା ପରେ ଗାଆଁ ଜାଗିର ଜମି ବନ୍ଦ ଦେଇଛନ୍ତି । ତଥାପି ଆସିଛନ୍ତି ପାଞ୍ଜି ଶୁଣେଇବା ଲାଗି । ଦ୍ୱାରେ ଦ୍ୱାରେ ବୁଲି ସେ ମହାଜନମାନଙ୍କୁ ନିମନ୍ତ୍ରଣ କରିଗଲେ—ପାଞ୍ଜି ଶୁଣିବା ଲାଗି ଅବଧାନ ହେଉ ହେ । ଦୋଳବେଦୀ ପାଖେ ଗାଆଁର ପ୍ରାସ୍ତ ସମସ୍ତେ ପୂରିଲେ । ଅବଧାନେ ଛିଡ଼ା ହୋଇ ପଢ଼ିଲେ ଦଶାବତାର ସ୍ତୁତି ବୋଲିଲେ; ସଂସ୍କୃତ ଓଡ଼ିଆମିଶା ଶ୍ଳୋକ ।

ଏ ନାହାକେ ଜାଣ ବୃହସ୍ପତି, ଦୋଳର ଗୋପୀନାଥ ଜଗନ୍ନାଥ । ପାଞ୍ଜି ଶୁଣେଇବା ଲାଗି ସେ ଅଜ୍ଞା ଦେଉଛନ୍ତି । ଏ ପାଞ୍ଜି ଗାଆଁର ବର୍ଷ ପଞ୍ଜି, ଚୈତ୍ର ପ୍ରତିପଦ୍‌ରୁ ନୂଆ ବର୍ଷର ଆରମ୍ଭ, ପୁରୁଣା ବର୍ଷର ହିସାବ ନିକାଶ, ଆଗାମୀର କଳନା, ଫଳଗଣନା, ଅତୀତର ଇତିହାସ ଆଲୋଡ଼ନ, ଭବିଷ୍ୟତର ଆଶା-ନୈରାଶ୍ୟର ଅଭିବ୍ୟକ୍ତି । ଏହା ଏକ ଦିଗରେ ଯେପରି ସମଷ୍ଟିର, ସେହିପରି ବ୍ୟଷ୍ଟିର । ଋତୁଚକ୍ରର ଗତି, ବନ୍ଧୁ ଜଳ ବୃଷ୍ଟି ବା ଅନାବୃଷ୍ଟି ଓ ରାଶିଫଳ ଅନୁଯାୟୀ ବ୍ୟକ୍ତିମାନଙ୍କ ସମ୍ପଦ ବିପଦର ଏକ ସଂକ୍ଷିପ୍ତ ଚିତ୍ର ପଞ୍ଜିକାର ପ୍ରଦାନ କରେ ।

ମେଣ୍ଢାକୁଡ଼ିଆ ଜନ୍ମିଲାବେଳେ ଯେଉଁ ଆଡ଼କୁ ଚଲେ, ସିଆଡ଼େ ଫସଲ ଭଲ ହୁଏ ବୋଲି ଲୋକବିଶ୍ୱାସ ପ୍ରଚଳିତ । ଶୁକ୍ଳ, କୃଷ୍ଣ ବା ଲୋହିତ କେଉଁ ବର୍ଣ୍ଣର ଧାନ୍ୟ ଭଲ ହେବ ତାହା ପଞ୍ଜିକାର ପ୍ରକାଶ କରିଥାଏ । ବନ୍ୟା ବା ଦୁର୍ଭିକ୍ଷ ହେବ କି ନାହିଁ, ରାଷ୍ଟ୍ର ବା ସମାଜ ଉପରେ କିଛି ବିପତ୍ତି ପଡ଼ିବ କି ନାହିଁ, ମେଷ, ବୃଷ, ମିଥୁନାଦି ରାଶି, ବିଶାଖା, ପୁନର୍ବସୁ ମୃଗଶିରା ପ୍ରଭୃତି କେଉଁ ନକ୍ଷତ୍ରରେ ଏ ବର୍ଷ କେତେ ଆୟବ୍ୟୟ, ଲାଭକ୍ଷତି, କେଉଁ ଋତୁରେ ବିଭାବ୍ରତ, ଗୃହନିର୍ମାଣ, ଦେଉଳ ଅଟ୍ଟାଳୀ କୂପ ପୁଷ୍କରିଣୀ ପ୍ରତିଷ୍ଠା, ଯାଗଯଜ୍ଞ ଯୋଗ ରହିଅଛି ନାହାକ ତାହା ପ୍ରକାଶ କରେ ।

ଦୋଳ କୃଷି ସଭ୍ୟତାର ବିଶେଷ ସଙ୍କେତ ବହନ କରେ । ପାଞ୍ଜି ସାମାଜିକ ଜୀବନଯାତ୍ରାର ସୂଚି, ଯାବତୀୟ ଲୋକ ଚଳଣି ଓ ବିଶ୍ୱାସର ଆଧାର, ପ୍ରାଣପ୍ରାଚୁର୍ଯ୍ୟଭରା ଲୋକସାହିତ୍ୟ । ଲୋକକଳ୍ପନା ଏଥିରେ ଚୂଡ଼ାନ୍ତ ରୂପେ ପ୍ରକାଶ ପାଇଛି । ଲୋକସାଧାରଣଙ୍କ ସ୍ଥାନ ଓ କାଳଜ୍ଞାନ, ଜଳ ଓ ସ୍ଥଳ ଜ୍ଞାନ, ଦୂରତା ଓ ନୈକଟ୍ୟ ଜ୍ଞାନ ଏଥିରେ ପରିସ୍ଫୁଟ ହୋଇଅଛି ।

ଲୋକପଞ୍ଜିର ଭାଷା ନୁହେ ଗଦ୍ୟ, ନୁହେ ପଦ୍ୟ । ବହୁ ଅସମାପିକା କ୍ରିୟା ଯୋଗରେ ଗୋଟିଏ ଗୋଟିଏ ଦୀର୍ଘ ବାକ୍ୟ ରଚିତ ହୋଇଅଛି; ସତେ ବା ବାଣଭଟ୍ଟୀ ଗଦ୍ୟ, କିନ୍ତୁ ଦେଶଜ ଶବ୍ଦରେ ଭରି । ଏହି ଅସଂଖ୍ୟ ଅସମାପିକା କ୍ରିୟାରେ ହିଁ ପଦ୍ୟର ମେଳ ରହିଅଛି; ତେଣୁ ତାହାର ଆବୃତ୍ତି କଲାବେଳେ ଦାଣ୍ଡି ବୃତ୍ତରେ ପୁରାଣ ପାଠ କଲାପରି ଜଣାପଡ଼େ । ଅଗଣିତ ଅସମାପିକା କ୍ରିୟା ଶୁଣିଲା ପରେ ବୋଧ ହୁଏ—ଜୀବନ ଯେପରି କି ଅପରନ୍ତ, ତାର ପୂର୍ଣ୍ଣଚ୍ଛେଦ ନାହିଁ ।

ତଳେ ଲୋକମାଦଳାର ଯଥାଶ୍ରୁତ ଉଦ୍ଧୃତ ଦିଆଗଲା ।

"ଶ୍ରୀ ଜଗନ୍ନାଥ ହରି, ଭକ୍ତମାନଙ୍କୁ ଉଦ୍ଧାରଣ କରି, ବୈକୁଣ୍ଠପୁର ଉପେକ୍ଷି ଗୋପପୁରେ ଜନ୍ମ ହୋଇ କଂସ କେଶୀ ଯାମଳା ଅଷ୍ଟମଲ୍ଲ ମାରି, ଗୋବର୍ଦ୍ଧନ ଗିରି ବାମ କରେ ଧରି ଇନ୍ଦ୍ର ଗର୍ବ ଚୂର୍ଣ୍ଣ କରି ମହା ଭୀତି ନିବାରଣ କରି, ଶ୍ରୀ ବୃନ୍ଦାବନେ ଗୋପୀ ଗୋପାଳ ଭକ୍ତ ଘେନି ଇନ୍ଦ୍ରାଦି ଗନ୍ଧର୍ବ ଶ୍ରୀ ପାଦପଦ୍ମେ ସେବା କରି ଅବିର ଘେନି ଶ୍ରୀ ଅଙ୍ଗେ ଲେପନ କରି କନକବର୍ଣ୍ଣ ଛତ୍ର ଧରି ବାମେ ମହାଲକ୍ଷ୍ମୀ ଡାହାଣେ ମାହେଶ୍ୱରୀ ମଧ୍ୟରେ ଶ୍ରୀ ବ୍ରହ୍ମାଙ୍କୁ ସଙ୍ଗେ ଘେନି ଫାଲ୍‌ଗୁନ ଶୁକ୍ଳ ପୂର୍ଣ୍ଣିମୀ ଦିନ ଦୋଳ ମଣ୍ଡଳେ ବିଜେ କରି ବୌଦ୍ଧ ରୂପେ ହରି ଶଙ୍ଖଚକ୍ର ଗଦା ପଦ୍ମ ଚତୁର୍ଭୁଜ କରେ ଧରି ଦୋଳ ଖେଳୁ ଅଛନ୍ତି ଶ୍ରୀହରି ।

ଏମନ୍ତ ସମୟେ ଦୈବଜ୍ଞ ପୁରୁଷ ବୃହସ୍ପତିଙ୍କୁ ହକାରି ତାହାଙ୍କୁ ତାମ୍ବୁଲାକ୍ଷତ ଶାଢ଼ୀ ସୁନାବଳା ଦେଇ ଶ୍ରୀମୁଖେ ଆଜ୍ଞା ଦେଲେ—କହ ହେ ଦୈବଜ୍ଞ ପୁରୁଷ ବୃହସ୍ପତି, ଶ୍ରୀ ନବତନ ଜ୍ୟୋତିଶାସ୍ତ୍ର ପାଳକ ପାଞ୍ଜି, ଆଗତ ଭବିଷ୍ୟ, ଗ୍ରହଣ ସନ୍ନିସ୍ଥିତ ବିଧିବ୍ରତ, ସଂସାର ଭଲ ମନ୍ଦ, ବାରରାଶି, ଆୟୁ ବ୍ୟୟ ନବ ଜଳ ଚନ୍ଦ୍ର କହିବା ହେଉ ।

ଶ୍ରୀ ଠାକୁରଙ୍କ ଶ୍ରୀ ମୁଖରୁ ଏସନ ବାଣୀ ଶୁଣି, ଦୈବଜ୍ଞ ପୁରୁଷ କହୁ ଅଛନ୍ତି ବାଣୀ, ଦେବାଧି ଦେବରାଜ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ସକଳ ବିଷୟ ଜ୍ଞାତ ନବତନ ଜ୍ୟୋତିଶାସ୍ତ୍ର ପାଳକ ପାଞ୍ଜିକ ସାବଧାନ ହୁଅନ୍ତୁ ମଣିମା ଭୋକେ ।

ଶ୍ରୀ ଜମ୍ବୁଦ୍ୱୀପେ ଭରତଖଣ୍ଡ ମଧ୍ୟରେ ଉତ୍କଳ ଦେଶରେ ବିରଜାମଣ୍ଡଳରେ ପୁରୁଷୋତ୍ତମ କ୍ଷେତ୍ରରେ ଶଙ୍ଖନାଭି ମଧ୍ୟରେ ବଡ଼ ଦେଉଳ, ଉତ୍ତର ପାର୍ଶ୍ୱରେ ବାରବାଟୀ ଚୁଡ଼ଙ୍ଗ ମଣ୍ଡପରେ କାଶୀକ୍ଷେତ୍ର, ମଥୁରା ବୃନ୍ଦାବନ, ଅଯୋଧ୍ୟା, ଦ୍ୱାରକା ପଞ୍ଚତୀର୍ଥ ମଧ୍ୟରେ ଭୁବନେଶ୍ୱର କ୍ଷେତ୍ର ଆଦି କରି ମହୋଦଧି ଉତ୍ତର ପାରୁଶରେ ଦୋଳମଣ୍ଡପୋପରି, ବିଜେ କରିଅଛନ୍ତି ଶ୍ରୀହରି ।”

ଓଡ଼ିଶାର ଗ୍ରାମେ ଗ୍ରାମେ ଏହିଭଳି ମାଦଳାପାଞ୍ଜି ଦୋଳବେଦୀ ପାର୍ଶ୍ୱରେ ଆବୃତ୍ତି ହେଉଅଛି, ମୋଗଲବନ୍ଦୀ ପରି ଗଡ଼ଜାତରେ ଯଦିବା ଏହା ବ୍ୟାପକ ନୁହେ । ଜଗନ୍ନାଥ ଓ ଜଗନ୍ନାଥସଂସ୍କୃତି ଆମ ଜାତୀୟ ଐକ୍ୟର ଏକ ମହାନ୍ ଯୋଗସୂତ୍ର । ମୂଳ ମାଦଳା ପାଞ୍ଜିରୁ ହିଁ ଏତ ଶାଖା ଧୀରେ ଧୀରେ ଗ୍ରାମାଞ୍ଚଳକୁ ପ୍ରସାରିତ ହୋଇଅଛି । ନାହାକମାନେ ପ୍ରତିବର୍ଷ ପୁରୀ ଯାଇ ପାଞ୍ଜି ଲେଖି ଆଣନ୍ତି । ପରମ୍ପରାକ୍ରମେ ଏହି ରୀତି ଚାଲି ଆସୁଛି । କିନ୍ତୁ ପଲ୍ଲୀର ଏହି ପାଞ୍ଜି ମାଦଳା ପାଞ୍ଜିର ନକଲ ନୁହେଁ ।

ଜଗନ୍ନାଥ ସବୁ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ । ଅନ୍ୟ ଦେବଦେବୀମାନେ ତାଙ୍କର ସେବକ ସେବିକା ମାତ୍ର । ଲୋକ ସଂସ୍କୃତିରେ ଜଗନ୍ନାଥ ସର୍ବୋତ୍ତମ ଦେବତାରୂପେ ପ୍ରତିଷ୍ଠିତ ହୋଇଅଛନ୍ତି । ଲୋକମାଦଳାର ପ୍ରଥମାଂଶର ବାକ୍ୟ ଅତି ଦୀର୍ଘ, କିନ୍ତୁ ନିମ୍ନୋଦ୍ଧୃତ ବାକ୍ୟସବୁ ମାଦଳା ପାଞ୍ଜିର ବାକ୍ୟ ପରି କ୍ଷୁଦ୍ର, ଭାଷା ବଳିଷ୍ଠ ଓ ଉତ୍କୃଷ୍ଟ ଭାବ ପ୍ରକାଶକ । ଭକ୍ତ ଗଦ୍‌ଗଦ ଭାବାବେଗରେ ମନ ସ୍ୱାଭାବିକ ଭାବରେ ଆବିଷ୍ଟ ହୁଏ ।

“ଏମନ୍ତ ସମୟେ ତେତିଶ କୋଟି ଦେବତା ଯେ ଯାହା ସେବାରେ ଖଟି ଅଛନ୍ତି । ବ୍ରହ୍ମା ଲିକ୍ଷେ କାମିନୀ ଯେଜନ ଆଳତି ବନ୍ଦାପନା କରୁଅଛନ୍ତି । ଲକ୍ଷ୍ମୀ ସରସ୍ୱତୀ ବୀଣାଯନ୍ତ୍ର ଯେନ ନୃତ୍ୟ ଗୀତ କରୁଅଛନ୍ତି । ଗଙ୍ଗାଦେବୀ ସୁବର୍ଣ୍ଣ ଝରିରେ ନୀର ଯେନ ଶ୍ରୀ ପାଦପଦ୍ମ ପ୍ରକ୍ଷାଳନ କରୁଅଛନ୍ତି । ଶ୍ରୀ ନୀଳକଣ୍ଠେଶ୍ୱରେ କର୍ପୂର ଚନ୍ଦନ ବଢ଼ିଆଲାଗି କରାଉଅଛନ୍ତି । କୁବେର ଦେବତା ରତ୍ନ ଅଳଙ୍କାର ଲଗାଇ ଅଛନ୍ତି । ନାରଦ ମହାଋଷି ବୀଣାଯନ୍ତ୍ର ଯେନ ନୃତ୍ୟଗୀତ କରୁଅଛନ୍ତି । ସନକାଦି ମୁନିମାନେ ମିଳି ଦୋଳି ପହିଞ୍ଚାଇ ଅଛନ୍ତି । ପାତାଳେଶ୍ୱରେ ଶ୍ରୀଅଙ୍ଗକୁ ପୁଷ୍ପବୃଷ୍ଟି କରାଉଅଛନ୍ତି । କ୍ଷେତ୍ରାଦି ଲୋକେଶ୍ୱର ଦେବତା ଶ୍ରୀ ଶ୍ରୀମୁଖରେ ତିନପୁର ବାରତା ଜଣାଣ କରୁଅଛନ୍ତି । ମଞ୍ଚ ନୃପତି ଧବଳ ଛତ୍ର ତଳେ ଉଭା ହୋଇଅଛନ୍ତି । ଗନ୍ଧର୍ବ ଅପ୍‌ସରାମାନେ ମିଳି ଶ୍ରୀମୁଖରେ ନୃତ୍ୟଗୀତ କରୁଅଛନ୍ତି । କାକଟପୁର ମଙ୍ଗଳା କରପତ୍ର ଯୋଡ଼ି ଆଗରେ ଉଭା ହୋଇଁଅଛନ୍ତି । ତେତିଶକୋଟି ଯୋଗିନୀ ନବକୋଟି କାତ୍ୟାୟିନୀ ଖଡ଼୍‌ଗ ଖର୍ପରି ଧରି ଶ୍ରୀମୁଖରେ ଆଜ୍ଞା ମାଗୁଅଛନ୍ତି— ଜୟତୁ ବଳରାମ, ସୁଗ୍ରୀବ ସ୍ଥାପନ, ବାଲୀକି ନିସ୍ତାରଣ, ଅହଲ୍ୟା ତାରଣ, ଜୟତୁ

ପରମାନନ୍ଦ ହରି, ଶ୍ରୀ ନବଘନ ପାଳକ ପାଞ୍ଜିକି ସାବଧାନ ହୋଅନ୍ତୁ ମଣିମା ଭୋଳେ ।"

ତତ୍ପରେ ପଞ୍ଜିକାର ଚୈତ୍ରେ ରାମନବମୀ, ବୈଶାଖେ ଚନ୍ଦନ, ଜ୍ୟେଷ୍ଠେ ଦେବସ୍ନାହାନ, ଆଷାଢ଼େ ଶ୍ରୀଗୁଣ୍ଡିଚା, ଶ୍ରାବଣେ ବଳଭଦ୍ରଜନ୍ମ, ଭାଦ୍ରବେ ହରିଜନ୍ମ, ଆଶ୍ୱିନେ କୁମାରୋତ୍ସବ, କାର୍ତ୍ତିକେ ରାଇଦାମୋଦର, ମାର୍ଗଶିରେ ଓଢ଼ଣଷଷ୍ଠୀ, ପୁଷେ ପୁଷ୍ୟ ଅଭିଷେକ, ମାଘେ ମକର, ଫାଲ୍‌ଗୁନେ ଚୈତନ୍ୟଜନ୍ମ, ଦୋଳଯାତ୍ରା ଏହିପରି ବାରମାସରେ ତେର ଯାତ୍ରା, ବାର ପୂର୍ଣ୍ଣିମା, ବାର ଅମାବାସ୍ୟା, ବାର ସଂକ୍ରାନ୍ତି, ପନ୍ଦର ତିଥି, ଶତାଇଶ ନକ୍ଷତ୍ର, ବାର ଚନ୍ଦ୍ର, ଏଗାର କରଣ, ଲବଣ, ଇକ୍ଷୁ, ସୁରା, ସର୍ପୀ, ଦଧି, ଦୁଗ୍ଧ ପ୍ରଭୃତି ସପ୍ତ ସମୁଦ୍ରର ବର୍ଣ୍ଣନା ଦେଇଛନ୍ତି । ତତ୍ପରେ ମର୍ତ୍ତ୍ୟର ମନୁଷ୍ୟ ଓ ସ୍ୱର୍ଗର ଦେବତାଙ୍କ ଆପେକ୍ଷିକ କାଳବୋଧର ସୂଚନା ଦେଇଅଛନ୍ତି ।

"ଏତେକ ଉତ୍ତାରୁ ଚାରିଯୁଗ ଆଦିକରି ସତ୍ୟ, ତ୍ରେତୟା, ଦ୍ୱାପର, କଳି ଚଉଦ ଗଣ୍ଡାରେ କଲେ ବୋଲି, ଏମନ୍ତ ଏକସ୍ତରି କଳିରେ ବ୍ରହ୍ମାଙ୍କ ଦିବସେ ହୁଅଇ, ଏମନ୍ତେ ଚଉଦ ମନୁରେ ବ୍ରହ୍ମାଙ୍କ ବେଳ ଭୋଗ ହେଲା ଅର୍ଦ୍ଧଦଣ୍ଡେ, ଈଶ୍ୱରଙ୍କ ଭୋଗ ହେଲା ମୁହୂର୍ତ୍ତେ, ନିରାକାରଙ୍କ ଭୋଗ ହେଲା କ୍ଷଣେ; ଏହିରୂପେ ପୃଥିବୀ ଆତଯାତ ହେଉଛି ।

ପୃଥିବୀରୁ ଗ୍ରହନକ୍ଷତ୍ରର ଦୂରତା ଲୋକକଳ୍ପନାରେ ଅନୁରଞ୍ଜିତ ହୋଇ ପାଞ୍ଜିରେ ରୂପ ନେଇଛି, ବର୍ତ୍ତମାନ ବୈଜ୍ଞାନିକ ଦୃଷ୍ଟିରେ ଏହା ଭ୍ରାନ୍ତ ହେବା ବିସ୍ମୟକର ନୁହେଁ । ଚନ୍ଦ୍ର ପୃଥିବୀର ଗୋଟିଏ ଉପଗ୍ରହ ଲୋକେ ଏହା ଜାଣିପାରି ନାହାନ୍ତି । ପୃଥିବୀରେ ଛିଡ଼ା ହୋଇ ଦୂରତା ଜାଣିବା ଚେଷ୍ଟାରେ ଭଗବାନ ସ୍ୱର୍ଗକୁ ଆଙ୍ଗୁଠି ବଢ଼ାଇବା ଓ ଆଙ୍ଗୁଠି ପୋଡ଼ିଯିବା କିମ୍ବା ସ୍ୱର୍ଗରେ ଥାଇ ସବୁ କୋଇଲିତା ସୂତା ଯୋଡ଼ିଲେ ସୁଦ୍ଧା ପୃଥିବୀକୁ ନ ପାଇବା ପ୍ରଭୃତି ଲୋକବିଶ୍ୱାସ ମଧ୍ୟ କୌତୁକପ୍ରଦ । ସୂର୍ଯ୍ୟ; ଚନ୍ଦ୍ର, ନକ୍ଷତ୍ର, ସ୍ୱର୍ଗ, ମୃତ୍ୟୁଲୋକ, ବ୍ରହ୍ମାଲୋକ ଓ ବିଷ୍ଣୁଲୋକ ପ୍ରଭୃତିର ଦୂରତା ଏହି ପ୍ରକାରେ ସ୍ଥିର ହୋଇଛି—

ସୂର୍ଯ୍ୟ ଦେବତା ଉଦେ ଲକ୍ଷେ ଯୋଜନ, ଚନ୍ଦ୍ର ଦେବତା ଉଦେ ଦୁଇଲକ୍ଷ ଯୋଜନ, ନକ୍ଷତ୍ରମାନେ ଉଦେ ତିନିଲକ୍ଷ ଯୋଜନ, ତେଣୁ କରି ଏହାଙ୍କ କିରଣ ଅଳ୍ପ ଅଳ୍ପ ଦୃଶ୍ୟ ହୁଏ । ଚାରିଲକ୍ଷ ଯୋଜନେ ଯମଭୁବନ; ସାତଲକ୍ଷ ଯୋଜନେ ଗୋଲକ ମଣ୍ଡଳ, ଆଠଲକ୍ଷ ଯୋଜନେ ବ୍ରହ୍ମାଙ୍କ ମଣ୍ଡଳ, ନବଲକ୍ଷ ଯୋଜନେ ନିରାକାର ମଣ୍ଡଳ, ଦଶଲକ୍ଷ ଯୋଜନେ ନିରାକାର ସ୍ଥାନ ।

ଏହାପରେ ପଞ୍ଜିକାର ଇତିହାସ ଆଡ଼କୁ ଗତି କରିଛନ୍ତି, ଏହା ଭାରତ ବର୍ଷର, ଆଂଶିକ ଭାବରେ ଉତ୍କଳର ଇତିହାସ, ପାଞ୍ଜିର ଭାରତବର୍ଷ ଗୋଟିଏ ପୃଥିବୀ—ନବଖଣ୍ଡ ମେଦିନୀ । ଇତିହାସ ବୋଲି ଯାହା ଦିଆଯାଇଛି ତାହା ଅଧିକାଂଶରେ ପୁରାଣ, ପାଞ୍ଜିରେ ଦିଆଯାଇଥିବା ଇତିହାସ ପୁରାଣରୁ ସଂଗୃହୀତ ହୋଇଅଛି । ଓଡ଼ିଶାର ଇତିହାସ ସହିତ ଦ୍ୱିତୀୟାଂଶର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ଭାରତବର୍ଷରେ ଇତିହାସ ସଚେତନତା ନଥିଲା କହିବା ଯଥାର୍ଥ ନୁହେଁ । ଇତିହାସ ଉପରେ ଲୋକେ କେତେ ଗୁରୁତ୍ୱ ଦେଉଥିଲେ ପଲ୍ଲୀର ପଞ୍ଜିକା ତାହା କିଞ୍ଚିତ୍ ପ୍ରମାଣ କରେ । ପଲ୍ଲୀ ମାଦଳା ସହିତ ଜଗନ୍ନାଥଙ୍କ ମନ୍ଦିର ମାଦଳାତର ଐତିହାସିକ ଅଂଶରେ ଯଥେଷ୍ଟ ସାମ୍ୟ ରହିଛି ।

ସତ୍ୟ ଯୁଗରୁ ପଞ୍ଜି ମତରେ ଇତିହାସର ଆରମ୍ଭ ହୋଇଅଛି । ସତ୍ୟ ଯୁଗରେ ବଳି, ବେଣ୍ଣ, ଶିବ, ମାନଧାତା, ପୁରୁରବା, ଜାନୁଦଣ୍ଡ ରାଜତ୍ୱ କରିଛନ୍ତି । ପ୍ରତ୍ୟେକଙ୍କର ରାଜତ୍ୱକାଳ ଲକ୍ଷାଧିକ ବର୍ଷ, ଯାହା ଅସମ୍ଭବ ବୋଧହୁଏ । ସେକାଳ ମନୁଷ୍ୟମାନେ ଅଠାଇଶ ହାତ ଉଚ୍ଚ ଥିଲେ । ସୁବର୍ଣ୍ଣ ପାତ୍ରରେ ଭୋଜନ କରୁଥିଲେ, ପୃଥିବୀ ଧନଧାନ୍ୟରେ ପୂର୍ଣ୍ଣ ଥିଲା । ସତ୍ୟ ଚାରିପାଦ ଥିଲା । ମିଥ୍ୟା ନାସ୍ତି । ତ୍ରେତୟା ଯୁଗରେ ଲୋକେ ଚଉଦ ହାତ ଦୀର୍ଘ ଥିଲେ । ସତ୍ୟ ତିନିପାଦ ଓ ମିଥ୍ୟା ଏକପାଦ ଥିଲା । ଲୋକେ ରୌପ୍ୟପାତ୍ରରେ ଭୋଜନ କରୁଥିଲେ । ଏ ଯୁଗରେ ମଇନ୍ଦ୍ରଦେବ କଶ୍ୟପ, ଦଳୀପ, ସୂର୍ଯ୍ୟଦେବ, ହରିଚନ୍ଦନ, ଗାନ୍ଧାର, ସଗର, ଭଗୀରଥ, ଅଜ, ଦଶରଥ, ରାମ ପ୍ରଭୃତି ରାଜା ପ୍ରତ୍ୟେକ ସହସ୍ର ବର୍ଷରୁ ଅଧିକ ରାଜତ୍ୱ କରିଥିଲେ । ଦ୍ୱାପର ଯୁଗରେ ଦୁଷ୍ମନ୍ତ, ଭରତ, ଶାନ୍ତନୁ, ବିଚିତ୍ରବୀର୍ଯ୍ୟ, ପଣ୍ଡୁ, ଯୁଧିଷ୍ଠି, ଦୁର୍ଯ୍ୟୋଧନ ପ୍ରଭୃତି ତିରିଶ ଜଣ ରାଜା ରାଜତ୍ୱ କରିଥିଲେ । ଲୋକେ ସାତହାତ ଦୀର୍ଘ ଥିଲେ । ତାମ୍ର ପାତ୍ରରେ ଭୋଜନ କରୁଥିଲେ । ସତ୍ୟ ଦୁଇପାଦ, ମିଥ୍ୟା ଦୁଇପାଦ ଥିଲା । ପରୀକ୍ଷିତ ମହାରାଜଙ୍କ ରାଜତ୍ୱ ସଙ୍ଗେ କଳିଯୁଗର ଆରମ୍ଭ ହେଲା । କଳିଯୁଗ ଚାରିଲକ୍ଷ ବତିଶ ସହସ୍ର ବରଷ । ପରୀକ୍ଷିତଙ୍କୁ ତକ୍ଷକ ଦଂଶନ କଲା । ତାଙ୍କ ପୁତ୍ର ଜନ୍ମେଜୟ ସର୍ପଯଜ୍ଞ କଲେ । ତତ୍ପରେ ଇନ୍ଦ୍ରଦ୍ୟୁମ୍ନ, ଗାଲମାଧବଙ୍କ ବିବାଦ, ଲାଙ୍ଗୁଳା ନରସିଂହଦେବ (ଏ ରାଜା ପଛରେ ଲାଙ୍ଗୁଡ଼ଟିଏ ବାନ୍ଧୁଥିଲେ), କପିଳେଶ୍ୱରଦେବ, ମାହାଳିଆ ମୁକୁନ୍ଦ ଦେବଙ୍କଠାରୁ ବର୍ତ୍ତମାନ ପୁରୀ ରାଜାଙ୍କ ପର୍ଯ୍ୟନ୍ତ ରାଜାମାନଙ୍କ ରାଜତ୍ୱ, ପ୍ରଧାନ କୀର୍ତ୍ତି, ଦୁର୍ଭିକ୍ଷ ବତ୍ୟାତର ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହୋଇଅଛି । ଇତିହାସ ଦୃଷ୍ଟିରୁ ଏହାର କ୍ରମ ଠିକ୍ ନାହିଁ ।

ମାଦଳାର ଜଗନ୍ନାଥ ସର୍ବମୟ, ସର୍ବେଶ୍ୱର, ସେ ଉତ୍କଳର ରାଜ-ଚକ୍ରବର୍ତ୍ତୀ । ବୀରଧିବୀରବର ନବକୋଟୀକର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ରାଜା ତାଙ୍କର

ଆକାଂକ୍ଷା ମାତ୍ର । ରାଜସିଂହାସନରେ ସ୍ୱୟଂ ଧର୍ମ ହିଁ ପ୍ରତିଷ୍ଠିତ । ରାଜା ଧନ ବା କ୍ଷମତାରେ ଥାଇ ଅହଙ୍କାର କରି ନ ପାରନ୍ତି । ପ୍ରଜା ରାଜଭକ୍ତ, ତାର ଜୀବନ ରାଜାଙ୍କ ଜୀବନ ସହିତ ଏକ ସୂତ୍ରରେ ଗ୍ରଥିତ । ସେହିପରି ପ୍ରଜାର ଗୃହେ ଗୃହେ ଦେବତା—ଇଷ୍ଟଦେବତା । ଗୃହସ୍ଥ ତାଙ୍କର ଆକାଂକ୍ଷା ମାତ୍ର । ଭୌତିକ ବିଭବରେ ଅଭିଭୂତ ହୋଇ ସେ ଦମ୍ଭ, ଅଭିମାନ ପ୍ରକାଶ କରିନ ପାରନ୍ତି । ପୁଣି ରାଜାଙ୍କ କେଉଁ ଅଙ୍କର କେତେ ଦିନରେ କେତେ ଦଣ୍ଡ କେତେ ପଳ ବିଳତାରେ ଶିଶୁର ଜନ୍ମ ତାହା ଚାରି ଜାତକରେ ଉଲ୍ଲିଖିତ ହୋଇଥାଏ । ମୋଗଲ ମରହଟ୍ଟା ବ୍ରିଟିଶ୍ ରାଜତ୍ୱରେ ବି ଦେଶାତ୍ମବୋଧ ଓ ଏକାନ୍ତ ରାଜଭକ୍ତିର ଏହି ସଙ୍କେତ ପ୍ରକଟିତ ହୋଇଆସିଅଛି । ଉତ୍କଳୀୟ ସଂସ୍କୃତିର ଏହି ବୈଶିଷ୍ଟ୍ୟ ଅବଶ୍ୟ ଲକ୍ଷଣୀୟ । ଏକ ଦିଗରେ ଜଗନ୍ନାଥ ଓ ଅନ୍ୟ ଦିଗରେ ରାଜା ।

ତେଣୁ ଲୋକ ଜୀବନନାଟକ ଅଭିନୟରେ ଗଣକ ବା ଜ୍ୟୋତିର୍ଷୀର ସ୍ଥାନ ନଗଣ୍ୟ ନୁହେଁ । ମଙ୍ଗଳାଷ୍ଟକ ପାଠଠାରୁ ଜାତକ ଗଢ଼ିବା, କର୍ଣ୍ଣବେଧ, ବ୍ରତୋପନୟନ, ଜାତକ ମେଳ, ବିବାହ; ହୋମଯଜ୍ଞ; ଗୃହପ୍ରତିଷ୍ଠା ଆଦି ଯାବତୀୟ ମଙ୍ଗଳ କର୍ମରେ, ଖଡ଼ି ପକାଇ ଆଗତ ଭବିଷ୍ୟ କହିବାରେ, ଫୁଲଟିର ନାମ କହି କାର୍ଯ୍ୟ ସିଦ୍ଧି ହେବ କି ନହେବ କହିବାରେ, ବ୍ୟାଧିହେଲେ ଜାତକ ସାଧି ଗ୍ରହଶାନ୍ତି ହୋମ କରିବାରେ ନାହାକର ପ୍ରୟୋଜନ ହୋଇଥାଏ ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ମାଦଳା ପାଞ୍ଜି ପୁସ୍ତକରେ ଅନ୍ୟ ଏକ ପାଞ୍ଜି ସଂକଳନ କରିଛନ୍ତି, ଏହା ଗଞ୍ଜାମ ଜିଲ୍ଲାରୁ ସଂଗୃହିତ ଓ ବହୁ ଭ୍ରମ ପ୍ରମାଦ ପୂର୍ଣ୍ଣ ବୋଲି ମୁଖବନ୍ଧରେ ଲେଖିଛନ୍ତି । ବହୁ ଅଶିକ୍ଷିତ ନାହାକ ଲେଖକଙ୍କ ଲେଖନୀରେ ଏହାର ବିଷୟ କ୍ରମ ଓଲଟ ପାଲଟ ହେବା, ଅନେକ ଘଟଣା ବାଦ ପଡ଼ିଯିବା, ପୁନରୁକ୍ତି ଓ ପ୍ରମାଦ ଘଟିବା ବିଚିତ୍ର ନୁହେ । ବର୍ଷକୁ ବର୍ଷ ନାହାକ ନୂତନ ପାଞ୍ଜିରୁ, ପାଳକ, ବାର୍ଷିକ ରାଶିଫଳ ପ୍ରଭୃତି ଟିପିଆଣି ପାଠକରେ । ପୂର୍ବ ବର୍ଷ ଏ ଅସ୍ଥାୟୀ ଅଂଶକୁ ବାଦ୍ ଦେବାକୁ ପଡ଼େ, ପ୍ରାଚୀନ ପୌରାଣିକ ଓ ଐତିହାସିକ ଅଂଶ ନୂତନ ତାଳପତ୍ର ଖେଦାରେ ପୁନର୍ଲିଖିତ ହୁଏ ।

ପୁଣି ଜଣେ ନାହାକଙ୍କୁ ବିଭିନ୍ନ ଗ୍ରାମର ଦୋଳବେଦୀରେ ପାଞ୍ଜି ପାଠ କରିବାକୁ ପଡ଼େ । ସେ ହୁଏତ ଲେଖାରୁ ସଂକ୍ଷିପ୍ତ କରି ଦେଇଥିବ, ପୁରୋହିତେ ବିବାହବେଦୀରେ ମନ୍ତ୍ର ବାଦ୍ ଦେଲା ପରି । ବଳି, ମାନ୍ଧାତା, ହରିଶ୍ଚନ୍ଦ୍ର, ଯୁଧିଷ୍ଠିର ଓ ପରୀକ୍ଷିତ ମହାରାଜାଙ୍କ ବିସ୍ତୃତ ଚରିତ ଲୋକେ ପୁରାଣରୁ ଶୁଣିଛନ୍ତି, ପିତୃ ପୁରୁଷଙ୍କ ଶୁଷ୍କ ଇତିହାସ ଜାଣିବାକୁ ମଧ୍ୟ ସେ ଭଳି ଆଗ୍ରହ ପ୍ରକାଶ ପାଏ ନାହିଁ । ବର୍ଷର ରାଶିଫଳ, ବର୍ଷା, ଫସଲ, ଧୋଇ, ମରୁଡ଼ି, ବିଷ୍ଟି ବିତ୍ପାତ ଉପରେ ହିଁ

ଲୋକଦୃଷ୍ଟି ନବଦ୍ଧ । ତେଣୁ ମାଦଳା ପାଞ୍ଜି ସଂକ୍ଷିପ୍ତ ହୋଇଯିବା ବା ଲୌକିକ ବୈଶିଷ୍ଟ୍ୟ ହାସଲ କରିବା କିଛି ବିଚିତ୍ର ନୁହେଁ । ପାଣ୍ଡବ ବଂଶ, କେଶରୀ ବଂଶ, ଚୁଡ଼ଙ୍ଗ ବଂଶ ବା ଗଙ୍ଗବଂଶ ଓ କୃଷ୍ଣମାନ ରାଜୁଡ଼ିର ନାମମାତ୍ର ଉଲ୍ଲେଖ ରହିଛି; ମୋଗଲ ବା ମରହଟ୍ଟା ରାଜତ୍ୱର ଉଲ୍ଲେଖ ରହିଛି । 'ଲୋକଙ୍କ ହୃଦୟକୁ ସ୍ପର୍ଶ କରିଥିଲା ଯେଉଁ କେତୋଟି ଘଟଣା ଅଦ୍ୟାପି ଲିପିବଦ୍ଧ ରହିଅଛି, ତାକୁ ନିମ୍ନ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ—(କ) ଧାର୍ମିକ (ଖ) ଅର୍ଥନୈତିକ (ଗ) ପୌରାଣିକ (ଘ) ରାଜନୈତିକ (ଙ) ସାମାଜିକ ।

(କ) ଇନ୍ଦ୍ରଦ୍ୟୁମ୍ନ ବଡ଼ ଦେଉଳ ତୋଳାଇବା, ଜଗନ୍ନାଥ ଥାପନା କରାଇବା; ଚୁଡ଼ଙ୍ଗଦେବ ଶାକ୍ତ ବଦଳରେ ଶୈବ ଧର୍ମ ଚଳାଇବା, କିନ୍ତୁ ଓଡ଼ିଶାରୁ ଶାକ୍ତ ଧର୍ମ ଲୋପ କରିବାକୁ ଅସମର୍ଥ ହେବା, ବିରଜା, କାଳିକା, କାମଚଣ୍ଡୀ, ସର୍ବମଙ୍ଗଳା, ଗୋସାଣୀଙ୍କୁ ବନ୍ଦୀ କରି ନ ପାରିବା, ଚଣ୍ଡକେଶରୀ ଭୁବନେଶ୍ୱର ଦେଉଳ ତୋଳାଇବା ( ? ), ଚୁଡ଼ଙ୍ଗଦେବ ଯାଜପୁର ଦେଉଳ ତୋଳାଇବା, ଅଲରନାଥଙ୍କୁ ବସାଇବା ପ୍ରଭୃତି ଏହି ପ୍ରସଙ୍ଗରେ ଉଲ୍ଲିଖିତ ହୋଇଅଛି ।

(ଖ) ଶଶାଙ୍କଦେବ ତେର୍ଙ୍କି, କପାଖାଇ, ଅରଟ, ଉଦ୍ଭାବନ କରିବା, କପିଳେଶ୍ୱର ଦେବଙ୍କ ଅମଳରେ 'ଗୃଉଳ ଅଡ଼ା ବାରପଣ' ହେବା, କାଳୁଆ ପ୍ରତାପଙ୍କ ଅମଳରେ ଦୁର୍ଭିକ୍ଷଯୋଗୁଁ ମଣିଷ ମାଉଁସ ମଣିଷ ଖାଇବା, ରାଜା ପ୍ରଭୁଙ୍କ ସିଂହାସନ ତଳେ ପାଗ ଥୋଇ ଗୁହାରି କରିବା ଫଳରେ ସ୍ୱର୍ଗରୁ ଗୃଉଳ ବୃଷ୍ଟି ହେବା କଳ୍ପନା ବା ଘଟଣା ଯେପରି କୌତୂହଳୋଦ୍ଦୀପକ ସେହିପରି ଭୟଙ୍କର । ନଅଙ୍କର ଲୋକକ୍ଷୟ ବିବରଣୀ ଲୋକଜୀବନ ସହିତ ନିବିଡ଼ଭାବେ ସଂପୃକ୍ତ ହୋଇ-ଥିବାରୁ ଅଦ୍ୟାପି ସଂରକ୍ଷିତ ହୋଇଅଛି ।

"ନଅଙ୍କ ସିଂହ ବାରଦନେ ଗୁପ୍ତ ମହର୍ଗ ପଡ଼ିଲା । ଟଙ୍କାକୁ ଗୃଉଳ ବାର ଅଡ଼ା ହେଲା । ଏ ଅଙ୍କରେ ବସୂଚିକାରେ ଦେଶଦେଶାନ୍ତରେ ମଲେ । ମହର୍ଗ ପଡ଼ିଲା । ଧାନ ଟଙ୍କା ତିନ ନଉତି ନ ମିଳିଲା । ବର୍ଷା ନାସ୍ତି । ଶସ୍ୟାଦି ନୋହିବାରୁ ସବୁ ମହର୍ଗ । ଦିବ୍ୟସିଂହଦେବ ନ' ଅଙ୍କରେ ତିନ ଲକ୍ଷ ଲୋକ ମଲେ । ଟଙ୍କାକୁ ଗୃଉଳ ଆଠଅଡ଼ା ହେଲା । ମାଣ୍ଡିଆ ୫ ହେଲା । କୁମ୍ଭୀର ଘର ଧର୍ମଛତ୍ର ଦେଲା । ବୋଇତ ପାଞ୍ଚଘର ଅଣାଇଲା । ଛତ୍ରଭାତ ଖାଇବା ପାଇଁ ପାଟଲୋକ ମିଶିଗଲେ । ୩୪ ଅଙ୍କରେ ପୁଷ୍କର ମେଘ ମହାବୃଷ୍ଟି କଲା । ଟଙ୍କାକୁ ଧାନ ଆଠ ନଉତି ଦର ହେଲା ।"

(ଗ) ହରିଶ୍ଚନ୍ଦ୍ରଙ୍କ ଦାନ, ଭଗୀରଥଙ୍କ ଗଙ୍ଗା ଆନୟନ, ରାମବନବାସ ଓ ରାବଣମାରଣ ପ୍ରଭୃତି ପୌରାଣିକ ଉପାଖ୍ୟାନ ସୂଚନା ମାତ୍ର ଦିଆଯାଇଛି । ବଳିଙ୍କ

ପାତାଳ ଗମନ ବିବରଣୀଟି ପୁଙ୍ଖାନୁପୁଙ୍ଖ ହୋଇଅଛି—"ଏ ରାଜାଏ ବଡ଼ ଚକ୍ରବର୍ତ୍ତୀ ହେଲେ । ସ୍ୱର୍ଗକୁ ଧାଡ଼ି ଦେଲେ । ଇନ୍ଦ୍ରାଦି ଦେବତାମାନେ ଗୁହାରି କଲେ ମହାପ୍ରଭୁଙ୍କୁ, ଦେବତାମାନଙ୍କ ଦୁଃଖ ଦେଖି ମହାପ୍ରଭୁ ଅବତାର ହେଲେ । ବଳିରାଜାଙ୍କ ଦୁଆରକୁ ଗଲେ । ମଞ୍ଚପୁରକୁ ଆଚ୍ଛାଦିଲେ ପାଦେ । ତାହା ଦେଖି ରାଜା ତରସ୍ତ ହେଲା । ବୋଇଲା ତୋହର ପାଦ ନାହିଁ, ମୋହର ଭୂମି ନାହିଁ । ତହିଁକି ମହାପ୍ରଭୁ ନାଭିରୁ ପାଦେ ଜାତ କଲେ । ସେ ପାଦ ଦେଖି ବଳିରାଜା ମସ୍ତକ ପୋତିଦେଲେ । ସେହି ପାଦେ ବଳିରାଜାଙ୍କୁ ପାତାଳ ଦିବ୍ୟପୁରେ ରଖିଲେ ।"

(ଘ) ରାଜାଙ୍କ ଦିଗ୍‌ବିଜୟଯାତ୍ରା ବା ରାଜ୍ୟଶାସନର ବିବରଣୀ ଏହି ପାଞ୍ଜିରେ ବିରଳ । କେବଳ ରାଜାମାନଙ୍କର ଏକ ନୀରସ ତାଲିକା, ରାଜତ୍ୱକାଳ, କେଉଁଠି କେଉଁଠି ମନ୍ଦିରନିର୍ମାଣ, ପୁଷ୍କରିଣୀଖନନ, ତୀର୍ଥଯାତ୍ରା ବା ଧର୍ମନାଶର ସୂଚନା ମାତ୍ର ଦିଆଯାଇଛି । କେବଳ ଚୁଡ଼ଙ୍ଗଦେବଙ୍କ ବିବରଣୀ କିଞ୍ଚିତ୍ ବ୍ୟାପକ —"ଏ ରାଜା ପ୍ରଥମ କଟକ କଲେ । ଅମରାବତୀ ପୁର ଗଲେ । ତୃତୀୟେ ରାଜ୍ୟର ଦ୍ୱାର କଲେ । ଚତୁର୍ଥେ ବାରାଣସୀ କଟକ ଗଲେ । ପଞ୍ଚମେ ଅଙ୍ଗଦେଶ କଲେ । ଷଷ୍ଠେ କାଶୀକ୍ଷେତ୍ର କରେ । ଏ ଗଙ୍ଗାଠାରୁ ଗୌତମୀ ପର୍ଯ୍ୟନ୍ତ ଏକଛତ୍ର କଲେ ।"

ମହାବୀର ନରସିଂହ, କପିଳେନ୍ଦ୍ର ବା ପୁରୁଷୋତ୍ତମଦେବଙ୍କ ବୀରତ୍ୱର ଚିତ୍ର ବା ଅମର କୀର୍ତ୍ତିକଳାପ ଏଥିରୁ ଅବଲୁପ୍ତ ହୋଇଅଛି । କେବଳ ତେଲେଙ୍ଗା ମୁକୁନ୍ଦଙ୍କ ଦକ୍ଷିଣ କଟକାଇ, ଗଙ୍ଗାରେ ନାବକେଳି, କଳାପାହାଡ଼ର ମନ୍ଦିର ଧ୍ୱଂସ, କୃଷ୍ଣାନନ୍ଦର ରାଜ୍ୟଅଧିକାର, କମ୍ବୀ ରାଜଗୁରୁଙ୍କ ଫାଶି ଘଟଣାର ସୂଚନା ଦିଆ-ହୋଇଛି ।

(ଙ) ପୁରୁଷୋତ୍ତମ ଦେବ 'କାଞ୍ଚିକାବେରୀ ମାରିବା', ସେଇ ରାଜାଙ୍କ ଝିଅ ପଦ୍ମାବତୀଙ୍କୁ ବିଭାହେବା, ଛୁଇଁଲେ ଦେହ ଫାଟିଯିବ ଜାଣି ମଧ୍ୟ ତାଙ୍କୁ ହରଣ କରିବା, ତତ୍‌କ୍ଷଣାତ୍ ଦେହ ଫାଟି ପୋକ ପଡ଼ିଯିବା, ପ୍ରାୟଶ୍ଚିତ୍ତ ଲାଗି ପଦ୍ମାବତୀ ପୋଖରୀ ଖୋଳାଇବା କପୋଳ କଳ୍ପିତ, ବହୁ ପ୍ରଚଳିତ କିମ୍ବଦନ୍ତୀ ସହିତ ଏହାର ମେଳ ନାହିଁ । ହୁଏତ ଗଙ୍ଗେଶ୍ୱରଦେବ ଓ କୌଶଲ୍ୟାରାଣୀ ପୁଷ୍କରିଣୀ ଖନନ କାହାଣୀ ଏହିପରି ପାତ୍ରାନ୍ତରିତ ହୋଇଅଛି ।

କଳିଯୁଗର ସାମାଜିକ ସ୍ୱରୂପ ଯୁଧିଷ୍ଠିରଙ୍କ ପ୍ରଶ୍ନ ଓ ସହଦେବଙ୍କ ଉତ୍ତରରେ ଏହିପରି ଭାବରେ ଫୁଟିଛି ।

"ବିଭୂତି ବିଲେପନ ହୋଇଛି । ଭିକ୍ଷାକୁ କାନ୍ଧରେ ବହିଅଛି । ମାତାଙ୍କୁ ହାତଧରି ଓଟାରୁଅଛି । ଏହା ଦେଖି ଯୁଧିଷ୍ଠିର ସହଦେବଙ୍କୁ ପଚାରିଲେ—ଏ କିଏ ସେ ଅଟେ ? ସହଦେବ ବୋଇଲେ—ହେ ପ୍ରଭୁ, କଳିଯୁଗ ଅଟଇ । ଏହାକୁ ବାନ୍ଧ ବୋଲି ଭୀମ ବୋଇଲେ, ଧାଇଁଯାଇ ଭୀମ ତାକୁ ଖଟଖୁରିରେ ବାନ୍ଧି ପକାଇଲେ ।"

ଆମ ଗ୍ରାମରେ ପ୍ରଚଳିତ ପାଞ୍ଜି ଓ ଗଞ୍ଜାମ ପାଞ୍ଜି ମଧ୍ୟରେ କିଛି ସାମଞ୍ଜସ୍ୟ ରହିଅଛି । ଲିଖନଶୈଳୀ, ଭାଷା ପ୍ରାୟ ଏକା ରକମର । ଯେଉଁଠି କାବ୍ୟିକ ଆବେଗ ଆସିଛି, ସେଠି ଅତି ଦୀର୍ଘ ବାକ୍ୟର ବ୍ୟବହାର ହୋଇଅଛି । କେବଳ ବିବରଣୀ ଲିପିବଦ୍ଧ ହେଉଥିବା ସ୍ଥଳେ ବାକ୍ୟ ଅତି କ୍ଷୁଦ୍ର । ସ୍ଥାନେ ସ୍ଥାନେ ଏହାର ସମ୍ମିଶ୍ରଣ ମଧ୍ୟ ହୋଇଅଛି—

"ଶୁଭମସ୍ତୁ ।......ଶ୍ରୀ ନୀଳଗିରି କନ୍ଦରେ, ବଡ଼ଦେଉଳ ଦକ୍ଷିଣ ପାର୍ଶ୍ୱରେ ବାରବାଟି ମଣ୍ଡୋପରେ ଚଉଡ଼ଙ୍ଗ ମଣ୍ଡଳ ପାଖେ ଶ୍ରୀପୁରୁଷୋତ୍ତମ ନାମ ମୁକ୍ତି ମଣ୍ଡପରେ ଶ୍ରୀଠାକୁରେ ଫାଲ୍‌ଗୁନ ଶୁକ୍ଳ ପୌର୍ଣ୍ଣମୀ ଦିନ ଦୋଳରେ ବିଜୟ କରିଅଛନ୍ତି । ତେତିଶ କୋଟି ଦେବତାଏ ବିଜୟେ କରିଅଛନ୍ତି । ବ୍ରହ୍ମା ଆସି ବେଦଧ୍ୱନି କରୁଅଛନ୍ତି । ଇନ୍ଦ୍ରଦେବ ପହଣ୍ଡି ମଣୋହି ଧରି ଉଭା ହୋଇଅଛନ୍ତି । ବରୁଣ ଦେବତା ରତ୍ନଭୃଙ୍ଗାର ଧରି ଶ୍ରୀଗ୍ରୀମୁରେ ଉଭା ହୋଇଅଛନ୍ତି । ରତ୍ନଝାରିରେ ଗଙ୍ଗାଦେବୀ ନୀର ଧରି ଉଭା ହୋଇଅଛନ୍ତି । ସୂର୍ଯ୍ୟଦେବ ସୁବର୍ଣ୍ଣ ବେତ ଧରି ପଡ଼ିଆରୀ ଗ୍ରୀମୁରେ ଉଭା ହୋଇଅଛନ୍ତି । ଯମଦେବତା ଖଦିରମୁରେ ପକାଉଛନ୍ତି । ନାରଦମହାମୁନି ବୀଣାଯନ୍ତ୍ର ବଜାଉଅଛନ୍ତି । ମାରକଣ୍ଡେଶ୍ୱର ଲିଙ୍ଗ ଚଉଦାଳ ପକାଉଅଛନ୍ତି । ଚିତ୍ରଗୁପ୍ତ ମାଦଳାପାଞ୍ଜି କାଖେ ଯାକିଛନ୍ତି । ମହାରୁଦ୍ର ଚନ୍ଦ୍ରଶେଖର ଉଭା ହୋଇଅଛନ୍ତି । ଚଉଷଠୀ ଯୋଗିନୀ, ନବକୋଟି କାତ୍ୟାୟନୀ ଯେ ଯାହାର ସେବାରେ ଖଟିଅଛନ୍ତି । ପଞ୍ଚରତ୍ନର ଦେବତାମାନେ ଶ୍ରୀଅଙ୍ଗକୁ ଫଗୁ ପକାଉଛନ୍ତି । ସେମନ୍ତ ସମୟେ ଶ୍ରୀଠାକୁରଙ୍କଠାକୁ ପୌର୍ଣ୍ଣମୀ ଯାତ୍ରା ଦେଖିବାକୁ ବୃହସ୍ପତି ଗ୍ରୀମୁରେ ଉଭା ହୋଇ ନବୀନ ପାଳକ ପାଞ୍ଜି ଶ୍ରୀଗ୍ରୀମୁକୁ ଅଇଲେ ।"

ମନ୍ଦିର ମାଦଳାପାଞ୍ଜିର ରଚନାକାଳ ଏ ପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । କେହି କେହି ଚୋଡ଼ଗଙ୍ଗଙ୍କ ସମୟରେ ଏହା ରଚିତ ହୋଇଥିଲା ବୋଲି ମତ ପ୍ରକାଶ କରିଛନ୍ତି । ଶିଳାଲେଖ ଓ ତାମ୍ରଫଳକ ସଙ୍ଗେ ପାଞ୍ଜିର ଐତିହାସିକ ଘଟଣା ମେଳ ଖାଉ ନଥିବାରୁ ଏହା ଅର୍ବାଚୀନ, ଏପରି କି ଊନବିଂଶ ଶତାବ୍ଦୀରେ ରଚିତ ବୋଲି କେହି କେହି କୁହନ୍ତି । ଷ୍ଟର୍ଲିଂ ସାହେବ ପୁରୀ ରାଜାଙ୍କୁ ଐତିହାସିକ ବିବରଣୀ ମାଗିବାରୁ ଏହା ସେ ପଣ୍ଡିତମାନଙ୍କ ସାହାଯ୍ୟରେ ରଚନା କରିଅଛନ୍ତି ବୋଲି ଅନୁମାନ କରାଯାଇ ପାରେ । କିନ୍ତୁ ଓଡ଼ିଶୀ ମାଦଳାର ହସ୍ତଲିପି ଦକ୍ଷିଣଭାରତରେ ମିଳିଛି । ଏହା ହୁଏତ ଗଜପତି ରାଜାଙ୍କ ଦିଗ୍‌ବିଜୟ-କାଳରେ ଭାଷାନ୍ତରିତ । ଗ୍ରାମ ମାଦଳାର ଭାଷାକୁ ଲକ୍ଷ୍ୟ କଲେ ମନେହୁଏ ଯେ

ଏହା ପାଞ୍ଚଶତ ବର୍ଷ ତଳର ରଚନା । ଓଡ଼ିଶାର ଗ୍ରାମେ ଗ୍ରାମେ ପାଞ୍ଜି ଶୁଣିବା ଏକ ଧର୍ମପ୍ରଥାରେ ପରିଣତ ହୋଇଅଛି । ଏପରି ହେବାକୁ ଦୀର୍ଘକାଳ ଲାଗିଥିବ । ତେଣୁ ପାଞ୍ଜି ବ୍ରିଟିସ୍ ଅମଳର ବୋଲି କହିଦେବାରେ କୌଣସି ଯଥାର୍ଥତା ନାହିଁ ।

ମାଦଳାପଞ୍ଜିରେ ହିଁ ଏତ ପ୍ରଥମେ ମନ୍ଦିରର ଖଞ୍ଜାପଡ଼ା, ଭୋଗରାଗ, ଧୂପଆଳତି, ପର୍ବପର୍ବାଣି ଓ ସେବେଇତମାନଙ୍କ କାର୍ଯ୍ୟକର୍ମ ଲିପିବଦ୍ଧ କରାଯାଉଥିଲା । ପୁରୀ ଧର୍ମ ଓ ସଂସ୍କୃତିଦିଗରୁ ଓଡ଼ିଶାର ହୃତ୍‌ପିଣ୍ଡ । ତା'ର ଅନୁକରଣରେ ଓଡ଼ିଶା ବାହାରେ ଭିତରେ ମନ୍ଦିର ଓ ଗୁଣ୍ଡିଚାବାଡ଼ି ନିର୍ମାଣ, ବାରମାସରେ ତେରଯାତ୍ରା ଓ ଗ୍ରାମେ ଗ୍ରାମେ ଦୋଳଯାତ୍ରା ଓ ପାଞ୍ଜିପାଠ କରାଯାଇଥିଲା । ରାଜନୀତିକ ଅଂଶ ପରବର୍ତ୍ତୀ ଯୋଗ; ତେଣୁ ଐତିହାସିକ ଘଟଣା ସହିତ ଏହାର ଅମେଳ ହେବା ବିଚିତ୍ର ନୁହେଁ ।

—*—

# * ଗୋଟିଏ ଅଭିଭାଷଣ

କେହି କେହି କହୁଥାନ୍ତି—କବିତାର ଯୁଗ ଆଉ ନାହିଁ, ଏ ଯୁଗ ଗଦ୍ୟର, ଉପନ୍ୟାସର, କ୍ଷୁଦ୍ର ଗଳ୍ପର, ପ୍ରବନ୍ଧର । କବିତା ଅଛି ଜୀବନର ନିର୍ଘଣ୍ଟରେ; କିନ୍ତୁ ଥିଲା ପରି ନାହିଁ—ରାଜଜେମାର ସିଂହାସନରେ, ସରସ୍ୱତୀଙ୍କ ବୀଣା ଝଙ୍କାରରେ, ଚନ୍ଦ୍ରିକାର ଚମତ୍କାରିତାରେ, ସ୍ୱପ୍ନର ଦିକ୍‌ପ୍ରାନ୍ତରେ କିମ୍ବା କଳ୍ପନାର ଉତ୍ତୁଙ୍ଗ ଶିଖରରେ । ଗଣତନ୍ତ୍ରର ତନ୍ତ୍ରୀରେ ତାର ସ୍ୱର ବାଜିବାର କଥା, ବାଜିନାହିଁ । ଆଧୁନିକ କବିତା ହୁଏତ କୁଟୀରଗାଥା ଗାଉଛି; କିନ୍ତୁ କୁଟୀରଗୃହିଣୀ ହୋଇ ପାରି ନାହିଁ । କବି ପ୍ରତି ସେ ମାନ୍ୟତା ନାହିଁ, କବିତାର ବି ସେ ମାନସମ୍ଭ୍ରମ ନାହିଁ । ପାଠକ ଆଧୁନିକ କବିତାକୁ ଡରନ୍ତି, ଯେପରି ପ୍ରାଚୀନତା-ପ୍ରବଣ ବ୍ୟକ୍ତି ଅତ୍ୟାଧୁନିକା ନାରୀକୁ । ପଣ୍ଡିତେ ଏଥିରେ ଅନ୍ୱୟ ଖୋଜି ନିରାଶ ହୁଅନ୍ତି—ବୋଧହୁଏ ଯେପରି ମେଞ୍ଚାଏ ଅଡ଼ୁଆ ସୂତା, ଖିଅ ଖୋଜି ପାଇବା ମୁସ୍କିଲ । ତାଙ୍କ ଦୃଷ୍ଟିରେ କବି ବାତୁଳ, କବିତା ତାଳହୀନ, ଲୟହୀନ । ଥାଇପାରେ ତା ଭିତରେ ପ୍ରଗତି, କିନ୍ତୁ ସଙ୍ଗତି ନାହିଁ; ଥାଇପାରେ ଉଚ୍ଚାଙ୍ଗ ଇଙ୍ଗିତ, କିନ୍ତୁ ସଙ୍ଗୀତ ନାହିଁ; ଥାଇପାରେ ଅଭୂତପୂର୍ବ ସ୍ପନ୍ଦ, କିନ୍ତୁ ଛନ୍ଦ ନାହିଁ; ଯମକ ନାହିଁ, ଅନୁପ୍ରାସ ନାହିଁ, ଲାଳିତ୍ୟ ନାହିଁ, ସୌକୁମାର୍ଯ୍ୟ ନାହିଁ । ନୀରସ କଥା ଗୋଟାଏ ଗ୍ରନ୍ଥରେ ଯେପରି କି ଛଳା ଯାଇଛି । ଟିଣରେ ଗୋଡ଼ି ଭର୍ତ୍ତିକରି ବଜାଇଲେ ଯେପରି, ସେହିପରି ଏହାର ସ୍ୱର କର୍କଶ, ଖାପ୍‌ଛଡ଼ା; ପଦରୁ ପଦ, ଶବ୍ଦରୁ ଅର୍ଥ; କି ଥିଲା କି ହେଲା ! କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ !

ଏହି ଅଭିଯୋଗରେ କିଛି ସତ୍ୟ ନାହିଁ, ନୁହେଁ । କିନ୍ତୁ କବିତା ଯାହା ହରାଇଛି, ତାର ତାଲିକା ଏଥିରେ ଅଛି, ଯାହା ହାସଲ୍ କରିଛି ତାହା ନାହିଁ । ପଣ୍ଡିତେ ଆଧୁନିକ କବିତା ସହିତ ମନକୁ ଖାପ ଖୁଆଇ ପାରି ନାହାନ୍ତି, ସେ ପ୍ରାଚୀନ ଦୃଷ୍ଟିରେ ଏ ଯୁଗ କବିତାକୁ କଳିଛନ୍ତି, ତାଙ୍କ ନିକିତିର ତଉଲରେ ଲଘୁ ହେବାରେହିଁ ଏହାର ବୈଶିଷ୍ଟ୍ୟ । ସେ ଆଧୁନିକ ସଂସ୍କୃତିରେ ଅବଗାହି ନୁହନ୍ତି, ବରଂ ନିତାନ୍ତ ଖାପ୍‌ଛଡ଼ା, ତାଙ୍କ ଦୃଷ୍ଟି ପଶ୍ଚାତ୍‌ମୁଖୀ, ବୈଜ୍ଞାନିକ ଅଗ୍ରସରତା ନାହିଁ ।

କବିତା ଏବେ ବଞ୍ଚିଛି ଆତ୍ମଦୃଢ଼ତାରେ, କେଉଁ ରାଜାର ଅବଲମ୍ବନରେ ନୁହେଁ । କବିତା ଏବେ ବି କଳା ମଧ୍ୟରେ ସୂକ୍ଷ୍ମତମ । ମାନବିକ ଅନ୍ତରର ସୂକ୍ଷ୍ମତମ ତନ୍ତ୍ରୀରେ ଧରାଦିଏ ଯେଉଁ ଭାବ, ତା’ ରୂପ ପାଏ କବିତାରେ । ଅତି ଅଳ୍ପ ପରିସରରେ ଅତ୍ୟଧିକଭାବ ଆଉ କାହିଁରେ ରହିପାରେ ?

ଏବେ ବି କବିତା ଏକ ବଳିଷ୍ଠ ମାଧ୍ୟମ, ଯାବତୀୟ ବିଜ୍ଞାପନର, ଯୁଦ୍ଧ ପ୍ରଚାରର । ‘ମୁସାଏରା’ରେ ଏବେ ବି ଭିଡ଼ ଜମେ । ଏବେ ବି କବିତା ବର୍ଷିବମା

* ସମରକବିତା ପାଠୋତ୍ସବ, କବିସମ୍ମିଳନୀ, ବିଷୁବମିଳନ, ୧୯୭୩

କ୍ରାନ୍ତିକାରିଣୀ, ମାନବାତ୍ମାକୁ ଜାଗ୍ରତ କରେ, ଅନ୍ୟାୟ ଅତ୍ୟାଚାର, ପାପତାପ ବିରୁଦ୍ଧରେ, ଶାନ୍ତ ଶତଦଳବାସିନୀ ସରସ୍ୱତୀଙ୍କ ସୂକ୍ଷ୍ମଝଙ୍କାରରୁ ଜନ୍ମିଲେ ବି ନିଜେ ନିର୍ମାତ୍ରୀ ହୁଏ, ଦୁର୍ଗାର, ଶଙ୍କରର; କୋମଳତା ଦର୍ଶାଇଲେ ବି ତା ମଧ୍ୟରେ ଦେଖା ଦେଇଛି ଅଦ୍ଭୁତ ଶକ୍ତିର ତରଙ୍ଗ, ମେରୁଦଣ୍ଡ ହୋଇଛି ତା'ର ବଜ୍ରଦୃଢ଼, ଆଟମିକ୍ ଶକ୍ତିରେ ଭାଙ୍ଗିବାର ନୁହେଁ, ତହିଁରୁ ଶକ୍ତି ନେଇ ବଢ଼ିବାର ଓ ନୂତନ ଜଗତ୍ ଗଢ଼ିବାର ଦାୟିତ୍ୱ ଆସି ପଡ଼ିଛି ତାର ମଥାରେ । କବିତା ଏ ଯୁଗର ପ୍ରହରିଣୀ, ସ୍ୱାଧୀନତା ପ୍ରତି ମଣିଷର ମନକୁ ଜାଗ୍ରତ ରଖେ, ଆତ୍ମଶକ୍ତି ଉଦ୍ରିକ୍ତ କରେ, ସଙ୍ଗଠିତ କରେ ଆତ୍ମ-ଉତ୍ସରେ ଉନ୍ନତ ମାନବିକତା; ଏହା ଉଚ୍ଛୃଙ୍ଖଳକୁ ସଂଯତ କରେ ଓ ଆତ୍ମୋନ୍ନତିର ଅନୁଭବ ଆଣେ । ଯେତେ ବାସ୍ତବମୁଖୀ ହେଲେ ବି ଏହା ଏବେ ଆଦର୍ଶଚ୍ୟୁତ ହୋଇ ନାହିଁ । ପୂର୍ଣ୍ଣାଙ୍ଗ ଜୀବନଗଠନ ଏହାର ଆଦର୍ଶ । ତେଣୁ ଗଦ୍ୟର ପ୍ରଭାବ ଅସମ୍ଭବଭାବେ ବଢ଼ିଥିଲେହେଁ କବିତାର ଭୂମିକା ଜୀବନ-ରଙ୍ଗମଞ୍ଚରେ ଏବେ ଗୌଣ ହୋଇନାହିଁ ।

ଯୁଦ୍ଧ ଗତାନୁଗତିକ ଜୀବନ ବିରୁଦ୍ଧରେ ଏକ ବିଦ୍ରୋହ । ଯେଉଁ ଜୀବନ ଗୋଟିଏ ବାଟରେ ଚଳେ, ଗୋଟିଏ ପ୍ରକାରେ ଭାବେ, ତାହା ହୁଏ କ୍ରମେ ଅବନତ, ଅଧୋଗତ, ସ୍ଥାଣୁ ଓ ଅଥର୍ବ । ତହିଁରେ ବିବିଧତା ରହେ ନାହିଁ, ବୈଚିତ୍ର୍ୟ ବିରଳ । ତା'ର ଗତି ଗୋଟିଏ ମାତ୍ର ପରିଧି ମଧ୍ୟରେ; ଯୋଉଠୁ ଯାଏ, ସେଇଠି ଆସି ପହଞ୍ଚେ । ତାର ମତି ଗୋଟାଏ ଲୁହା ବାକ୍ସ, ତହିଁରେ ସେ ସମାଜକୁ ବନ୍ଦୀ କରେ । ମୁକ୍ତ ବିହଙ୍ଗର ଉଡ଼ନ୍ତା ଶକ୍ତି ତାର ନାହିଁ । ଧୋବାୟା ଗୀତ ଶୁଣି ଶୋଇ ପଡ଼ୁଥିବା ଏ ଭଳି ଜୀବନ ଭିତରେ ଯୁଦ୍ଧ ସୃଷ୍ଟି କରେ ଆଲୋଡ଼ନ । ଯୁଦ୍ଧ ମାରେ ଅଳ୍ପ, ବଞ୍ଚାଏ ଅନେକଙ୍କୁ, ଅଥର୍ବଙ୍କୁ ତା'ର ମନ୍ତ୍ର ସରୁ । ଧ୍ୱଂସ କରେ ମନୋହର ନଗର, ସୁସଙ୍ଗଠିତ ଶିଳ୍ପ ବାଣିଜ୍ୟ, ଯୁଦ୍ଧରେ ବହୁ କ୍ଷୟକ୍ଷତି ଓ ଜୀବନ ପାତ ହୁଏ; କିନ୍ତୁ ଯୁଦ୍ଧ ଖାଲି ଭାଙ୍ଗେ ନାହିଁ, ଗଢ଼େ ଜାତିର ସଂହତ ଶକ୍ତି, କଳହ ଓ ବିଭେଦକୁ ପଦ-ଦଳିତ କରି ସୌଖୀନ ଜୀବନ ଉପରେ କଶାଘାତ କରେ । ଜନ୍ମ ନିଏ ସାଧନାମୟ ଜୀବନ, ପ୍ରେକ୍ଷାଗାରରେ, କଳ-କାରଖାନାରେ, କୃଷିକ୍ଷେତ୍ରରେ, ଜୀବନର ସର୍ବତ୍ର ନୂତନ ଧର୍ମଦୀକ୍ଷା, ନବଶିକ୍ଷା ଓ ନୂତନ ଉପଲବ୍ଧିର ପ୍ରେରଣାରେ । ସୁପ୍ତ ଶକ୍ତିକୁ ଉଦ୍ଦୀପ୍ତ କରିବାରେ ଯୁଦ୍ଧପରି ଆଉ କିଛି ନାହିଁ । ଏଥିରୁ ଜୀବନ୍ୟାସ ପାଏ ମହାନ୍ ପୌରୁଷ, ଯାହା ଦୁର୍ଗମକୁ ସୁଗମ କରେ, ଦୁର୍ଦ୍ଧର୍ଷକୁ ଅବନତ କରେ, ଦୂରତାକୁ ଜୟ କରେ ଓ କାଳର ମସ୍ତକ ଉପରେ ପୋତେ ନିଜର ବିଜୟକେତନ । ସେହି କାଳଜୟୀ ମଣିଷ, ଚିରନ୍ତନ ମଣିଷର ଆରାଧନା ଥାଏ ଯୁଦ୍ଧର ମନ୍ତ୍ର ଭିତରେ ।

ଜୀବନ ହିଁ ଯୁଦ୍ଧ । ଭଗବାନ୍ ମନୁଷ୍ୟକୁ ଜନ୍ମଦେଇ କିଛି ଅସ୍ତ୍ର ଶସ୍ତ୍ର ଦେଇ ନ ଥିଲେ । ଦେଇଥିଲେ ଦୁଇଟି ମାତ୍ର ହାତ, ମନରେ ବୁଦ୍ଧି, ହୃଦୟରେ ସାହସ । ସେଇ ବଳରେ ସେ ସଂସ୍କୃତି ଗଢ଼ିଲା, ସଭ୍ୟତା ଗଢ଼ିଲା । ସଂସ୍କୃତିର ଇତିହାସ ହିଁ

ମନୁଷ୍ୟର ଘୋର ସଂଗ୍ରାମଜୀବନର ଇତିହାସ । ଉତ୍ତରାଧିକାରସୂତ୍ରେ ପ୍ରାପ୍ତ ସାହିତ୍ୟ, କଳା, ଭାସ୍କର୍ଯ୍ୟରେ ସେହି ସଂଗ୍ରାମର ଇତିହାସ ବ୍ୟାପ୍ତ । ତେଣୁ ଯୁଦ୍ଧ ଜୀବନର ଏକ ନୂତନ ଆଭିମୁଖ୍ୟ ନୁହେଁ, ଏହା ଏକ ନିତ୍ୟ ଉପଲବ୍ଧ ବ୍ୟାପାର, ଯଦି ବା ବ୍ୟକ୍ତିଗତ ଜୀବନର ସୀମାବଦ୍ଧ କ୍ଷେତ୍ରରେ ।

ପ୍ରବଳ ଶକ୍ତି ଯୁଦ୍ଧ କରିଆଏ, ରାଜ୍ୟଲିପ୍ସାରେ, ଲୁଣ୍ଠନ ନିଶାରେ । ଯୁଦ୍ଧ ତାର ଏକ ସମ୍ପ୍ରସାରଣ ଯୋଜନା । ଦୁର୍ବଳ ଜାତି ଯୁଦ୍ଧ ଲୋଡ଼େ ନାହିଁ । ଏହା ଅନିଚ୍ଛୁକ ମସ୍ତକରେ ଲଦି ଦିଆଯାଏ । ତାର ଯୁଦ୍ଧ ଆତ୍ମରକ୍ଷା ଲାଗି ।

ବିଶ୍ୱ ରାଜନୀତିରେ ଭାରତର ସ୍ୱତନ୍ତ୍ର ଭୂମିକା ପ୍ରତିଯୋଗୀ ଚୀନଜାତି ପକ୍ଷରେ ଅସହ୍ୟ । ଗୋଟାଏ ଜାତି ବ୍ୟକ୍ତି ପରି ଈର୍ଷାନ୍ୱିତ ହୋଇ ପାରେ, ଏହାହିଁ ବିସ୍ମୟକର ବ୍ୟାପାର । ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ଓ ବିଜୟଲାଭ, ଶିଳ୍ପସମୃଦ୍ଧିର ଅଭିବୃଦ୍ଧି, ସତ୍ୟ ଓ ନ୍ୟାୟ ପ୍ରତି ସମର୍ଥନ, ନିରପେକ୍ଷ ରାଜନୀତି ବିଶ୍ୱ ଦରବାରରେ ଭାରତ ଲାଗି ଗୋଟିଏ ସମ୍ମାନଜନକ ଆସନ ପ୍ରତିଷ୍ଠା କରିଛି । ଚୀନ୍ ଏଥିପ୍ରତି ଅସହିଷ୍ଣୁ । ଏସିଆରେ ତାର ଆଧିପତ୍ୟ ବିସ୍ତାରର ମୁଖ୍ୟ ପ୍ରତି-ବନ୍ଧକ ଭାରତବର୍ଷ । ତେଣୁ ସେ ତାକୁ କାବୁ କରିବାକୁ ଚାହେଁ । ସହାବସ୍ଥାନରେ ଚୀନ୍‌ର ବିଶ୍ୱାସ ନାହିଁ । ଗଣତନ୍ତ୍ର ରହିବ, ନୋହିଲେ ରହିବ ଏକଛତ୍ରବାଦ । ଦୁଇଟି କେବେ ରହିପାରିବ ନାହିଁ । ଯୁଦ୍ଧ ଅବଶ୍ୟମ୍ଭାବୀ । ଜୋର୍ ଯାର ମୁଲକ ତାର । ଚୀନ୍ ଲୋକକଲ୍ୟାଣ ପ୍ରତି ଆଖି ବୁଜିଦେଇ କେବଳ ସୈନ୍ୟ ଓ ଅସ୍ତ୍ରଶସ୍ତ୍ର-ବୃଦ୍ଧିରେ ଲାଗିଛି । ଭାଇ ବସି ବେଳ ପଡ଼ିଲେ ଭଗାରି ସାଜୁଛି । ଠିକ୍ ମୁଣ୍ଡ ନାକୁ ଲକ୍ଷ୍ୟ କରି ଛୁରୀ ବସାଉଛି । ଏ ଜାପାନଯୁଦ୍ଧବେଳର ଚୀନ୍ ନୁହେଁ । ଗୋଟାଏ ସଙ୍ଗଠିତ, ଆଧୁନିକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ, ଏକଛତ୍ରବାଦରେ ବିଶ୍ୱାସୀ ଜାତି । ଆମକୁ ତାର ସମ୍ମୁଖୀନ ହେବାକୁ ହେବ ।

ସାହିତ୍ୟର ଏ ଦିଗରେ ଗୋଟିଏ ନିର୍ଦ୍ଦିଷ୍ଟ ଭୂମିକା ଅଛି । ଦେଶର ଘଡ଼ିସନ୍ଧିବେଳେ ସାହିତ୍ୟିକ କଳ୍ପଲୋକର ଧ୍ୟାନରେ ଆତ୍ମହରା ହୋଇ ରହି ନ ପାରେ । ସେ କେବଳ ସାକ୍ଷୀଗୋପାଳ ନୁହେଁ; ଘଟଣା ବା ଦୁର୍ଘଟଣାର, ନିଜେ ଜଣେ ଅଭିନେତା, ପ୍ରତ୍ୟକ୍ଷ ରଣାଙ୍ଗନରେ ନ ହେଲେ ମଧ୍ୟ, ତାର ପୃଷ୍ଠପଟରେ । ସେ କେବଳ ପଞ୍ଜିକାର ନୁହେଁ, ପ୍ରଚ୍ଛେଦକ ବାରତ୍ୱର; ନାଟକୀୟ ଘଟଣାର ସୂତ୍ରଧର । ସାହିତ୍ୟ ତାର ନନ୍ଦନବନର ପୁଷ୍ପ ନୁହେଁ, ନୁହେଁ କଳ୍ପଲୋକର ଫଳ । ରୁଦ୍ଧ ଗୃହରେ ନୁହେଁ, ଜଙ୍ଗମ ଜୀବନର ଆବର୍ତ୍ତରେ ତାର ସ୍ଥାନ, ସବୁଠାରୁ ଅଧିକ ଦୋହଲୁଥିବା ମାସ୍ତୁଲରେ ବସି ସେ ଜୀବନ କଳନା କରିବ, ହେବ କର୍ଣ୍ଣଧାର ପରାମର୍ଶରେ ।

ପ୍ରାଚୀନ ସାହିତ୍ୟ ଥିଲା ଅପ୍ରୟୋଜନୀୟ । କୌଣସି ସ୍ଥୂଳ ପ୍ରୟୋଜନର ଚରିତାର୍ଥତା ଲାଗି ସାହିତ୍ୟ ରଚିତ ହେଉ ନ ଥିଲା । ଏହା ଥିଲା ସାହିତ୍ୟ ପାଇଁ ସାହିତ୍ୟ, ରସସ୍ରାବୀ ସାହିତ୍ୟ ବା ବିଶୁଦ୍ଧ ସାହିତ୍ୟ । ଏବେ ସାହିତ୍ୟର ସେହି

ଆଦର୍ଶ ପୂର୍ବପରି ବଦଳି ଯାଇନାହିଁ, କିନ୍ତୁ ସାହିତ୍ୟର ଗୋଟିଏ ପ୍ରୟୋଜନୀୟ ବିଭବର ସୃଷ୍ଟି ହୋଇଅଛି । ତା ଫଳରେ ସାହିତ୍ୟିକଙ୍କୁ ସାମୟିକ ଜୀବନ ଘଟଣାରେ କର୍ମଠ ଓ କ୍ରିୟାଶୀଳ ହେବାକୁ ପଡ଼ୁଛି । ତାର ସୃଷ୍ଟି ହୁଏତ ରସାଳ ବା ଚିରନ୍ତନ ହେଉନାହିଁ, ନୋହିପାରେ, କିନ୍ତୁ ଦେଶ ବା ଜାତିକୁ ବଞ୍ଚାଇ ନ ପାରିଲେ ଚିରନ୍ତନ ସାହିତ୍ୟର କି ମୂଲ୍ୟ ? ଦେଶ ଯେତେବେଳେ ଖୋଜୁଛି ଜଳ —ପିପାସିତ କଣ୍ଠରେ, ସେତେବେଳେ ତାକୁ ଅମୃତ ଦେଲେ ସେ ମରିଯିବ । ଜଳର ପ୍ରୟୋଜନୀୟତା ଅଧିକ, ଯଦିବା ଦୁର୍ଲଭ ଅମୃତର ମୂଲ୍ୟ ବେଶୀ । ସେହିପରି ସାମୟିକ ରଚନାର ଆବଶ୍ୟକତା ବେଳେ ବେଳେ ଅଧିକ ହୋଇଥାଏ । ଅମରତ୍ୱ ଅପେକ୍ଷା ମୃତ୍ୟୁ ହୋଇଥାଏ ଅଧିକ ପ୍ରୟୋଜନୀୟ । ମୃତ୍ୟୁର ପ୍ରେରଣା ଦେବାକୁ ହୁଏ ସ୍ୱାଧୀନତା ରକ୍ଷାଲାଗି, ଜାତିର ଇଜ୍ଜତ ମହତ ରକ୍ଷାଲାଗି, ପ୍ରାଣବଳି ଦାନ ଯେତେବେଳେ କବିତାର ମନ୍ତ୍ର ହୋଇଥାଏ । କବିତା ହୁଏ ବାସ୍ତବିକା, ଗୃହିଣୀକା, ସ୍ୱର୍ଲୋକର ମେନକା ବା ଉର୍ବଶୀ ନୁହେଁ; ହୁଏ ସାବିତ୍ରୀ, ସେବିକା, ଗୃହେ ଗୃହେ, ରଣାଙ୍ଗନେ, ଜୀବନେ ଜୀବନେ ।

କବିତା ଗତାନୁଗତିକ ଘଟଣାର ଚିତ୍ର ଦିଏ ନାହିଁ, ଏହା ଦୁର୍ଘଟଣର, ଅନ୍ତର୍ଦ୍ୱନ୍ଦ୍ୱର, ସାମାଜିକ ଓ ରାଷ୍ଟ୍ର ବିପ୍ଳବର ଚିତ୍ର ଅଙ୍କନ କରି ମହାଯଶୀ । ତେଣୁ ଯୁଦ୍ଧ କବିତାର ଗୋଟିଏ ସାମୟିକ ବିଷୟ ନୁହେଁ । ଏହା ପୃଥିବୀର ଶ୍ରେଷ୍ଠ ଓ ସ୍ଥାୟୀ କାବ୍ୟ କବିତାର ଉପଜୀବ୍ୟ । ଏହାକୁ ଅବଲମ୍ବନ କରି ଏଲିଅଡ୍, ଓଡ଼ିସୀ, ରାମାୟଣ, ମହାଭାରତ, କୋଣାର୍କ ଗଢ଼ା ହୋଇଛି । ସେଥିରେ ବୀରତ୍ୱ ପ୍ରଦର୍ଶନ, ଦେଶବାସୀଙ୍କ ଲାଗି ଦୁଃଖବରଣ, ଆଦର୍ଶ ରକ୍ଷାଲାଗି ଆତ୍ମୋତ୍ସର୍ଗ ଓ ମାନବିକ ମହତ୍ତ୍ୱର ଚୂଡ଼ାନ୍ତ ନିଦର୍ଶନ ଦେଖିବାକୁ ମିଳେ । କବିତାର ସ୍ଥାୟିତ୍ୱ ଓ ଅସ୍ଥାୟିତ୍ୱ କବିର ଲେଖା ଶକ୍ତି ଉପରେ ନିର୍ଭର କରେ । ଗୋଟିଏ ବିଷୟକୁ ଦୁଇଜଣ କବି ଦୁଇ ପ୍ରକାରେ ଲେଖିପାରନ୍ତି । ଗୋଟିଏ ହୁଏ ତୁଚ୍ଛାତିତୁଚ୍ଛ ପ୍ରଚାରଧର୍ମୀ କବିତା, ଆଉ ଗୋଟିକର ରହେ ସ୍ଥାୟୀ ମୂଲ୍ୟ, କାଳ ତାର ଲିପିକୁ ଲିଭାଇ ଦେଇପାରେ ନାହିଁ । ମନୋଭଙ୍ଗୀ ଓ ରଚନାଶୈଳୀ ଉପରେ କବିତାର ସ୍ଥାୟିତ୍ୱ ବା ଅସ୍ଥାୟିତ୍ୱ ନିର୍ଭର କରେ ।

କବିତା ପାଠୋତ୍ସବରେ ଅଂଶ ଗ୍ରହଣ କରିଅଛନ୍ତି—ବହୁ ନବୀନ, ପ୍ରବୀଣ କବି । ଲେଖିଛନ୍ତି କବିତା, ଗଳ୍ପଲେଖା ଯାହାର ପେଷା । ପଠିତ ହୋଇଛି ଗୋଟାକେତେ ଗଦ୍ୟ ବା ମୁକ୍ତ ଛନ୍ଦର କବିତା, ଯାହାର ଅଗ ନାହିଁ କି ମୂଳ ନାହିଁ, ଅତ୍ୟାଧୁନିକ, ଗୋଟାକେତେ ସାଧନାର୍ଥୀ ଯୁଗର କବିତା, ମେଳରେ ପଦ୍ୟ, କବିତ୍ୱହୀନ, ଅସ୍ୱାଦ୍ୟ । ଗୋଟିଏ ହିନ୍ଦୀ କବିତା ଆଉ ଗୋଟିଏ ଉର୍ଦ୍ଦୁ କବିତାର ଅନୁବାଦ କବି ବା ତାଙ୍କ ପ୍ରତିନିଧି ପାଠ କରିଛନ୍ତି । କେହି କେହି କବି ସ୍ୱକବିତା ଆବୃତ୍ତି କରିଛନ୍ତି ଓଜସ୍ୱିନୀ ଭାଷାରେ । ପ୍ରାୟ ପଚାଶଟି କବିତା ପଠିତ ବା ଆବୃତ୍ତ ହୋଇଛି । ଆଗରୁ ବଛାବଛି ହୋଇଥିଲେ, କେତୋଟି ବାଦ

ପଢ଼ୁଥାନ୍ତି, କାହା କାହା ମନରେ କଷ୍ଟ ହୋଇଥିଲେ ବି ଏହି ଉତ୍ସବର ମହତ୍ତ୍ୱ ବଢ଼ିଥାନ୍ତା, ଏହି ଆନୁଷ୍ଠାନରେ କବିତାପାଠ ମାନେ କବିତ୍ୱର ଏକ ସ୍ୱୀକୃତି । କବି ଏଠି କବିତାପାଠର ସୁଯୋଗ ପାଇଲେ ନିଜକୁ ଗୌରବାନ୍ୱିତ ମନେ କରନ୍ତେ, କବିତାର ବି ଉନ୍ନତି ହୁଅନ୍ତା । ଏବେ ଧୁଆ ମୂଳା ଅଧୁଆ ମୂଳା ସମାନ ହୋଇଯାଉଛନ୍ତି, ପାଠସ୍ଥିତି ଗତାନୁଗତିକ ହୋଇଯାଉଛି ।

ଯେଉଁସବୁ କବିତା ପାଠ କରାଗଲା, ତାହା ଅଧିକାଂଶରେ ଆହ୍ୱାନୀ ବା ଉଦ୍‌ବୋଧନୀ । ତାମାନେ—ହେ ଦେଶବାସୀ, ଜାଗ୍ରତ ହୁଅ, ସୀମାନ୍ତ ଆକ୍ରମଣକାରୀ ଶତ୍ରୁକୁ ବିତାଡ଼ିତ କର । ଶତ୍ରୁ ! ସେ ବିଶ୍ୱାସଘାତୀ, ବର୍ବର, ସେ ନାସ୍ତିକ, ସେ ନିର୍ଦ୍ଦୟ । ସୁଦୀର୍ଘ ଅତୀତର ଆତ୍ମୀୟ ସମ୍ପର୍କକୁ ସେ ବିଶାକ୍ତ କରିଛି । ଅନ୍ୟାୟର, ଅସତ୍ୟର ପରାଜୟ ନିଶ୍ଚିତ । ହେ ଯବାନ୍, ଏହି କାଳଦମନ ଡ୍ରାଗନ୍‌କୁ ଦମନ କର । ତୁମ ପଛରେ ସଂହତ ଭାରତବର୍ଷ, ତାର ମାନମର୍ଯ୍ୟାଦା ତୁମ ହାତରେ । ପରାଧୀନ ଜୀବନ ଅପେକ୍ଷା ସ୍ୱାଧୀନ ଦେଶରେ ମୃତ୍ୟୁ ମହତ୍ତର ।

କୌଣସି ଓଡ଼ିଆ ଲେଖକ କେବେ ରଣାଙ୍ଗନ ଦେଖିନାହାନ୍ତି । ଆଧୁନିକ ଅସ୍ତ୍ର ଶସ୍ତ୍ର ମଧ୍ୟ କେବେ ଆଖିରେ ପଡ଼ି ନାହିଁ । ଯୁଦ୍ଧସମ୍ପର୍କୀୟ ଯତ୍‌କିଞ୍ଚିତ୍ ଜ୍ଞାନଲାଭ ହୋଇଛି ସମ୍ବାଦପତ୍ରରୁ । ରଣାଙ୍ଗନର ବାତାବରଣ ଏମାନେ ସୃଷ୍ଟି କରିବେ କିପରି ? ଫଳରେ ଯୁଦ୍ଧ-କବିତା ନାମରେ ଯାହା ରଚିତ ହେଉଛି, ତାହା ଅଧିକାଂଶରେ ନିଳିକା । ଉଷ୍ମ ରକ୍ତରେ ଧମନୀ ସ୍ପନ୍ଦିତ କରିବ କିପରି ? ଏହା ସ୍ୱପ୍ନପ୍ରବଣ କବିର ସୃଷ୍ଟି; ଅବାସ୍ତବ କମ୍ବା ମାନ୍ଧାତୃଉର ନିରର୍ଥକ ଶବ୍ଦବ୍ୟୂହ । ଏହା ମଧ୍ୟରେ ଜୀବନ ନାହିଁ, ତାର ପ୍ରାଚୁର୍ଯ୍ୟ ତ ଦୂରର କଥା । ବହୁ ସ୍ଥଳରେ ଅକବିର କବି ହେବା ପ୍ରୟାସରେ ଏହା କ୍ଲିଷ୍ଟ, ଅଶ୍ରାବ୍ୟ ।

ଗଦ୍ୟକବିତା ନାମରେ ଯାହା ରଚିତ ହେଉଛି, ତାହା ରସାଳ ଗଦ୍ୟ ମଧ୍ୟ ନୁହେଁ, ତୁଚ୍ଛାତିତୁଚ୍ଛ ପଙ୍କ୍ତିକାରର ବିବରଣୀ । ଯେ ଛନ୍ଦକବିତା ଓ ସାହିତ୍ୟିକ ଗଦ୍ୟ ଲେଖିବାରେ ଧୂରନ୍ଧର, ଯେ ଉଭୟର ସୀମା ବିଷୟରେ ସଚେତନ, ସେ ଉତ୍କୃଷ୍ଟ ଗଦ୍ୟ-କବିତା ଲେଖିପାରେ । ଗଦ୍ୟ-କବିତା ନିଶ୍ଚୟ ଗଦ୍ୟ ନୁହେ, ଏହାର ସ୍ୱତନ୍ତ୍ର ଛନ୍ଦ ଅଛି, ତାଳ ଅଛି । ଯେ ଲେଖିଜାଣେ, ସେ କେଉଁଠି ଅଟକିବାକୁ ହେବ ଜାଣେ । ଯେ ଅକବି ତା ପକ୍ଷରେ ଗଦ୍ୟ-କବିତା ଅତି ସହଜ । କାରଣ ଏଥିରେ ପଦ ପକାଇବା ବା ଉପଧା ମିଳେଇବା କ୍ଲେଶରୁ ନିସ୍ତାର ମିଳେ । କେତୋଟି ଦୀର୍ଘ ଓ କେତୋଟି ସଙ୍କୁଚିତ ପଂକ୍ତି ତଳକୁତଳ ରଖି ଯାଇଦେଲେ ହେଲା । ମଝେ ମଝେ ବିସ୍ମୟସୂଚକ ଚିହ୍ନ ନହେଲେ କେତେଗୁଡ଼ାଏ ନିରର୍ଥକ ବିନ୍ଦୁ । ବ୍ୟଞ୍ଜନା ତ ଫୁଟି ପାରିନାହିଁ, ହୋଇଛି ଅସଂଗତ, ଦାର୍ଶନିକତା ହୋଇନାହିଁ, ହୋଇଛି ଦୁର୍ବୋଧ ।

ଏ କବିତା କାହାକୁ ଉଦ୍‌ବୁଦ୍ଧ କରିବ ? କବି ଯେ ନିଜେ ଉଦ୍‌ବୁଦ୍ଧ ହୋଇ ନାହାନ୍ତି । ମନ୍ଦ କବି ଯଶପ୍ରାର୍ଥୀ, ଉପହସିତ ହୋଇନାହାନ୍ତି; ତେଣୁ

ବିନା ପ୍ରେରଣାରେ ଲେଖି ଯାଉଛନ୍ତି, ଯା' ତଳେ କୌଣସି ମହତ୍ତର ଉଦ୍ଦେଶ୍ୟ ନାହିଁ, କେବଳ ଯଶସ୍ୱୀ ହେବାର ଦୁର୍ବଳ ଅପଚେଷ୍ଟା ।

ଅତ୍ୟଧିକ ପ୍ରଗ୍ଲ୍‌ଭ-ପ୍ରଦର୍ଶିତା କବିତ୍ୱର ହାନିକାରକ । ରୁକ୍ଷ ଗଦ୍ୟ ଶବ୍ଦ କମ୍ର, କାନ୍ତ-କୋମଳ ଶବ୍ଦର ଆସ୍ଥାନ ମାଡ଼ି ବସୁଛି, ଯେପରି ପୁଷ୍ପ ଉପରେ ଶିଳାଖଣ୍ଡ, ଆଗର କେତେକ ଗଦ୍ୟଶବ୍ଦ ଏ ଯୁଗ କବିତାରେ ପାଂକ୍ତେୟ ସତ୍ୟ, କିନ୍ତୁ ସବୁ ସଚଳ ନୁହେଁ । ବିଶ୍ଳେଷଣ କରିବାର ଅଛି ।

ସାମାନ୍ୟ ତ୍ରୁଟି ଥିଲେବି କେତେକ ତରୁଣତରୁଣୀଙ୍କ କବିତା ମୋତେ ଉଦ୍‌ବୁଦ୍ଧ କରିଛି । ଆଧୁନିକ ଓ ପ୍ରଗତିଶୀଳ ହେବାର ପ୍ରୟାସ ସେଥିରେ ସ୍ପଷ୍ଟ, ନୂତନ ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗରେ, ବ୍ୟଞ୍ଜନାର ସଂଯୋଜନାରେ, ବିଷୟର ନିର୍ବାଚନରେ, ଆବେଗ ସଙ୍ଗେ ମନନର ସମନ୍ୱୟରେ । ବାକ୍‌ଛନ୍ଦର ଯଥାଯଥ ପ୍ରୟୋଗରେ କେହି କେହି ଶକ୍ତି ପ୍ରଦର୍ଶନ କରିଛନ୍ତି । ବିଷୟ ଯାହାହେଉ କବିତା କବିତା ହେବା ଉଚିତ । ଭଲ କବିତାର ମହତ୍ତ୍ୱ କେଉଁ ଯୁଗରେ କମେ ନାହିଁ । ଯେତେ ପ୍ରଗତିଶୀଳ ହେଲେ ବି କବିତ୍ୱ ନଥିଲେ, କବିତା ଅରୁଚିକର । କେବଳ ଆଧୁନିକ ହେବାରେ ନାହିଁ, ଆଧୁନିକ କବି ହେବାରେ ହିଁ ପ୍ରକୃତ ମହତ୍ତ୍ୱ ।

ଆଧୁନିକ କବିତା ଏବେ ଆଉ ପରୀକ୍ଷା ନିରୀକ୍ଷା ସ୍ତରରେ ନାହିଁ । ନଦୀର ଧାରା ପରି ଏହା ସ୍ଥିର ସିଦ୍ଧ, ନିର୍ଦ୍ଦିଷ୍ଟ ଓ କ୍ରମପ୍ରସାରଣଶୀଳ । ଏହାର ଚେର କ୍ରମେ ଏହି ଦେଶର ଅହଲ୍ୟା ମାଟି ଭେଦ କରୁଛି, ଯଦିବା ସଂଶୟ-ଚକ୍ଷୁ ଚତୁର୍ଦ୍ଦିଗରେ । ନୂତନ ସୃଷ୍ଟିରେ ସଂଶୟ ଚିରପ୍ରାଚୀନ, ଏହା ପ୍ରତିବନ୍ଧକ ହୁଏ, ଯେପରି ଶୈଳ ଝରଣାର, କଳଧ୍ୱନିକୁ ସଂଗୀତ ଓ ସ୍ୱଚ୍ଛନ୍ଦ କରିବା ଲାଗି । ନୂତନ କବିତାର ଭକ୍ତ ଅଳ୍ପ ନାହାନ୍ତି ।

ବିଷୁବମିଳନ ଯଥାର୍ଥରେ ଏକ ମିଳନ, ହାର୍ଦ୍ଦିକ, ସ୍ୱାର୍ଥତ୍ୟାଗରେ, ସଙ୍ଗୀତ ଓ ସମ୍ପ୍ରୀତିରେ, ଅଲୋଚନ ଓ ଆଲୋକନରେ ଓ ସହିତର ବନ୍ଧୁ ଭାବରେ ଏହା ସମ୍ଭବ ଓ ସୁନ୍ଦର । ମୋତେ ଏହି ମହାତୀର୍ଥର ମିଳନ ସଙ୍ଗମରେ ଅବଗାହ ହେବାର ସୁଯୋଗ ଦେଇଥିବାରୁ ପ୍ରଜାତନ୍ତ୍ର ପ୍ରଚାରସମିତି ନିକଟରେ ମୁଁ କୃତଜ୍ଞ ।

———